# ଶିଶୁ ହସିଲେ ଜଗତ ହସେ

ଡକ୍ଟର ଶରତ ଚନ୍ଦ୍ର ପରିଡ଼ା

ନଭେମ୍ବର ୧୪ ତାରିଖ ଭାରତବର୍ଷର ଏକ ପବିତ୍ର ଜାତୀୟ ଦିବସ । ଏହା ପଣ୍ଡିତ ନେହେରୁଙ୍କ ଜନ୍ମ ଦିବସ ତଥା ଶିଶୁ ଦିବସ ରୂପେ ଆମେ ଦେଶରେ ପାଳିତ ହୋଇଥାଏ । ଏହି ଦିନଟି ପିଲାମାନଙ୍କର ଅଧିକାର ବିଷୟରେ ବଡ଼ମାନଙ୍କୁ ଜଗାଇବା ପାଇଁ ଉଦ୍ଦିଷ୍ଟ ।



**ଜାତୀୟ ଓ ଆନ୍ତର୍ଜାତୀୟ ସ୍ତରରେ ଶିଶୁ ଦିବସ ପାଳନ:** ଶିଶୁର ମଧ୍ୟ କିଛି ମାନବିକ ଅଧିକାର ରହିବା ଉଚିତ– ଏ କଥା ବହୁଦିନ ପର୍ଯ୍ୟନ୍ତ କେହି ଚିନ୍ତା କରୁ ନଥିଲେ । ପ୍ରଥମ ବିଶ୍ୱଯୁଦ୍ଧ ପରେ(୧୯୧୪–୧୯୧୮) ଏ କଥା ଅନୁଭବ କରାଗଲା ଯେ ଶିଶୁମାନେ ହେଉଛନ୍ତି ଜାତୀୟ ଜୀବନ ଧାରାର ମୂଳ ଉତ୍ସ । ଶିଶୁମାନଙ୍କ ମଧ୍ୟରେ ନିହିତ ଅଛି ରାଷ୍ଟ୍ର ତଥା ବିଶ୍ୱର ଭବିଷ୍ୟତ । କୋମଳ ଶିଶୁମାନଙ୍କ ମଧ୍ୟରେ ନିହିତ ସମ୍ଭାବନା ତାକୁ ପୌଗଣ୍ଡ ଓ କୈଶୋର ମଧ୍ୟ ଦେଇ ଆଗେଇ ନିଏ । ଅଙ୍କୁରିତ ଅବସ୍ଥାରୁ ନେଇ ମୁକୁଳିତ କରିବାରେ ତାହାକୁ କରିଥାଏ ପୁଷ୍ପିତ । ତାକୁ ଭଲ କରି ଗଢି ତୋଳିଲେ ଜାତି ଆପେ ଆପେ ଗଢି ହୋଇଯିବ । ପରିଣାମରେ ଶିଶୁ କଲ୍ୟାଣ ଦିଗରେ ପୃଥିବୀର ସମସ୍ତ ଦେଶ ଆଗଭର ହେଲେଣି । ଆନ୍ତର୍ଜାତିକ ସ୍ତରରେ ଶିଖର ସମ୍ମିଳନୀମାନ ଅନୁଷ୍ଠିତ ହେଲାଣି । ଜାତିସଂଘ ଅଧିନାୟକତ୍ୱରେ ଆନ୍ତର୍ଜାତିକ ଶିଶୁକଲ୍ୟାଣ ପାଣ୍ଠି, ବିଶ୍ୱସ୍ୱାସ୍ଥ୍ୟ ସଂଗଠନ, ଆନ୍ତର୍ଜାତିକ ଶିକ୍ଷା, ବିଜ୍ଞାନ ଓ ସାଂସ୍କୃତିକ ସଂଗଠନ, ପୁନଃ ନିର୍ମାଣ ଓ ବିକାଶ ପାଇଁ ଆନ୍ତର୍ଜାତିକ ବ୍ୟାଙ୍କ୍ ଓ ଅନେକ ସ୍ୱେଚ୍ଛାସେବୀ ସଂଗଠନ ଶିଶୁମାନଙ୍କର ବିକାଶ ଦିଗରେ କାର୍ଯ୍ୟ କରି ଚାଲିଛି । ଏହି ଅଧିକାରଗୁଡ଼ିକୁ ଲୋକଙ୍କ ପାଖରେ ପହଞ୍ଚାଇ ଶିଶୁ ସଚେତନତା ସୃଷ୍ଟି କରିବା ଉଦ୍ଦେଶ୍ୟରେ ଶିଶୁ ଦିବସ ପାଳନ କରାଯିବା ନିମନ୍ତେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା । ଜାତିସଂଘ ଆନୁକୂଲ୍ୟରେ ପ୍ରତି ବର୍ଷ ପ୍ରାୟ ପୃଥିବୀରେ ଦେଢ ଶହ ଦେଶ ଶିଶୁ ଦିବସ ପାଳନ କରି ଆସୁଛନ୍ତି । ଶିଶୁମାନଙ୍କର ଅଧିକାର ଓ ସୁନ୍ଦର ଭବିଷ୍ୟତ ବିଷୟରେ ବ୍ୟାପକ ଆଲୋଚନା ଓ ବିଚାର ବିମର୍ଶ କରାଯାଉଛି । ଭାରତରେ କେଉଁ ଦିନଟିକୁ ଶିଶୁ ଦିବସ ରୂପେ ପାଳନ

କରାଯିବ ବୋଲି ପ୍ରଶ୍ନ ଉଠିଲା । ସେତେବେଳେ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ଶିଶୁଙ୍କ ପ୍ରତି ଅନାବିଳ ସ୍ନେହ ଓ ଶ୍ରଦ୍ଧା ଦେଖି ଦେଶବାସୀମାନେ ତାଙ୍କର ଜନ୍ମଦିନଟିକୁ ଏହି ଉଦ୍ଦେଶ୍ୟରେ ସମର୍ପଣ କରିବାକୁ ମତ ରଖିଲେ ।

**ନବଭାରତର ନିର୍ମାତା ନେହେରୁ:** ମହାଭାରତୀୟ ଜାତୀୟ ଜୀବନରେ ଜଣେ ଉତ୍ସର୍ଗୀକୃତ ବ୍ୟକ୍ତିତ୍ୱର ଅଧିକାରୀ ଥିଲେ ପଣ୍ଡିତ ନେହେରୁ । ଭାରତର ପ୍ରଜ୍ଞା ଓ ଉଦାରତାର ସେ ଥିଲେ ସାକାର ରୂପ । ଗାନ୍ଧି ମହାତ୍ମାଙ୍କ ଅହିଂସ ନେତୃତ୍ୱରେ ଚାଲିଥିବା ଭାରତୀୟ ମୁକ୍ତି ସଂଗ୍ରାମର ସେ ଥିଲେ ମହାନ୍ ଯୋଦ୍ଧା । ମହାଭାରତୀୟ ଜାତୀୟ ଜୀବନକୁ ସୁଦୃଢ଼ କରିବା ଥିଲା ତାଙ୍କର ପ୍ରାକ୍ ସ୍ୱାଧୀନତା ଓ ସ୍ୱାଧୀନୋତ୍ତର କାଳର ମହାନ୍ ତପସ୍ୟା । ଆଧୁନିକ ଭାରତୀୟ ଇତିହାସରେ ସେ ଏକ ଗୌରବଦୀପ୍ତ ଅଧ୍ୟାୟ । କେବଳ ଭାରତରେ ନୁହେଁ ସମଗ୍ର ବିଶ୍ୱରେ ତାଙ୍କର ବିଚାରଧାରା ବେଶ୍ ପ୍ରଭାବ ବିସ୍ତାର କରିପାରିଥିଲା । ସେ ନବଭାରତର ନିର୍ମାତା ରୂପେ ସ୍ମରଣୀୟ । ସମଗ୍ର ବିଶ୍ୱରେ ଶାନ୍ତି, ସହାବସ୍ଥାନ ଓ ସଦ୍ଭାବ ପ୍ରତିଷ୍ଠା ପାଇଁ ତାଙ୍କର ନିରବଚ୍ଛିନ୍ନ ଉଦ୍ୟମ ନିମନ୍ତେ ସେ ପ୍ରଶଂସନୀୟ । ସ୍ୱକୀୟ ସାଧନା ବଳରେ ବ୍ୟକ୍ତି କିପରି ଗୋଟିଏ ଅନୁଷ୍ଠାନରେ ପରିଣତ ହୋଇପାରେ ପଣ୍ଡିତ ନେହେରୁ ଥିଲେ ତା'ର ଏକ ଜ୍ୱଳନ୍ତ ଦୃଷ୍ଟାନ୍ତ ।

**ଦେଶପ୍ରେମୀ ନେହେରୁ:** ସେ ପ୍ରାଚୁର୍ଯ୍ୟ ଭିତରେ ଜନ୍ମ ଗ୍ରହଣ କରିଥିଲେ ୧୮୮୯ ମସିହା ନଭେମ୍ବର ମାସ ୧୪ ତାରିଖରେ ଆହ୍ଲାବାଦରେ । ଖ୍ୟାତନାମା ଆଇନଜୀବୀ ମୋତିଲାଲ ନେହେରୁଙ୍କର ସେ ଥିଲେ ଏକମାତ୍ର ପୁତ୍ର । ବ୍ୟକ୍ତିଗତ ଭାବରେ ଇଂରେଜମାନଙ୍କ ପ୍ରତି ତାଙ୍କର ଘୃଣା ନଥିଲେ ମଧ୍ୟ ଶାସକ ଇଂରେଜମାନଙ୍କର ଭାରତୀୟଙ୍କ ପ୍ରତି ଅବଜ୍ଞା ଉପେକ୍ଷା ଓ ଅସମ୍ମାନ ତାଙ୍କ ମନରେ ଶୈଶବରୁ ତୀବ୍ର ପ୍ରତିକ୍ରିୟା ସୃଷ୍ଟି କରିଥିଲା । ହାରୋ ଓ କେମ୍ବ୍ରିଜ ଭଳି ବିଦେଶ ଭୂଇଁରେ ନେହେରୁ ଅଧ୍ୟୟନ କଲେ ମଧ୍ୟ ସ୍ୱଦେଶୀ ଚେତନା ତାଙ୍କୁ ଆଚ୍ଛନ୍ନ କରି କରିଥିଲା । ଦୀର୍ଘ ବର୍ଷ ଇଂଲଣ୍ଡରେ ରହିବା ପରେ ନେହେରୁ ଭାରତ ପ୍ରତ୍ୟାବର୍ତ୍ତନ କରି ଆହ୍ଲାବାଦ ହାଇକୋର୍ଟରେ ଜଣେ ଆଇନଜୀବୀ ରୂପେ କାର୍ଯ୍ୟ କରିବା ଆରମ୍ଭ କରିଥିଲେ । କିନ୍ତୁ ତାଙ୍କ ଭିତରେ ଥିବା ଉଦୀପ୍ତ ଦେଶାତ୍ମବୋଧ ତାଙ୍କୁ ସୀମିତ ବୃତ୍ତିରେ ଆବଦ୍ଧ କରି ରଖି ପାରିନଥିଲା । ପରାଧୀନ ଭାରତର ଯନ୍ତ୍ରଣା ଓ ଦୁଃଖରେ ଅଭିଭୂତ ହୋଇ ସେ ଜନ୍ମମାଟିର ସେବାରେ ନିଜ ଜୀବନକୁ ଉତ୍ସର୍ଗ କରିବା ପାଇଁ ସଂକଳ୍ପ ନେଇଥିଲେ । ଗାନ୍ଧିଜୀଙ୍କ ଚିନ୍ତାଧାରା ତାଙ୍କୁ ଗଭୀର ଭାବରେ ଉଦ୍‌ବୁଦ୍ଧ କରିଥିଲା । ସେ ଜାତୀୟ କଂଗ୍ରେସରେ ଯୋଗଦେଲେ । ନିଜର ବଳିଷ୍ଠ ଦେଶପ୍ରେମ ପାଇଁ ସେ ଗାନ୍ଧିଜୀଙ୍କର ପ୍ରିୟପାତ୍ର ହୋଇପାରିଥିଲେ । ଦେଶ ପାଇଁ ବାର ବାର କାରାବାସ ଭୋଗିବାକୁ ସେ ପରମ ସୌଭାଗ୍ୟ ମନେ କରୁଥିଲେ । ଭାରତକୁ ବିଦେଶୀ ଶାସନରୁ ମୁକ୍ତ କରିବା ପାଇଁ ସେ ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଉଲ୍ଲେଖନୀୟ ଭୂମିକା ଗ୍ରହଣ କରିଥିଲେ । ଭାରତ ୧୯୪୭ ମସିହା ଅଗଷ୍ଟ ମାସ ୧୫ ତାରିଖରେ ସ୍ୱାଧୀନତା ଲାଭ କରିଥିଲା । ସ୍ୱାଧୀନ ଦେଶର ପ୍ରଥମ ପ୍ରଧାନମନ୍ତ୍ରୀ ହେବାର ଗୌରବ ଲାଭ କରିଥିଲେ । ସେ ଯଥାର୍ଥରେ ଜଣେ ପଣ୍ଡିତ ଥିଲେ । ତାଙ୍କର ଅଧ୍ୟୟନ ଅତି ବ୍ୟାପକ ଥିଲା । ଗଭୀର ଅନୁଶୀଳନ ଓ ବିଶ୍ଳେଷଣ ମାଧ୍ୟମରେ ସେ ସତ୍ୟ ଆବିଷ୍କାର କରୁଥିଲେ । ସେ ଥିଲେ ଜଣେ ଉଚ୍ଚକୋଟୀର ଚିନ୍ତାନାୟକ ଓ ଲେଖକ ।

**ସମାଜବାଦୀ ନେହେରୁ:** ଗାନ୍ଧିଜୀଙ୍କ ନୀତି ଓ ଆଦର୍ଶରେ ଗଭୀର ଭାବରେ ଅନୁପ୍ରାଣିତ ହୋଇ ନେହେରୁ ଭାରତୀୟ ସ୍ୱାଧୀନତା ଆନ୍ଦୋଳନରେ ଯୋଗ ଦେଇଥିଲେ । ଜାତୀୟ ସ୍ତରରେ ସେ ଥିଲେ ଜଣେ ସଫଳ ଗଣତନ୍ତ୍ରବାଦୀ ନେତା । ସେ କହୁଥିଲେ, "I am a socialist because I feel socialism is a scientific approach to the world problems. It is not necessary that I should agree with every other socialist but generally a socialist approach is scientific and that appeals to me tremendously.' ସେ ଅନୁଭବ କରିଥିଲେ କେବଳ ଭୋଟ ଦେବାର ଅଧିକାର ନାଗରିକ

ପାଇଗଲେ ପ୍ରକୃତ ସ୍ୱାଧୀନତାର ସ୍ୱାଦ ମିଳିବ ନାହିଁ । ଯେ ପର୍ଯ୍ୟନ୍ତ ଦାରିଦ୍ର୍ୟ ଦୂରୀକରଣ ସମ୍ଭବ ହୋଇ ପାରିନାହିଁ, ଅର୍ଥନୈତିକ ବୈଷମ୍ୟ ଦୂର ହୋଇ ନାହିଁ, ସାମାଜିକ ନ୍ୟାୟ ପ୍ରତିଷ୍ଠା ହୋଇ ନାହିଁ, ଜନସାଧାରଣ ଦେଶ ନିର୍ମାଣ କାର୍ଯ୍ୟରେ ଅଂଶୀଦାର ହୋଇପାରି ନାହାନ୍ତି, ସେ ପର୍ଯ୍ୟନ୍ତ ଯଥାର୍ଥ ଜନମଙ୍ଗଳ ରାଷ୍ଟ୍ରର ସ୍ୱପ୍ନ ସ୍ୱପ୍ନରେ ହିଁ ରହିଯିବ । ଜନସାଧାରଣଙ୍କ ସର୍ବାଙ୍ଗୀନ କଲ୍ୟାଣ ସାଧନ ଥିଲା ତାଙ୍କର ମୁଖ୍ୟ ଉଦ୍ଦେଶ୍ୟ ଥିଲା । ଧର୍ମନିରପେକ୍ଷତା ନୀତି ଦ୍ୱାରା ହିଁ ଭାରତର ଐକ୍ୟ ସୁଦୃଢ଼ ହେବ ବୋଲି ତାଙ୍କର ବିଶ୍ୱାସ ଥିଲା । ତାଙ୍କର ଗୋଷ୍ଠୀନିରପେକ୍ଷ ଚେତନା ସମଗ୍ର ପୃଥିବୀର ଶାନ୍ତି, ସଦ୍ଭାବ ଓ ମୈତ୍ରୀ ପ୍ରତିଷ୍ଠା ପାଇଁ ଉଦ୍ଦିଷ୍ଟ ଥିଲା ।

**ସ୍ୱାଧୀନତା ସଂଗ୍ରାମୀ ନେହେରୁ:** ଆଦର୍ଶର ପୂଜାରୀ ଥିଲେ ପଣ୍ଡିତ ନେହେରୁ । ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଅହିଂସ ଆନ୍ଦୋଳନରେ ଇଂରେଜମାନେ ଭାରତ ଛାଡ଼ିବାକୁ ବାଧ୍ୟ ହୋଇଥିଲେ । ସ୍ୱାଧୀନ ଭାରତର ପ୍ରଥମ ପ୍ରଧାନମନ୍ତ୍ରୀ ଭାବରେ ପଣ୍ଡିତ ଜବାହରଲାଲ ନେହେରୁ ଘଟଣାକ୍ରମରେ ବ୍ରିଟେନ ଗସ୍ତରେ ଯାଇଥିଲେ । ସେଠାରେ ବ୍ରିଟେନର ପ୍ରଧାନମନ୍ତ୍ରୀ ଉଇନଷ୍ଟନ ଚର୍ଚ୍ଚିଲଙ୍କୁ ସାକ୍ଷାତ୍ କରିବାର କାର୍ଯ୍ୟକ୍ରମ ଥିଲା । ଚର୍ଚ୍ଚିଲ ଓ ନେହେରୁ ପୂର୍ବର ସକଳ ପ୍ରକାର ଭେଦଭାବ ଭୁଲି ଖୋଲାମନରେ ଦୀର୍ଘ ସମୟ ଧରି ଆଲୋଚନା କରୁଥିଲେ । ଆଲୋଚନା ସମୟରେ ପରାଧୀନତାରୁ ସଦ୍ୟ ମୁକ୍ତ ହୋଇଥିବା ଗୋଟିଏ ଦେଶର ପ୍ରଧାନମନ୍ତ୍ରୀ ଭାବରେ ତାଙ୍କର ଅନୁଭବ ଓ ଭବିଷ୍ୟତ ଯୋଜନା ସମ୍ପର୍କରେ ଜାଣିବାକୁ ଚାହିଁଥିଲେ ଚର୍ଚ୍ଚିଲ । ସଙ୍କୋଚ ସହକାରେ କହିଥିଲେ,''ଆପଣଙ୍କୁ ଗୋଟିଏ କଥା ପଚାରିବାକୁ ଚାହୁଁଛି । ଆପଣଙ୍କୁ ଆମେ ଜେଲରେ ଦୀର୍ଘକାଳ ଧରି ବନ୍ଦୀ ଭାବରେ ରଖିଥିଲୁ । ଆମ ଅଧିକାରୀମାନେ ଥରେ ନୁହେଁ, ଦୁଇ ଥର ନୁହେଁ, ବହୁବାର ଆପଣଙ୍କ ସହିତ ଅଭଦ୍ରୋଚିତ ବ୍ୟବହାର ପ୍ରଦର୍ଶନ କରିଛନ୍ତି । ଅନେକ କଷ୍ଟ ଓ ଲାଞ୍ଛନା ଦେଇଛନ୍ତି ମଧ୍ୟ । ଏ ସବୁ କାରଣରୁ ଆପଣଙ୍କର ଆମମାନଙ୍କ ପ୍ରତି ଅତି ଖରାପ ଧାରଣା ଥିବ ନିଶ୍ଚୟ ।''

ଏହା ଶୁଣି ନେହେରୁ ହସି ହସି କହିଥିଲେ,''ଅସଲ କଥା ଏହା ନୁହେଁ ଯେ ଇଂରେଜମାନେ ମୋତେ କେତେ ବର୍ଷ ଜେଲରେ ରଖିଲେ ଓ ମୋ ଭଳି ବନ୍ଦୀମାନଙ୍କୁ କିଭଳି ବ୍ୟବହାର କରୁଥିଲେ । ସ୍ୱାଧୀନତା ଲାଭ ପାଇଁ ଆମମାନଙ୍କର ଲଢେଇ ଜାତିର ପିତା ମହାତ୍ମା ଗାନ୍ଧୀଙ୍କ ନେତୃତ୍ୱରେ ଚାଲିଥିଲା । ସେ ଆମ ଭଳି ସଂଗ୍ରାମୀମାନଙ୍କୁ ଦୁଇଟି ମୁଖ୍ୟ କର୍ତ୍ତବ୍ୟ ସମ୍ପର୍କରେ ଚେତାଇ ଦେଇଥିଲେ । ତନ୍ମଧ୍ୟରୁ ଗୋଟିଏ ଥିଲା ସକଳ ପ୍ରକାର ନିର୍ଯାତନା ସହ୍ୟ କରିବା ସହ କାହାରିକୁ ନ ଡରି ନିର୍ଭୀକ ହେବା । ଅନ୍ୟଟି ହେଲା କାହାରି ପ୍ରତି ଘୃଣାଭାବ କିମ୍ବା ବିଦ୍ୱେଷଭାବ ନ ରଖିବା । ଆମେ ସଂଗ୍ରାମୀମାନେ ଉପର୍ଯ୍ୟୁକ୍ତ ଦୁଇଟି ପ୍ରସଙ୍ଗକୁ ଯଥୋଚିତ ଗୁରୁତ୍ୱ ଦେଇ ସଂଗ୍ରାମରେ ଝାସ ଦେଇଥିଲୁ । ଯେତେବେଳେ ଆମେମାନେ ଆପଣଙ୍କ ବିରୋଧରେ ଆନ୍ଦୋଳନରେ ସାମିଲ ହୋଇଥିଲୁ ସେତେବେଳେ ନିର୍ଭୀକ ଭାବରେ ଲଢୁଥିଲୁ । ଗୁଳିଗୋଳା, ଅତ୍ୟାଚାର ନିର୍ଯାତନାକୁ ଆମର ତିଳେମାତ୍ର ଭୟ ନଥିଲା । ଏବେ ଆମେ ସ୍ୱାଧୀନତା ଲାଭ କରିଛୁ, ସେତେବେଳେ ଆପଣଙ୍କ ପ୍ରତି ଖରାପ ଧାରଣା ଆଣିବୁ କାହିଁକି? ବିଶେଷତଃ ଆମର ଲଢେଇ କୌଣସି ବ୍ୟକ୍ତିବିଶେଷ ବିରୋଧରେ ନଥିଲା । ଆମେମାନେ ତ ଆପଣଙ୍କର ସାମ୍ରାଜ୍ୟବାଦୀ ନୀତି ବିରୋଧରେ ଲଢେଇ କରୁଥିଲୁ । ଆଉ ଆଜି ସ୍ୱାଧୀନ ହେଲା ପରେ ଆମର ବୁନିୟାଦି ବା ସିଦ୍ଧାନ୍ତକୁ ନେଇ ଆଗକୁ ବଢିବାକୁ ଚାହୁଁଛୁ ।''

ନେହେରୁଙ୍କଠାରୁ ଏହା ଶୁଣି ଚର୍ଚ୍ଚିଲ ତାଙ୍କର ମୁହଁକୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥିଲେ । ଦୁନିଆର ବଡ଼ବଡ଼ ରାଜନେତାଙ୍କୁ ନେହେରୁ ସ୍ପଷ୍ଟ ଓ ନିର୍ଭୀକ ଭାବରେ ନିଜର ସ୍ୱ ମତ ବ୍ୟକ୍ତ କରୁଥିଲେ । ଏହା ତାଙ୍କ ଚରିତ୍ରର ସ୍ୱାଭାବିକ ଗୁଣ ଥିଲା । ନୀତି ଆଦର୍ଶ ଓ ମୂଲ୍ୟବୋଧକୁ କୌଣସି ପ୍ରକାରେ ଜଳାଞ୍ଜଳି ନ ଦେବା ସେତେବେଳର ରାଜନେତାଙ୍କ ବୈଶିଷ୍ଟ୍ୟ ଥିଲା ।

**ନେହେରୁ ଓ ଶିଶୁମନସ୍କ :** ପଣ୍ଡିତ ନେହେରୁ ଜଣେ ସାଧାରଣ ରାଷ୍ଟ୍ରନୀତିଜ୍ଞ ନଥିଲେ, ସେ ଥିଲେ ବହୁମୁଖୀ

ପ୍ରଚଣ୍ଡ ପ୍ରତିଭାର ଅଧିକାରୀ । ଲେନିନ୍, ଷ୍ଟାଲିନ୍ ଓ ଚର୍ଚ୍ଚିଲଙ୍କଠାରୁ ସେ ଥିଲେ ସମ୍ପୂର୍ଣ୍ଣ ନିଆରା । ଅପରୂପ ସୌନ୍ଦର୍ଯ୍ୟ ପ୍ରତି ଓ ମାନବ ଜାତି ପ୍ରତି ତାଙ୍କର ଆକର୍ଷଣ ଓ ପ୍ରେମର ତୁଳନା ନାହିଁ । ଜଣେ ଶିଶୁପ୍ରେମୀ ହିସାବରେ ନେହେରୁ ଥିଲେ ସୁପରିଚିତ । ତାଙ୍କର ହୃଦୟ ଶିଶୁମାନଙ୍କର ହୃଦୟ ପରି ଥିଲା ସରଳ ଓ ସ୍ୱଚ୍ଛ । କର୍ମମୟ ଜୀବନର ବହୁମୂଲ୍ୟ ସମୟ ଦେଇ ସେ ଶିଶୁମାନଙ୍କ ଉଦ୍ଦେଶ୍ୟରେ ନିଜର ଜୀବନ କାହାଣୀ ଶୁଣାଉଥିଲେ । କର୍ମମୁଖର ଜୀବନରୁ ମୁକ୍ତି ନେଇ ଛୋଟ ପିଲାଙ୍କ ଗହଣରେ କିଛି ସମୟ କାଟିବା ନେହେରୁଙ୍କର ବଡ଼ ଦୁର୍ବଳତା ଥିଲା । ସେ କହନ୍ତି- ପିଲାମାନଙ୍କ ସହିତ ନିଜକୁ ଯୋଡ଼ିଲା ବେଳେ ସେ ନିଜର ବୟସ ଭୁଲି ଯା'ନ୍ତି । ଶିଶୁମାନେ ସରଳ, ନିରୀହ, ନିଷ୍ପାପ ଓ ଅମୃତମୟ । ସେମାନଙ୍କ ସମ୍ପର୍କରେ ଆସିଲେ ସକଳ ପ୍ରକାର ଦୁଃଖ ଭୁଲି ହୋଇଯାଏ । ସେ ପିଲାଙ୍କ ସହିତ ଖେଳୁଥିଲେ । ପିଲାଙ୍କ ସହିତ ନିଜେ ପିଲା ହୋଇ ଯାଉଥିଲେ । ଫୁଲ ସହିତ ଖେଳୁଥିଲେ, ହସୁଥିଲେ ଓ ହସାଉଥିଲେ । ସେ ଗୋଟିଏ ସ୍କୁଲ ବୁଲିବାକୁ ଯାଇଥିଲେ । ଜାଣିବାକୁ ପାଇଲେ ସ୍କୁଲରେ ଜଣେ ପିଲା ଅଛି । ଯେତେ ଚେଷ୍ଟା କଲେ ସୁଦ୍ଧା କେହି ତାକୁ ହସାଇ ପାରନ୍ତି ନାହିଁ । ନେହେରୁ ସେହି ଶ୍ରେଣୀକୁ ଗଲେ । ତାଙ୍କ ପକେଟରୁ ଗୋଟିଏ ପାନିଆ କାଢ଼ି ନିଜର ଚନ୍ଦାମୁଣ୍ଡ କୁଣ୍ଡାଇବାକୁ ଲାଗିଲେ । ଏହା ଦେଖି କେବେ ହସୁନଥିବା ସେହି ପିଲାଟି ଠୋ ଠୋ ହୋଇ ହସି ଉଠିଲା । ଅନ୍ୟ କେହି ନେତୃସ୍ଥାନୀୟ ବ୍ୟକ୍ତି ନେହେରୁଙ୍କ ପରି ପିଲାଙ୍କ ସହିତ ମିଶି ପାରୁନଥିଲେ । ନେହେରୁଙ୍କ ପିଲାଙ୍କ ପ୍ରତି ଏତେ ଭଲ ପାଇବା ଥିଲା ଯେ ପିଲାମାନେ ତାଙ୍କୁ ଶ୍ରଦ୍ଧାରେ 'ଚାଚା' ବୋଲି ଡ଼ାକୁଥିଲେ ।

ବୟସ୍କ ବ୍ୟକ୍ତିମାନେ ଛୋଟପିଲାଙ୍କୁ ଉପଦେଶ ଭାରରେ ଭାରାକ୍ରାନ୍ତ କରୁଥିବାରୁ ସେ କ୍ଷୁବ୍ଧ ହୁଅନ୍ତି । ବଡ଼ମାନେ ଛୋଟମାନଙ୍କୁ ଛୋଟ.....ବୋଲି ଭାବି ସେମାନଙ୍କ ଉପରେ ହୁକୁମାତି କରିବା ନେହେରୁ ଚାହାନ୍ତି ନାହିଁ । ସେମାନେ ସ୍ୱତନ୍ତ୍ର । ଛୋଟମାନେ କଥାରେ ଭାବ ପ୍ରକାଶ କରିବାକୁ ଅସମର୍ଥ ହେଲେ ମଧ୍ୟ ବୟସ୍କମାନଙ୍କ କାର୍ଯ୍ୟକଳାପ ଦେଖନ୍ତି, ଜାଣନ୍ତି ଓ ବୁଝନ୍ତି । ତେଣୁ ବୟସ୍କମାନେ ଏ ବିଷୟରେ ସଚେତନ ହୋଇ ଶିଶୁମାନଙ୍କୁ କୌଣସି ପରିସ୍ଥିତିରେ ଅବହେଳା କରିବା ଅନୁଚିତ । ସେ କାନେ କାନେ କହୁଥିଲେ, ଶିଶୁ ହେଉଛି ଅସରନ୍ତି ଶକ୍ତିର ଗନ୍ତାଘର । ଅନେକ ଗୁଣ ତା' ଭିତରେ ବୀଜ ଅବସ୍ଥାରେ ରହିଛି । ସେହି ସୁପ୍ତ ଶକ୍ତିକୁ ଉପଯୁକ୍ତ ଓ ଅନୁକୂଳ ମାନରେ ପରିଚାଳିତ କରି ରୂପାନ୍ତରିତ କଲେ ସେ ସିଂହ ପରି ଶକ୍ତିଶାଳୀ ହୋଇ ଉଠିବ । ତେଣୁ ବାପ ମା'ମାନଙ୍କୁ ସତର୍କ କରି ଦେଇ ନେହେରୁ କହନ୍ତି-ସେମାନେ ପିଲାମାନଙ୍କ ଉପରେ ନିଜର ଆଦର୍ଶ କିମ୍ବା ଇଚ୍ଛାକୁ ଲଦି ଦେବା ଉଚିତ ନୁହେଁ । ପିଲା ମଧ୍ୟରେ ଯେଉଁ ଗୁଣ ଓ ଆଦର୍ଶ ଅଛି ତାହାର ପରିପ୍ରକାଶ ଦିଗରେ ବାପା ମା' ସାହାଯ୍ୟ କରିବା ଉଚିତ । ଶିଶୁ ହେଉଛି ପ୍ରକୃତିର କ୍ଷୁଦ୍ର ଭଣ୍ଡାର । ପ୍ରକୃତି ଯେମିତି ନିଜର ନିୟମ ଓ ମାର୍ଗରେ ବିକଶିତ ହୁଏ, ଶିଶୁର ବିକାଶ ଠିକ୍ ସେହିପରି ହୁଏ । ଖାଲି ବାପା ମା' ମାନେ ଟିକେ କେବଳ ବାଗେଇ ଦିଅନ୍ତି । ଏ କ୍ଷେତ୍ରରେ ବାପା ଅପେକ୍ଷା ମା'ର ଭୂମିକା ଗୁରୁତ୍ୱପୂର୍ଣ୍ଣ । କାରଣ ମା' ହିଁ ପ୍ରକୃତରେ ଶିଶୁକୁ ଗଢ଼ି ତୋଳେ । ଏହି ଦୃଷ୍ଟିରୁ ନାରୀଶିକ୍ଷା ଉପରେ ପଣ୍ଡିତଜୀ ସବୁବେଳେ ଗୁରୁତ୍ୱ ଦେଇ ଆସୁଥିଲେ । ଯଦି ଭାରତରେ ନାରୀଶିକ୍ଷାର ଅଗ୍ରଗତି ନହୁଏ, ତେବେ ଦେଶର ପ୍ରଗତି ଅସମ୍ଭବ ବୋଲି ସେ ସତର୍କ କରାଇ ଦେଇଯାଇଛନ୍ତି ।

ଶିଶୁଟି ଅନେକ ଜିନିଷକୁ ଡରେ । ତେବେ ଶିଶୁର ଏହି ଡର ସମ୍ପୂର୍ଣ୍ଣ ରୂପେ ଜନ୍ମଗତ ନୁହେଁ । ଉଚ୍ଚ ଧ୍ୱନି, ସର୍ପିଳ ଗତି, ଉଚ୍ଚ ସ୍ଥାନରୁ ପଡ଼ିଯିବା ପରି ଭୟ ତା'ର ଜନ୍ମଗତ ହୋଇଥିବା ବେଳେ ପରବର୍ତ୍ତୀ ସମୟରେ ନିଜର ଅନୁଭୂତିରୁ ଆଉ କିଛି ଡର ତା' ଭିତରକୁ ଆପେ ଆପେ ପଶି ଆସେ । ଯେପରିକି ନିଆଁକୁ ଛୁଇଁଲେ ହାତ ଫୋଟକା ହୋଇଯିବା । ଅନେକ ସମୟରେ ବଡ଼ମାନେ କିଛି ଭୟଙ୍କର କାହାଣୀ ଯଥା ଭୂତ ଓ ଭୟଙ୍କର ଗପ କହି ସେମାନଙ୍କ ଭିତରେ ଡରକୁ ପ୍ରବେଶ କରାଇ ଦିଅନ୍ତି । ଏଭଳି ଡର ଧୀରେ ଧୀରେ ଶିଶୁଟି ମନରେ ବସା ବାନ୍ଧି ରହିଯାଏ ।

ଯଦି ଚୁରଚୁରିଆ ବାଣ ଧରିବାକୁ ବାପା ମା’ ଡରୁଥା’ନ୍ତି, କି ତେଲୁଣି ପୋକଟିଏ ଧରିବାକୁ ବଡ଼ମାନେ ଡରୁଥା’ନ୍ତି ତେବେ ବଡ଼ମାନଙ୍କର ଏ ଡର ପିଲାମାନଙ୍କ ଭିତରେ ଆପେ ଆପେ ପ୍ରବେଶ କରିଯାଏ । ପାଠରେ କମ୍ ନମ୍ବର ରଖିବା– ଏଭଳି ଏକ ଅବାଞ୍ଛିତ ଡର ଅଭିଭାବକମାନେ ପିଲାମାନଙ୍କ ଭିତରେ ସୃଷ୍ଟି କରିଥା’ନ୍ତି । ଡର ଶିଶୁର ଦକ୍ଷତାକୁ ନଷ୍ଟ କରିଦିଏ । ଡରାଇ ଧମକାଇ ଶିଶୁର ବିକାଶ ଘଟାଇବା ସମ୍ଭବ ନୁହେଁ । ପିଲାମାନଙ୍କୁ ଆଦୌ ଅଯଥା ଭୟ ଦେଖାଇବା ଉଚିତ ନୁହେଁ । ଛୋଟପିଲାମାନଙ୍କୁ ଡରେଇ ଧମକେଇ ପ୍ରଶ୍ନ ପଚାରିବା ଆଦୌ ଉଚିତ ନୁହେଁ । ଅଧିକାଂଶ ବେଳେ ପିଲା ପରୀକ୍ଷାରେ ଭଲ ନ କଲେ ‘ଗଧ’ ‘ବୋକା’ ଆଦି ଗାଳି, ଭର୍ତ୍ସନା ଓ ମନ୍ତବ୍ୟର ଶିକାର ହୁଅନ୍ତି । ଏହାଦ୍ୱାରା ପିଲାଟି ନିଜକୁ ଅନ୍ୟମାନଙ୍କଠାରୁ ନ୍ୟୁନ ମନେ କରେ । ଅନ୍ୟମାନଙ୍କ ସମକକ୍ଷ ସେ ନୁହେଁ ବୋଲି ଭାବିବାକୁ ଆରମ୍ଭ କରେ । ଅନ୍ୟପକ୍ଷରେ ଶ୍ରଦ୍ଧାରେ ଶିକ୍ଷାଦାନ କଲେ, ପିଲା ଯାହା ବୁଝି ପାରୁ ନାହିଁ ତାହାକୁ ଧୈର୍ଯ୍ୟର ସହ ବୁଝାଇ ଦେଲେ ପିଲାଟି ନିଶ୍ଚୟ ଉନ୍ନତି କରିବ, ଏଥିରେ ସନ୍ଦେହ ନାହିଁ । ବାପା ମା’ ଙ୍କର ମାନସିକ ଚାପର ପ୍ରଭାବ ଯେପରି ଶିଶୁମାନଙ୍କ ଉପରେ ନ ପଡ଼େ ସେଥିପ୍ରତି ସେମାନେ ଦୃଷ୍ଟି ଦେବା ଆବଶ୍ୟକ । ବଡ଼ଙ୍କ ଚାପ ସାନଙ୍କ ଉପରେ କୋପରେ ପରିଣତ ନ ହେଉ ।

ନେହେରୁ ପିଲାମାନଙ୍କୁ ସର୍ବଦା ସୁରକ୍ଷିତ ରଖିବାକୁ ସମାଲୋଚନା କରୁଥିଲେ । ଏହାଦ୍ୱାରା ପିଲାର ଉପଯୁକ୍ତ ବିକାଶ ଘଟେ ନାହିଁ । ପିଲାମାନେ ନିର୍ଭୟ ଓ ଆତ୍ମନିର୍ଭରଶୀଳ ହୁଅନ୍ତୁ ବୋଲି ସେ ସବୁବେଳେ ଜୋର ଦେଇ କହୁଥିଲେ । ପିଲାମାନେ ପ୍ରକୃତିର କୋଳରେ ରହି ପ୍ରକୃତିର ନିକଟତର ହୁଅନ୍ତୁ ବୋଲି ସେ ଚାହୁଁଥିଲେ । ପିଲାମାନଙ୍କ ଗହଣରେ ପ୍ରକୃତି କୋଳକୁ ଇଙ୍ଗିତ କରି–ଆମର ଏହି ସୁନ୍ଦର ପୃଥିବୀ । ଏଥିରେ ଥିବା ବନ ଲତା ପାହଡ଼ ଆହା କେଡ଼େ ସୁନ୍ଦର !! ତୁମେ ଥରେ ନିଜେ ଅନୁଭବ କର ବୋଲି ପ୍ରେରଣା ଦେଉଥିଲେ । ସେ ଝର ଝର ହୋଇ ଝରିଯାଉଥିବା ଝରଣା, କୁଳୁକୁଳୁ ନାଦ କରି ବହିଯାଉଥିବା ନଦୀ, ସ୍ୱଚ୍ଛ ହିମଧାରା, ଫୁଲ ବାସ୍ନା ଓ ଫଳର ସ୍ୱାଦ ନିଜେ ଅନୁଭବ କରାଉଥିଲେ । ସେ ବାରମ୍ବାର କହୁଥିଲେ, ‘‘ପ୍ରକୃତିକୁ ଭଲ ପାଅ । ପ୍ରକୃତିକୁ ମନ ଭରି ଦେଖ । ପ୍ରାଣ ଭରି ଶିଖ ।’’ ପ୍ରକୃତିର ଅଫୁରନ୍ତ ରୂପସମ୍ଭାର ସେ ବର୍ଣ୍ଣନା କରୁଥିଲେ । ପ୍ରକୃତି ହେଉଛି ସବୁଠୁ ବଡ଼ ପରୀ କାହାଣୀ । ଏହାକୁ ପିଲାମାନେ ଗ୍ରନ୍ଥକୀଟ ନ ହୋଇ ଉପଭୋଗ କରିବା ଆବଶ୍ୟକ । କୋଇଲିର କୁହୁ ତାନ, ଅନ୍ୟ ଚଢେଇମାନଙ୍କର କିଚିରିମିଚିରି ଶବ୍ଦ କାହାକୁ ଭଲ ନ ଲାଗେ ? ସୌନ୍ଦର୍ଯ୍ୟରେ ହିଁ ଜୀବନ ଅଛି । ଏହିପରି ବୈପ୍ଳବିକ ଚିନ୍ତାଧାରା ସେ ପିଲାମାନଙ୍କ ମନରେ ଉଦ୍ରେକ କରି ଦେଉଥିଲେ । ସେ କହୁଥିଲେ ଅନୁଷ୍ଠାନର ଚାରି କାନ୍ଥ ଭିତରେ ସୌନ୍ଦର୍ଯ୍ୟ ନାହିଁ । ଜୀବନର ପ୍ରକୃତ ସୌନ୍ଦର୍ଯ୍ୟ କାର୍ଯ୍ୟାଳୟ ବାହାରେ । ଆମେ ଯେତେ ଗଭୀର ଚିନ୍ତା କଲେ ମଧ୍ୟ ଆମର ଶ୍ରବଣେନ୍ଦ୍ରିୟକୁ ପ୍ରକୃତିର ସୌନ୍ଦର୍ଯ୍ୟ ଉପଭୋଗ କରିବାକୁ ଖୋଲା ରଖିବା ଉଚିତ । ସୁସ୍ଥ ଓ ଅନୁକୂଳ ପରିବେଶରେ ଶିଶୁଟି ସ୍ୱାଭାବିକ ଭାବରେ ହସୁ । ‘ଶିଶୁ ହସିଲେ ଜଗତ ହସେ’ ପିଲାକୁ ଜିତିବା ଶିଖାନ୍ତୁ, ହାରି ଗଲେ କ’ଣ କରିବାକୁ ହେବ ତାହା ମଧ୍ୟ ଶିଖାନ୍ତୁ । ଘାସକଟା ଓ ଘୋଡ଼ାଚଢା ଶିଖାନ୍ତୁ ।... ପିଲାର ମଧ୍ୟ ସ୍ୱାଭିମାନ ଅଛି । ତାକୁ ଆହତ ହେବାକୁ ଦିଆ ନଯାଉ । ପିଲାମାନଙ୍କୁ କେବେହେଲେ ମୂର୍ଖ ବୋଲି ଭାବନ୍ତୁ ନାହିଁ କି କୁହନ୍ତୁ ନାହିଁ । ପ୍ରତ୍ୟେକ କ୍ଷେତ୍ରରେ ସେମାନଙ୍କର ବୁଦ୍ଧି ଆମଠାରୁ ସୂକ୍ଷ୍ମ ଓ ଉନ୍ନତ । ପାଠ ନହେଲେ ମଧ୍ୟ ଅନ୍ୟ ବହୁତ କ୍ଷେତ୍ର ଅଛି । ପିତାମାତାର ଆସନ ପାଇ ସାରିଲା ପରେ ପ୍ରତ୍ୟେକ ବ୍ୟକ୍ତି ନିଜର ସହନଶୀଳତାକୁ ବିକଶିତ କରିବା ଉଚିତ । ପିଲାର ମାନସିକ ବିକାଶ ପାଇଁ ତାକୁ ଟ୍ରେନ୍‌ଗାଡ଼ି, ମଟର ଓ ଉଡ଼ାଜାହାଜ ଆଦି ଖେଳନା ଯୋଗାଇ ଦେବାକୁ ପଡ଼ିବ । ଋଷ ଦେଶରେ ଯାହା ସବୁଠାରୁ ସୁନ୍ଦର ତାହା ଶିଶୁମାନଙ୍କ ପାଇଁ ଛାଡ଼ି ଦିଆଯାଏ । ଠିକଣା ସମୟରେ ଠିକଣା ଜ୍ଞାନ ଦେଲେ ପିଲା ତାକୁ ସହଜରେ ଗ୍ରହଣ କରି ନେଇଥାଏ । ସମୟ ପରିବର୍ତ୍ତନଶୀଳ । ସମୟକୁ

ଖାପ ଖୁଆଇ ପିଲାଟିର ଗତିବିଧି ପ୍ରତି ସାବଧାନତାର ସହିତ ଯତ୍ନବାନ ହେବା ଆବଶ୍ୟକ । କୌଣସି ଅବସରରେ ପିଲାଟିକୁ ଯଦି ଚିଡ଼ିଆଖାନା, ପାର୍କ ଓ ପ୍ରଦର୍ଶନୀ ପ୍ରଭୃତି ଦେଖାଇବାକୁ ନିଆଯାଏ ତେବେ ପିଲାଟିର ଧାରଣା, ଅନୁଭୂତି ସର୍ବୋପରି ପ୍ରତ୍ୟକ୍ଷ ଜ୍ଞାନ ବୃଦ୍ଧି ପାଇଥାଏ । ନିଜର ଆଦର୍ଶ, ଲକ୍ଷ୍ୟ ଓ ନୀତିକୁ ଭୁଲି ଗଲେ ଜଣେ ବିଫଳ ହୋଇଥାଏ । ଜୀବନରେ ସଫଳ ହେବାକୁ ହେଲେ ଶିକ୍ଷା ଅତି ଜରୁରୀ । ନେହେରୁ ଗୁରୁତ୍ୱ ଦେଇ କହୁଥିଲେ- ବୟସ ଦ୍ୱାରା ଜୀବନକୁ ମପାଯାଏ ନାହିଁ, ଜଣେ କ'ଣ କରେ, କ'ଣ ଅନୁଭବ କରେ ଓ କ'ଣ ସଫଳତା ଅର୍ଜନ କରେ, ସେଥିରୁ ଜଣକର ଜୀବନ ଜଣାଯାଏ ।

ନେହେରୁ କହୁଥିଲେ, ପିଲାଏ ହେଉଛନ୍ତି ବଗିଚାର ଫୁଲଚାରା ପରି । ସେମାନଙ୍କର ଲାଳନପାଳନ ନିମିତ୍ତ ବହୁତ ଅସରନ୍ତି ସ୍ନେହ ଓ ଅଫୁରନ୍ତ ଯତ୍ନ ଆବଶ୍ୟକ : 'Children are like buds in a garden and should be carefully and lovingly nurtured ,as they are the future of the nation and citizens of tomorrow . Only through the right education can a better order of society be built.'

ପିଲାମାନଙ୍କ ମଧ୍ୟରେ କିଛି ପ୍ରତିବନ୍ଧକ ବା ପ୍ରଭେଦ ନାହିଁ । ସେମାନେ ମୁକ୍ତ । ଏପରିକି ପିଲାମାନେ ଯେତେବେଳେ ପରସ୍ପର ସହିତ କଳି କରନ୍ତି ତାହା ମଧ୍ୟ ହେଉଛି ସେମାନଙ୍କ ଖେଳର ଏକ ଅଂଶ । ପିଲାମାନଙ୍କ ମଧ୍ୟରେ କିଛି ଭେଦାଭେଦ ବିଚାର ନଥାଏ । ସେମାନେ ଖେଳନ୍ତି, କଳି କରନ୍ତି, ପୁଣି ସବୁ କଥା ଛାଏଁ ଛାଏଁ ଭୁଲି ଯାଇ ପରସ୍ପର ସହିତ ମିଶନ୍ତି ଓ ଖେଳନ୍ତି । ବଡ଼ମାନେ ଛୋଟ ଶିଶୁମାନଙ୍କଠାରୁ ଏହା ଅନୁକରଣ କରିବା ଉଚିତ । କାରଣ ବଡ଼ମାନେ କଳି କଲେ ସହଜରେ ମିଶି ପାରନ୍ତି ନାହିଁ । ସେମାନେ ଗୋଷ୍ଠୀ ଓ ଦଳ ଗଠନ କରନ୍ତି । ବୟସ୍କମାନଙ୍କ ଏହି ପ୍ରତିବନ୍ଧକ ଯୋଗୁଁ ଦେଶର ସଂହତି ଆଜି ବିପଦଗ୍ରସ୍ତ ହୋଇଛି । ଧର୍ମ, ଜାତି, ଦେଶ, ରାଜ୍ୟ, ଭାଷା ଏବଂ ଧନୀ-ଦରିଦ୍ର ହେଉଛି ନାନା ପ୍ରତିବନ୍ଧକ । ଏହା ସୃଷ୍ଟି କରେ ମନୋମାଳିନ୍ୟ, ସଂଘର୍ଷ, ଯୁଦ୍ଧ ଓ ଧ୍ୱଂସ ।

ପିଲାମାନଙ୍କୁ ସେ ଅତ୍ୟନ୍ତ ଭଲ ପାଉଥିବାରୁ ତାଙ୍କୁ ଶ୍ରଦ୍ଧାରେ ପିଲାମାନେ 'ଚାଚା ନେହେରୁ' ବୋଲି ଡାକନ୍ତି । ନେହେରୁ ଭଲ ପାଉଥିବା ଅନ୍ୟ ପଦାର୍ଥଟି ହେଉଛି ଗୋଲାପ ।

**ନେହେରୁ ଓ ଶିଶୁମଙ୍ଗଳ ଯୋଜନା:** ନେହେରୁ ଥିଲେ ଦେଶ ଗଠନର ମହାନ୍ ନିର୍ମାତା । ଅନବରତ ଦେଶ କଥା ଚିନ୍ତା କରୁଥିଲେ । ନେହେରୁ ଭଲ ଭାବରେ ଉପଲବ୍ଧି କରିଥିଲେ ପିଲାମାନେ ହେଉଛନ୍ତି ଦେଶର ମୂଳଦୁଆ ଓ ଆସନ୍ତା କାଲିର ଆଲୋକ ଧାରକ । ଶିଶୁମାନଙ୍କର ଉଜ୍ଜ୍ୱଳ ଭବିଷ୍ୟତ ପ୍ରସଙ୍ଗ ପ୍ରଥମେ ତାଙ୍କ ମାନସପଟରେ ଆପଣା ଛାଏଁ ଭାସି ଉଠୁଥିଲା । ଦେଶ ବିକାଶରେ ଶିକ୍ଷାର ପ୍ରସାର କଥା ସେ ଯେତିକି ଭାବୁଥିଲେ ଶିଶୁମାନଙ୍କୁ ଉତ୍ତମ ନାଗରିକ କରି ଗଢି ତୋଳିବା ପାଇଁ ସେତିକି ଯୋଜନା ପ୍ରସ୍ତୁତ କରୁଥିଲେ । ସେ କହିଥିଲେ,''ଶିଶୁମାନଙ୍କର ମଙ୍ଗଳ ହେଉଛି ସବୁ ଯୋଜନାର ମୌଳିକ ଦିଗ । ସ୍କୁଲ ଯାଉଥିବା ୬ରୁ ୧୨ ବର୍ଷ ବୟସର ପିଲାମାନଙ୍କ ପାଇଁ ଦେଶ ଶିଶୁମଙ୍ଗଳ କାର୍ଯ୍ୟକ୍ରମ ହାତକୁ ନେବାକୁ ହେବ । ଏଥିରେ ଉତ୍ତମ ଶିକ୍ଷା ସହିତ ଖେଳ, ସଂଗୀତ, ନୃତ୍ୟ, ସ୍ୱାସ୍ଥ୍ୟ ସେବା ଓ ମଧ୍ୟାହ୍ନ ଭୋଜନର ବ୍ୟବସ୍ଥା ଥିବ ।'' ଶିଶୁମାନଙ୍କ ସମେତ ବରିଷ୍ଠମାନଙ୍କୁ କର୍ମପ୍ରବଣ ହେବାକୁ ବାର୍ତ୍ତା ଦେଇ ସେ ସବୁବେଳେ କହୁଥିଲେ-'ଆରାମ ହାରାମ ହୈ' ।

ଶିକ୍ଷା ଜଣକୁ ସ୍ୱାର୍ଥପର ହେବାକୁ ଦିଏ ନାହିଁ । ବରଂ ଶିକ୍ଷା ସମଗ୍ର ମାନବ ସମାଜର ସେବା କରିବା ପାଇଁ ଇଚ୍ଛାକୁ ଜାଗ୍ରତ କରିଥାଏ । ପ୍ରାପ୍ତ ଜ୍ଞାନକୁ ବ୍ୟକ୍ତିଗତ ଉଦ୍ଦେଶ୍ୟରେ କେବଳ ବ୍ୟବହାର ନ କରି ଜନସାଧାରଣଙ୍କ କଲ୍ୟାଣ ନିମିତ୍ତ ବିନିଯୋଗ କରିବା ବାଞ୍ଛନୀୟ ବୋଲି ନେହେରୁ ସଦାସର୍ବଦା କହୁଥିଲେ । ୧୯୫୫ରେ ନେହେରୁ ଭାରତରେ ଶିଶୁମାନଙ୍କ ପାଇଁ ଫିଲ୍ମ ସୋସାଇଟି ସ୍ଥାପନ କରିଥିଲେ । ତାଙ୍କ ପ୍ରଚେଷ୍ଟାରେ ଓ ସହାୟତାରେ ଲଳିତ କଳା ଏକାଡ଼େମୀ ଓ ସାହିତ୍ୟ ଏକାଡ଼େମୀ ସ୍ଥାପିତ ହୋଇଥିଲା । କାରଣ ସେ ଅନୁଭବ କରିଥିଲେ ଶିକ୍ଷା କହିଲେ କେବଳ ସ୍କୁଲ କଲେଜରୁ ପ୍ରାପ୍ତ ପାଣ୍ଡିତ୍ୟକୁ ବୁଝାଏ ନାହିଁ, କଳା ଓ ସଂସ୍କୃତି ଆଦି କ୍ଷେତ୍ରରେ ସର୍ବାଙ୍ଗୀନ ବିକାଶ ହିଁ ପ୍ରକୃତ ଶିକ୍ଷା ।

ଆମର ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁଙ୍କ ପୁଣ୍ୟ ଜନ୍ମ ଦିନଟିକୁ ଶିଶୁ ଦିବସ ରୂପେ ପାଳନ କରାଯାଉଛି । ନେହେରୁଙ୍କ ଶିଶୁମାନଙ୍କ ପ୍ରତି ଥିଲା ଅନାବିଳ ଶ୍ରଦ୍ଧା । ନେହେରୁ କହୁଥିଲେ ଆଜିର ଶିଶୁ ଆସନ୍ତା କାଲିର ବୟସ୍କ ବ୍ୟକ୍ତି । ଭବିଷ୍ୟତର ନେତୃତ୍ୱ ନେବାରେ ଶିଶୁମାନେ ହିଁ ଅଧିକାରୀ । ଏ ବିଶ୍ୱ ଦିନେ ସେମାନଙ୍କର ହେବ । ତେଣୁ ସେମାନଙ୍କୁ ସୁଯୋଗ ଦେବା ବର୍ତ୍ତମାନର ଶୈଶବ ହିଁ ଉପଯୁକ୍ତ ସମୟ । ଏହି ନିର୍ମାଣକ୍ଷମ ସମୟ ହେଉଛି ସେମାନଙ୍କ ସାମର୍ଥ୍ୟ ବଢାଇବାର, ସେମାନଙ୍କ ଦାୟିତ୍ୱ ଓ ଆତ୍ମବିଶ୍ୱାସ ସୃଷ୍ଟି କରିବାର । ଶିଶୁମାନେ ସମ୍ମୁଖୀନ ହେଉଥିବା ମୌଳିକ ସମସ୍ୟା, ସେମାନଙ୍କର ଅଧିକାର ତଥା ସର୍ବାଙ୍ଗୀନ ବିକାଶ ଦିଗରେ ବୟସ୍କମାନଙ୍କୁ ସଚେତନ କରିବା ହେଉଛି ଏହି ଦିବସ ପାଳନର ତାତ୍ପର୍ଯ୍ୟ । ଶିଶୁମାନେ ସମ୍ମୁଖୀନ ହେଉଥିବା ଜଟିଳତାର ସମାଧାନ ପାଇଁ ଆମେ କେତେ କ'ଣ କରିପାରିଛୁ, ତାହା ଆକଳନ କରିବାର ସୁଯୋଗ ଆସିଛି ।

**ଉପସଂହାର:** ଶିଶୁତ୍ୱ ପରିପୂର୍ଣ୍ଣତା ଲାଭ କରୁ ଓ ସେମାନେ ଉଚ୍ଚ ଶିକ୍ଷା ଲାଭ କରନ୍ତୁ– ଏହା ନେହେରୁ କାମନା କରୁଥିଲେ । ଭାରତ ଇତିହାସରେ ସେ ଏକ ଅବିସ୍ମରଣୀୟ ମହାନ୍ ଚରିତ୍ର, ଅନନ୍ୟ ମାନବବାଦୀ ନେତା ଓ ଚିରସ୍ମରଣୀୟ ଆଦର୍ଶ ଭାରତୀୟ ।

ପ୍ଲଟ୍ ନଂ–୫୫୬/୩୭୫୧
କାନନ ବିହାର–୨, ପଟିଆ
ଭୁବନେଶ୍ୱର–୭୫୧୦୩୧

# ଅବନୀରୁ ପାପ ଯାଉ

**ଶୈଳଜା ଗିରି**

ଜଗତଜନନୀ ସ୍ୱାଗତ ତୁମକୁ
ଆସ ଆଜି ଅବତରି
ଅପେକ୍ଷାରେ ତୁମ ବସିଅଛୁ ଆମେ
ନୟନେ ଲୋତକ ଭରି ।
ପ୍ରତିଟି ନାରୀର ଅନ୍ତକରଣରେ
ତୁମେ ସୁପ୍ତ ଭାବେ ଅଛ
ଆପଣା ଶକତି ଚିହ୍ନିବାକୁ ତୁମେ
ପ୍ରେରଣା ନିତି ଦେଉଛ ।
ହାତରେ ତ୍ରିଶୂଳ ଧରାଇ ଆମକୁ
ଅନ୍ତରେ ଭର ମା' ଶକ୍ତି
ମହିଷମାନଙ୍କୁ ପରାହତ କରି
ତେଜିଉଠୁ ନାରୀ ଶକ୍ତି ।
କଲ୍ୟାଣ କର ମା' ଶକତି ଦିଅ ମା'
ନାରୀ ଚିହ୍ନୁ ନିଜ ଶକ୍ତି
ମହିଷା ବିନାଶି ଆପଣା ସୁରକ୍ଷା
କରିପାରୁ ସିଏ ନିତି ।



ନବ ଉନ୍ମାଦନା ନବ ଉଦ୍ଦୀପନା
ଭରିଦିଅ ଆମଠାରେ
ପାଉଁଶ ତଳର ନିଆଁ ଜଳିଉଠୁ
ପ୍ରତିଟି ନାରୀ ଭିତରେ ।
ତୁମରି ଆଶିଷ ତୁମରି ପ୍ରେରଣା
ଆମର ଶକତି ହେଉ
ନାରୀ ଚିହ୍ନୁ ଏବେ ଆପଣା ଶକତି
ଅବନୀରୁ ପାପ ଯାଉ ।

ମାର୍ଫତ୍–ଡାକ୍ତର ଅନାଦି ନନ୍ଦନ ଗିରି
ଘର ନଂ–୩ ଆର୍ ୩
ମ୍ୟୁଜିୟମ୍ ଏରିଆ, ବିଜେବି ନଗର
ଜିଲ୍ଲା– ଖୋର୍ଦ୍ଧା, ଭୁବନେଶ୍ୱର–୧୪

# କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ସୃଷ୍ଟିର ବୈଶିଷ୍ଟ୍ୟ

ସୁରଭି ମହାପାତ୍ର

ମାତ୍ର ସତର ବର୍ଷ ବୟସରୁ ଲେଖକ ଭାବେ ଆପଣାର ପରିଚୟ ସାହିତ୍ୟ କ୍ଷେତ୍ରରେ ସୃଷ୍ଟି କରି ପ୍ରାୟ ଅର୍ଦ୍ଧ ଶତାବ୍ଦୀ ଯାଏଁ ଓଡ଼ିଆ ଭାଷା ଓ ସାହିତ୍ୟରେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର ତାଙ୍କର ପ୍ରଭାବ ବିସ୍ତାର କରିପାରିଥିଲେ । ସେ ଜନ୍ମ ହୋଇଥିଲେ ଐତିହାସିକ କଟକ ସହରରେ ୧୮୮୮ ମସିହା ଡିସେମ୍ବର ୯ ତାରିଖରେ । ମାତ୍ର ତାଙ୍କ ସାହିତ୍ୟ ସାଧନାର ମୁଖ୍ୟ କ୍ଷେତ୍ର ଥିଲା ଭଦ୍ରକ ସହରର ଭାଗବତ ଭବନ (ଅସ୍ତଳ ଓ ନୂଆ ବଜାର ଅନ୍ତର୍ଗତ)ଆଉ ଭଦ୍ରକ ସହରଠାରୁ ପ୍ରାୟ ୧୩ କିଲୋମିଟର ଦୂରବର୍ତ୍ତୀ ତାଳପଦା(ସ୍ୱଗ୍ରାମ)ଠାରେ । ଲକ୍ଷ୍ମୀକାନ୍ତଙ୍କ ପିତା ଚୌଧୁରୀ ଭାଗବତ ପ୍ରସାଦ ସାମନ୍ତରାୟ ମହାପାତ୍ର ଥିଲେ ତାଳପଦାର ଜମିଦାର । ସେ ମଧ୍ୟ ବିହାର-ଓଡ଼ିଶା ବ୍ୟବସ୍ଥାପକ ସଭାର (ଏବର ବିଧାନସଭା) ମାନ୍ୟବର ସଦସ୍ୟ(ଏବର ବିଧାୟକ) ତଥା ପ୍ରଥମ ଓଡ଼ିଆ ଉପ-ସଭାପତି (ଏବର ଉପ-ବାଚସ୍ପତି) ଥିଲେ । 'ଉତ୍କଳ ସମ୍ମିଳନୀ' ଜରିଆରେ ଯେଉଁ ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ଗଠନ ପାଇଁ ଆନ୍ଦୋଳନ ଜାରି ରହିଥିଲା, ସେଥିରେ ଅବଶ୍ୟ ଭାଗବତ ପ୍ରସାଦଙ୍କର ପ୍ରମୁଖ ଭୂମିକା ରହିଥିଲା । ସେ ଉତ୍କଳଗୌରବ ମଧୁସୂଦନ ଦାସଙ୍କର ଥିଲେ ଅନୁଗତ ଓ ଅନ୍ତରଙ୍ଗ । ତାଙ୍କ ପରି ସେ ମୁଣ୍ଡରେ ପଗଡ଼ି ମଧ୍ୟ ପିନ୍ଧୁଥିଲେ । ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ସହ ତାଙ୍କର ମଧ୍ୟ ଘନିଷ୍ଠ ସମ୍ପର୍କ ଥିଲା । ବ୍ୟାସକବି ଫକୀର ମୋହନ ସେନାପତି ଥିଲେ ତାଙ୍କର ଜଣେ ଅନ୍ତରଙ୍ଗ ବନ୍ଧୁ । ମାତ୍ର ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶରେ ପରିଣତ ହେବା ପୂର୍ବରୁ ମଧୁବାବୁ ଓ ଗୋପବନ୍ଧୁଙ୍କ ପରି ତାଙ୍କର ମଧ୍ୟ ଦେହାନ୍ତ ହୋଇଥିଲା । ଆମ ଇତିହାସରେ କେଉଁଠି ଖୋଜିଲେ ତାଙ୍କର ନାମୋଲ୍ଲେଖ ମିଳେ । ମାତ୍ର ଆମ ଐତିହାସିକମାନଙ୍କ ଅସାବଧାନତା ଯୋଗୁଁ ତାଙ୍କ ସମ୍ବନ୍ଧରେ ବେଶି କିଛି ଜଣାପଡ଼େ ନାହିଁ ।

ଭାଗବତ ପ୍ରସାଦଙ୍କ ଦେହାନ୍ତ ହେବା ପରେ ଜ୍ୟେଷ୍ଠାଧିକାର ସୂତ୍ରରେ ଲକ୍ଷ୍ମୀକାନ୍ତ ଜ୍ୟେଷ୍ଠ ପୁତ୍ର ଭାବେ ଜମିଦାର ହେଲେ । ତାଳପଦାର ଜମିଦାରଙ୍କୁ ସେତେବେଳେ 'ସାମନ୍ତରାୟ' ବୋଲି କୁହାଯାଉଥିଲା । ଫଳରେ ସମସ୍ତ ଜମିଦାରୀ ରେକର୍ଡ଼ ଓ କାଗଜପତ୍ରରେ ଲକ୍ଷ୍ମୀକାନ୍ତଙ୍କ ନାମ ରହିଲା ଚୌଧୁରୀ ଲକ୍ଷ୍ମୀକାନ୍ତ ସାମନ୍ତରାୟ ମହାପାତ୍ର । ମାତ୍ର ଲକ୍ଷ୍ମୀକାନ୍ତ ଥିଲେ ସାହିତ୍ୟ ସାଧକ । ତେଣୁ ଜଣେ ଲେଖକ ଭାବେ ସେ ତାଙ୍କ ଜମିଦାରିଆ ନାମକୁ ପରିହାର କରି କେବଳ ଲକ୍ଷ୍ମୀକାନ୍ତ ମହାପାତ୍ର ବୋଲି ବ୍ୟବହାର କରିଆସୁଥିଲେ । ମାତ୍ର ତାଙ୍କର ସାହିତ୍ୟ ସାଧନା ଲାଗି ଲୋକେ ତାଙ୍କୁ 'କାନ୍ତକବି ଲକ୍ଷ୍ମୀକାନ୍ତ'ବୋଲି ପରିଚୟ ପ୍ରଦାନ କରିଆସୁଥିଲେ । ବିଧିବଦ୍ଧ ଭାବେ ଓଡ଼ିଶାର ବିଶିଷ୍ଟ ବ୍ୟକ୍ତିମାନଙ୍କ ଗହଣରେ ୧୯୩୪ରେ ତାଙ୍କୁ ସମ୍ବର୍ଦ୍ଧନା ଜଣାଇ 'କାନ୍ତକବି' ଉପାଧି ପ୍ରଦାନ କରାଯାଇଥିଲା ବୋଲି ତାଙ୍କର କନିଷ୍ଠ ପୁତ୍ର, ସ୍ୱାଧୀନତା ସଂଗ୍ରାମୀ ଓ ସାହିତ୍ୟିକ ସ୍ୱର୍ଗୀୟ ଗୌରଚନ୍ଦ୍ର ଉଲ୍ଲେଖ କରିଛନ୍ତି ତାଙ୍କର ଗୋଟିଏ ଲେଖାରେ । ସେହି ସମ୍ବର୍ଦ୍ଧନା ସଭା ଭଦ୍ରକ ହାଇସ୍କୁଲ ପ୍ରାଙ୍ଗଣରେ (ଉଲ୍ଲେଖନୀୟ ଯେ ୧୯୮୩ ମସିହାରେ ଭଦ୍ରକ ହାଇସ୍କୁଲ ତାହାର ଶତବାର୍ଷିକ ଉତ୍ସବ ପାଳନ କରିଥିଲା )

ଅନୁଷ୍ଠିତ ହୋଇଥିଲା । ତାହାର ମୁଖ୍ୟ ଆୟୋଜକ ଥିଲେ ବିଶିଷ୍ଟ ସମାଜସେବୀ ଓ ସାହିତ୍ୟିକ (ପରେ ପଦ୍ମଶ୍ରୀ ଉପାଧି ବିଭୂଷିତ) ଲକ୍ଷ୍ମୀନାରାୟଣ ସାହୁ । ସେହି ସମ୍ବର୍ଦ୍ଧନା ସଭାରେ ସଭାପତିତ୍ୱ କରିଥିଲେ, ବିଶିଷ୍ଟ କବି, କବିଶେଖର ଚିନ୍ତାମଣି ମହାନ୍ତି । ଜାତୀୟ କବି ଭାବେ ପରିଚିତ ବାଞ୍ଛାନିଧି ମହାନ୍ତି ଏବଂ ହରେକୃଷ୍ଣ ମହତାବ (ପରେ ଓଡ଼ିଶାର ପ୍ରଧାନମନ୍ତ୍ରୀ ଓ ମୁଖ୍ୟମନ୍ତ୍ରୀ ହୋଇଥିଲେ) ସମ୍ବର୍ଦ୍ଧନା ଜଣାଇ କାନ୍ତକବିଙ୍କ ଦେଶାତ୍ମବୋଧକ ସଙ୍ଗୀତସବୁ ସେମାନଙ୍କ ଉପରେ ଗଭୀର ଭାବେ ପ୍ରଭାବ ପକାଇ ପାରିଥିଲା ବୋଲି ସ୍ୱୀକାର କରିଥିଲେ । କାନ୍ତକବିଙ୍କ କାନ୍ତ କୋମଳ ରଚନାବଳୀର ପ୍ରଶଂସା କରାଯାଇ ତାଙ୍କୁ ସେହି ସଭାରେ 'କାନ୍ତକବି' ଉପାଧି ପ୍ରଦାନ କରାଯାଇଥିଲା ।

ତେବେ ରାଜଧାନୀ ଭୁବନେଶ୍ୱରରେ ଏହି ସମ୍ବର୍ଦ୍ଧନା ସଭାର ଅଠସ୍ତରୀ ବର୍ଷ ପରେ ଓଡ଼ିଶାର ଲୋକପ୍ରିୟ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ କାନ୍ତକବି ଲକ୍ଷ୍ମୀକାନ୍ତଙ୍କର ଏକ ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି ଉନ୍ମୋଚନ କରିଥିଲେ- ୨୦୧୨,ଡିସେମ୍ବର ୯ ତାରିଖରେ । ଉଲ୍ଲେଖନୀୟ ଯେ, ଠିକ୍ ଶହେ ବର୍ଷ ପୂର୍ବରୁ ବାଲେଶ୍ୱରଠାରେ ୧୯୧୨ରେ ବାଲେଶ୍ୱରଠାରେ ଅନୁଷ୍ଠିତ 'ଉତ୍କଳ ସମ୍ମିଳନୀ'ର ସ୍ୱତନ୍ତ୍ର ଅଧିବେଶନରେ ବିଧିବଦ୍ଧ ଭାବେ 'ବନ୍ଦେ ଉତ୍କଳ ଜନନୀ'କୁ ଆବାହନୀ ସଙ୍ଗୀତ ଭାବେ ବୋଲା ଯିବାକୁ ସ୍ଥିର ହୋଇଥିଲା- ଉତ୍କଳଗୌରବ ମଧୁସୂଦନ ଦାସ ଓ ଉତ୍କଳମଣି ଗୋପବନ୍ଧୁ ଦାସଙ୍କ ନିଷ୍ପତ୍ତି କ୍ରମେ । ଏବେ ଶତାଧିକ ବର୍ଷ ପରେ ମଧ କାନ୍ତକବିଙ୍କ ରଚିତ ଏହି ସଙ୍ଗୀତର ପ୍ରଭାବକୁ ଦୃଷ୍ଟିରେ ରଖି, ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ସମଗ୍ର ବିଶ୍ୱରେ ମହାମାରୀ କୋଭିଡ଼ ଯୋଦ୍ଧାଙ୍କ ଲାଗି ମଧ ଏହି ସଙ୍ଗୀତଟି ଗାନ କରାଯିବାକୁ ନିର୍ଦ୍ଦେଶ ଦେଇଥିଲେ । ଗତ ୨୦୨୦ ମସିହା ମଇ ମାସ ୩୦ ତାରିଖଟି ଥିଲା ଏକ ଐତିହାସିକ ଦିବସ ଉଭୟ ଓଡ଼ିଆ ତଥା କୋଭିଡ଼ ଯୋଦ୍ଧାମାନଙ୍କ ପାଇଁ । ମୁଖ୍ୟମନ୍ତ୍ରୀ ନବୀନ ବାବୁଙ୍କ ନିର୍ଦ୍ଦେଶ କ୍ରମେ ସେହିଦିନ ସନ୍ଧ୍ୟା ୫ଟା ୩୦ ମିନିଟ୍‌ରେ ଓଡ଼ିଶା ସମେତ ସମଗ୍ର ଦେଶ ଓ ଏପରିକି ବିଦେଶରେ ଓଡ଼ିଆ ଭାଇ ଓ ଭଉଣୀମାନେ ଏକତାନରେ'ବନ୍ଦେ ଉତ୍କଳ ଜନନୀ' ସଙ୍ଗୀତ ଗାନ କରିଥିଲେ- ଏକ ଅଭୂତପୂର୍ବ ପରିବେଶରେ ସମଗ୍ର ବିଶ୍ୱ ମୁଖରିତ ହୋଇଉଠିଥିଲା । ମୁଖ୍ୟମନ୍ତ୍ରୀ ନବୀନ ବାବୁଙ୍କୁ ଏଥିପାଇଁ ଓଡ଼ିଶାରେ କେବଳ ନୁହେଁ, ସମଗ୍ର ଦେଶରେ ଓ ଏପରିକି ବିଦେଶରେ ସମସ୍ତେ ପ୍ରଶଂସା କରିଥିଲେ । ଏହା ପରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକଙ୍କ ଅଧକ୍ଷତାରେ ରାଜ୍ୟ ମନ୍ତ୍ରିମଣ୍ଡଳର ସ୍ୱତନ୍ତ୍ର ବୈଠକରେ ଗତ ୨୦୨୦ ମସିହା ଜୁନ୍ ୭ ତାରିଖରେ 'ବନ୍ଦେ ଉତ୍କଳ ଜନନୀ'କୁ ରାଜ୍ୟ ସଙ୍ଗୀତର ମାନ୍ୟତା ପ୍ରଦାନ କରାଯାଇଥିଲା ।

ଓଡ଼ିଆ ସାହିତ୍ୟର ପ୍ରାୟ ସବୁ ବିଭାଗରେ କାନ୍ତକବିଙ୍କ ସୃଷ୍ଟି ସଫଳ ହୋଇଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ତାଙ୍କର ଦେଶଭକ୍ତିମୂଳକ ସଙ୍ଗୀତର ପଟ୍ଟାନ୍ତର ନାହିଁ । ତାଙ୍କର ଭକ୍ତିମୂଳକ ସଙ୍ଗୀତଗୁଡ଼ିକ ମଧ ବେଶ୍ ହୃଦୟସ୍ପର୍ଶୀ । ତାଙ୍କ ରଚିତ 'ଜୀବନ ସଙ୍ଗୀତ'ରେ ଥିବା 'ସବୁଥିରୁ ବଞ୍ଚିତ କରି କେଉଁ ଯଶ ବାନା ଉଡ଼ାଇବ ହେ' ବା 'ଦେ ମୋତେ ବାଇଆ କରି ଆରେ ମୋର ବାଇଆ ରଜା/ନାଚିବି ମୁଁ ନଙ୍ଗଳା ହୋଇ ତୁ ତାଳିମାରି ଦେଖିବୁ ମଜା' ପ୍ରଭୃତି ମଧ ଅଦ୍ୱିତୀୟ । ଏହା ବ୍ୟତୀତ ତାଙ୍କର ଏକମାତ୍ର ଉପନ୍ୟାସ 'କଣାମାମୁ', ଅନେକ କ୍ଷୁଦ୍ରଗଳ୍ପ ମଧରୁ 'ବୁଢା ଶଙ୍ଖାରୀ', ଶିଶୁ ସାହିତ୍ୟ 'ଜୀବଜନ୍ତୁ ବା ଚିଡ଼ିଆଖାନା', ନାଟକ 'ଲକ୍ଷ୍ମୀ ଚଣ୍ଡାଳୁଣୀ' ଓ ପ୍ରବନ୍ଧଗୁଡ଼ିକ ମଧ ବେଶ୍ ଆଦୃତ । ୧୯୫୩ ମସିହା ଫେବୃଆରୀ ୨୪ ତାରିଖରେ ଏହି ମହାନ୍ ସ୍ରଷ୍ଟାଙ୍କର ଦେହାନ୍ତ ହୋଇଥିଲା ଭଦ୍ରକରେ । ତାଙ୍କ ସ୍ୱଗ୍ରାମ ତାଳପଦାରେ ତାଙ୍କର ସମାଧି ମଣ୍ଡପ ରହିଛି । ତାଙ୍କ ସୃଷ୍ଟିର ତୁଳନା ନାହିଁ ।

ଘର ନଂ ଭି.ଏ. ୨୯/୩
ୟୁନିଟ୍ -୨, ଭୁବନେଶ୍ୱର-୯

# ଓଡ଼ିଶାକୁ ଭଲ ପାଉଥିବା ଅନ୍ୟ ଜଣେ ଇଂରେଜ ପ୍ରଶାସକ : ସାର୍ ହେନେରୀ ରିକେଟ୍ସ

**ଶଶଧର ନାୟକ**

ଦୀର୍ଘ ବର୍ଷ ବ୍ୟାପୀ ଆଫ୍‌ଗାନ, ମୋଗଲ, ମରହଟ୍ଟା ଓ ଇଂରେଜ ଶାସନାଧୀନ ଥିବା ଓଡିଶାର ରାଜନୈତିକ ସ୍ୱାଧୀନତା ଖଣ୍ଡ ବିଖଣ୍ଡିତ ହେବା ସହ ଓଡିଆ ଜାତିର ଐତିହ୍ୟ ଏବଂ ସାଂସ୍କୃତିକ ପରିଚୟର ଅବକ୍ଷୟ ଆରମ୍ଭ ହୋଇଥିଲା । ଇତିହାସର ଘାତ ପ୍ରତିଘାତ ମଧ୍ୟରେ ଇଂରେଜ ଶାସନ ସମୟରେ ଓଡିଆ ଭାଷାଭାଷୀ ଅଞ୍ଚଳ ଭିନ୍ନ ଭିନ୍ନ ପ୍ରଦେଶରେ ଅନ୍ତର୍ଭୁକ୍ତ ହେବା ଦ୍ୱାରା ଓଡିଶାର ସାମଗ୍ରିକ ପ୍ରଗତି, ଗମନାଗମନ, ପରିବହନ, କୃଷି, ଶିଳ୍ପ, ଶିକ୍ଷା,ବାଣିଜ୍ୟ, ସ୍ୱାସ୍ଥ୍ୟ ଆଦି ସମସ୍ତ କ୍ଷେତ୍ର ଅବହେଳାର ଶିକାର ହେଲା । ପରାଧୀନଗ୍ରସ୍ତ ଓଡିଶାର ଜାତୀୟ ଜୀବନର ଚରମ ବିପର୍ଯ୍ୟୟ ଘଟିଥିଲା । ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଇଂରାଜୀ ବିଦ୍ୟାଳୟର ପ୍ରତିଷ୍ଠା ସହ ଇଂରାଜୀ ଶିକ୍ଷାର ପ୍ରସାର, ପାଶ୍ଚାତ୍ୟ ସଭ୍ୟତାର ପ୍ରଭାବ, ଗମନାଗମନର ଉନ୍ନତି, ମୁଦ୍ରାଯନ୍ତ୍ରର ପ୍ରତିଷ୍ଠା, ସମ୍ବାଦପତ୍ରର ପ୍ରଚାର ଓ ପ୍ରସାର, ଇଂରାଜୀ ଶିକ୍ଷିତ ମଧ୍ୟବିତ୍ତ ଶ୍ରେଣୀର ଅଭ୍ୟୁଦୟ, ଅର୍ଥନୈତିକ ପ୍ରଗତି, ବିଭିନ୍ନ ସାମାଜିକ ଓ ରାଜନୈତିକ ସଂଗଠନ ଇତ୍ୟାଦି ପ୍ରଭାବରେ ଓଡିଶାରେ ରାଜନୈତିକ ଉତ୍ତରଣ ଓ ଜାତୀୟ ଜାଗରଣର ଉନ୍ମେଷ ଘଟିଥିଲା । ଓଡିଶାରେ ଏହି ଆତ୍ମ ଜାଗୃତି ଓ ଜାତୀୟ ଜାଗରଣ ପଟ୍ଟଭୂମି ପାଇଁ ଊନବିଂଶ ଶତାବ୍ଦୀରେ ଓଡିଶାରେ କାର୍ଯ୍ୟରତ ଥିବା କତିପୟ ଇଂରେଜ ପ୍ରଶାସକଙ୍କ ପରୋକ୍ଷ ପ୍ରଭାବ ଓ ଅବଦାନ ଐତିହାସିକ ଗୁରୁତ୍ୱ ବହନ କରେ । ଓଡିଶାର ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ଅର୍ଥନୈତିକ ଉନ୍ନତି ଏବଂ ଓଡିଆ ଭାଷା ଓ ସଂସ୍କୃତିର ରକ୍ଷା ଦିଗରେ ଜନ୍ ବିମ୍ସ ଓ ରେଭେନ୍‌ସାଙ୍କର ନାମ ପ୍ରାତଃ ସ୍ମରଣୀୟ ଅଟେ । ଅନ୍ୟମାନଙ୍କ ମଧ୍ୟରେ ପୁରୀର ତତ୍କାଳୀନ ଜିଲ୍ଲାପାଳ ଉଇଲକିନ୍‌ସନ୍, ବାଲେଶ୍ୱରର ଜିଲ୍ଲାପାଳ ତଥା ପରବର୍ତ୍ତୀ ସମୟରେ ଓଡିଶାର କମିଶନର ହୋଇଥିବା ହେନେରୀ ରିକେଟ୍ସ ଓ କମିଶନର ଜେ.ଏସ୍. ମିଲ୍‌ଙ୍କ ନାମ ପ୍ରଣିଧାନଯୋଗ୍ୟ ଅଟେ । ୧୮୭୪ ମସିହାରେ 'ଉତ୍କଳ ପୁତ୍ର'ରେ ପ୍ରକାଶିତ ଲେଖାରେ ଏହି ମତପୋଷଣ କରାଯାଇଛି: ଏ ଦେଶ ଅନେକ ଭଲ ଭଲ ଇଂରେଜ ଶାସକଙ୍କ ଦ୍ୱାରା ଶାସିତ ହୋଇଅଛି । ମାତ୍ର ସେମାନଙ୍କ ମଧ୍ୟରୁ କଲେକ୍ଟର ଉଇଲ୍‌କିନ୍‌ସନ ସାହେବ, କମିଶନର ମିଲ୍, ରିକେଟ୍ସ, ଶୋର୍ ସାହେବ ତ୍ରୟ ଓଡିଶାରେ ଚିରସ୍ମରଣୀୟ ହୋଇଅଛନ୍ତି । ମିଲ୍ ସାହେବ ପ୍ରଥମେ ଏ ଦେଶବାସୀଙ୍କୁ ଇଂରାଜୀ ଶିକ୍ଷା ଦେବା ଉଦ୍ଦେଶ୍ୟରେ କଟକ ଇଂରାଜୀ ସ୍କୁଲ ସ୍ଥାପନ କରିଅଛନ୍ତି, ରିକେଟ୍ସ ସାହେବ ଏ ଦେଶବାସୀଙ୍କୁ ଉଚ୍ଚ କର୍ମରେ ନିୟୋଗ କରିବାର ଉପାୟମାନ ବିଧାନ କରିଅଛନ୍ତି ଓ ଅଦ୍ୟାବଧି ସେ ଓଡିଶା କଥା ବିସ୍ମୃତ ନ ହୋଇ ସମୟ ସମୟରେ ତାଙ୍କର ବୃଦ୍ଧ ବନ୍ଧୁମାନଙ୍କୁ ପତ୍ରାଦି ଲେଖିଥାନ୍ତି ଶୋର ସାହେବକି ବିଦ୍ୟାଶିକ୍ଷା, କି ଶାସନ, କି ଦେଶୋନ୍ନତି ସବୁ ଉଦ୍ଦେଶ୍ୟ ହୃଦୟରେ ରଖି ଓଡିଶାବାସୀଙ୍କ ଉନ୍ନତି ବିଷୟରେ ଯଥାସାଧ୍ୟ ଚେଷ୍ଟା କରିଅଛନ୍ତି । ଖୋର୍ଦ୍ଧା ବନ୍ଦୋବସ୍ତ ଓ ତାଙ୍କର ଅନ୍ୟାନ୍ୟ କାର୍ଯ୍ୟ ଦ୍ୱାରା ଉଇଲ୍‌କିନ୍‌ସନ ସାହେବ ଓଡିଶାବାସୀଙ୍କ

ସହିତ କେତେଦୂର ହୃଦ୍ୟତା ଦେଖାଇଯାଇଛନ୍ତି, ତାହା ବଚନାତୀତ । [୧] ଆଲୋଚ୍ୟ ପ୍ରବନ୍ଧରେ ଓଡ଼ିଶାକୁ ପ୍ରାଣ ଭଳି ଭଲ ପାଉଥିବା ହେନେରୀ ରିକେଟ୍ସଙ୍କ ବିଷୟରେ ଆଲୋକପାତ କରିବାକୁ ପ୍ରୟାସ କରାଯାଇଛି ।

ସାର୍ ହେନେରୀ ରିକେଟ୍ସ ୧୮୦୨ ମସିହାରେ ଇଂଲଣ୍ଡର ଉଇଞ୍ଚେଷ୍ଟର ନିକଟସ୍ଥ ଲେନ୍‌ଷ୍ଟନ୍‌ରେ ଜନ୍ମ ଗ୍ରହଣ କରିଥିଲେ । ଉଇଞ୍ଚେଷ୍ଟର କଲେଜରେ ଶିକ୍ଷା ସମାପ୍ତି ପରେ ସେ ଇଂଲିଶ ଇଷ୍ଟ ଇଣ୍ଡିଆ କମ୍ପାନିର ହେଲିବରୀ କଲେଜରେ ତାଲିମ ଗ୍ରହଣ କରି ୧୮୨୧ ମହିହାରେ ବେଙ୍ଗଲ ଚୁକ୍ତିବଦ୍ଧ ସିଭିଲ୍ ସଂସ୍ଥାର ସେବକ ଭାବରେ ନିଯୁକ୍ତ ହୋଇଥିଲେ । ୧୮୨୭ ମସିହା ପର୍ଯ୍ୟନ୍ତ ବଙ୍ଗଳା ପ୍ରଦେଶର ବିଭିନ୍ନ ସ୍ଥାନରେ ରାଜସ୍ୱ ଓ ବିଚାର ବିଭାଗରେ ସେ କାର୍ଯ୍ୟରତ ଥିଲେ । ୧୮୨୭ ମସିହାରେ ବାଲେଶ୍ୱରରେ ଜଏଣ୍ଟ ମାଜିଷ୍ଟ୍ରେଟ ବା ଡେପୁଟି କଲେକ୍ଟର ଭାବରେ ତାଙ୍କୁ ନିଯୁକ୍ତି ମିଳିଥିଲା । ସେ ୧୮୨୮ ମସିହାରେ ନୂତନ ଭାବେ ସୃଷ୍ଟି ହୋଇଥିବା ବାଲେଶ୍ୱର ଜିଲ୍ଲାର ପ୍ରଥମ ଜିଲ୍ଲାପାଳ ଓ ଜିଲ୍ଲା ମାଜିଷ୍ଟ୍ରେଟ୍ ଭାବେ କାର୍ଯ୍ୟରେ ଅକ୍ଟୋବର ୨୩ ତାରିଖରେ ଯୋଗଦାନ କରିଥିଲେ ।[୨]

ବାଲେଶ୍ୱର ଜିଲ୍ଲାର ଜିଲ୍ଲାପାଳ ଥିବା ସମୟରେ ନୂତନ ଭାବେ ଆରମ୍ଭ ହେଉଥିବା ଜିଲ୍ଲାର ଜମିଜମା ସର୍ଭେ ଓ ବନ୍ଦୋବସ୍ତ କାର୍ଯ୍ୟର ସେ ପ୍ରତ୍ୟକ୍ଷ ତଦାରଖ କରୁଥିଲେ । ବାଲେଶ୍ୱରର ଦେଶୀୟ ଲୋକମାନଙ୍କ ପ୍ରତି ତାଙ୍କର ଭଲ ପାଇବା ପ୍ରଗାଢ ଥିଲା । ବ୍ରିଟିଶ ଶାସନ ସମୟରେ ଇଂରେଜ ତଥା ଇଂରେଜ ଉଚ୍ଚ ଅଧିକାରୀମାନଙ୍କର ଦେଶୀୟ ଲୋକଙ୍କ ପ୍ରତି ଥିବା ଘୃଣା ଓ ଜାତିଗତ ବିଦ୍ୱେଷ ଇତିହାସ ବିଦିତ ଅଟେ । କିନ୍ତୁ ଟୟନ୍‌ବି ନିଜର ଲେଖାରେ ରିକେଟ୍ସଙ୍କୁ 'A friend of native'[୩] ଭାବେ ଅଭିହିତ କରିଛନ୍ତି, ରିକେଟ୍ସଙ୍କର ଦେଶୀୟ ଓଡ଼ିଆ ଏବଂ ସର୍ବୋପରି ବାଲେଶ୍ୱରବାସୀଙ୍କ ପ୍ରତି ଆନ୍ତରିକ ସ୍ନେହ ଥିଲା । ସ୍ଥାନୀୟ ଲୋକଙ୍କ ମଧ୍ୟରୁ ଅବଦୁଲ୍ ରଉଫ ଓ ବର୍ଯାନନ୍ଦଦାସ ଆଦି ଦେଶୀୟ ଭଦ୍ରବ୍ୟକ୍ତିମାନେ ତାଙ୍କର ବନ୍ଧୁ ଥିଲେ । ବାଲେଶ୍ୱରବାସୀଙ୍କର ମଧ୍ୟ ସେ ଅତ୍ୟନ୍ତ ପ୍ରିୟ ଥିଲେ । ବାଲେଶ୍ୱରର ଜିଲ୍ଲାପାଳ ଥିବା ସମୟରେ ତାଙ୍କର ସ୍ତ୍ରୀ ଜେନ୍‌ଙ୍କର ୧୮୩୦ ମସିହାରେ ଅକାଳ ବିୟୋଗ ଘଟିଥିଲା ଏବଂ ବାଲେଶ୍ୱରର ବାରବାଟୀଠାରେ ତାଙ୍କର ସ୍ତ୍ରୀଙ୍କର ମୃତ ଦେହକୁ ସମାଧି ଦିଆଯାଇଥିଲା । ତେଣୁ ତାଙ୍କର ସ୍ମୃତି ଓ ଅନୁଭୂତିରେ ବାଲେଶ୍ୱର ଅତି ପ୍ରିୟ ଥିଲା ।

କଟକର କମିଶନର ଥିବା ସମୟରେ ସେ ଅଧିକାଂଶ ସମୟ ବାଲେଶ୍ୱରରେ କଟାଉ ଥିଲେ ଓ ସେ ସ୍ଥାନରୁ ବଦଳି ହେବା ପରେ ବାଲେଶ୍ୱରବାସୀମାନେ ମଧ୍ୟ ତାଙ୍କ କଥା ମନେ ରଖିଥିଲେ । ଏ ସମ୍ବନ୍ଧରେ 'ଉତ୍କଳ ଦୀପିକା' ୧୮୬୬ ମସିହାରେ ନିମ୍ନମତେ ମତାମତ ରଖିଥିଲା, ପ୍ରଶଂସିତ ସାହେବ ପ୍ରଥମେ ବାଲେଶ୍ୱର ଜିଲ୍ଲାର କଲେକ୍ଟର ଥିଲେ । ସେ ସ୍ଥାନ ପ୍ରତି ତାହାଙ୍କର ଏ ପ୍ରକାର ମମତା ଜନ୍ମିଥିଲା ଯେ କମିଶନର ହେବା ଉତ୍ତାରୁ ସୁଦ୍ଧା ବର୍ଷ ମଧ୍ୟରେ ଅଧିକାଂଶ ସମୟ ବାଲେଶ୍ୱରରେ ରହନ୍ତି ।[୪] ବାଲେଶ୍ୱରବାସୀ ମାନଙ୍କର ରିକେଟ୍ସ ସାହେବଙ୍କ ନାମ ପ୍ରତିଦିନ କଥାବାର୍ତ୍ତା ବିଷୟ ହୋଇଅଛି ।[୫] ଭାରତରୁ ବିଦାୟ ନେବା ପରେ ମଧ୍ୟ ସେ ଓଡିଶାରେ ଥିବା ବନ୍ଧୁମାନଙ୍କ ସହ ପତ୍ରାଳାପ କରୁଥିଲେ । [୬]

୧୮୩୧ ମସିହା ଅକ୍ଟୋବର ୩୧ ତାରିଖ ସନ୍ଧ୍ୟା ତଥା ରାତ୍ରିରେ ବାଲେଶ୍ୱର ଜିଲ୍ଲାରେ ଏକ ପ୍ରଳୟଙ୍କରୀ ବାତ୍ୟା ଧ୍ୱଂସର ତାଣ୍ଡବ ରଚିଥିଲା । ଏହାର ପ୍ରଭାବରେ ୭ ଫୁଟ୍ ୧୫ ଫୁଟ୍ ଉଚ୍ଚର ସାମୁଦ୍ରିକ ଜୁଆର ସୃଷ୍ଟି ହୋଇ ଜିଲ୍ଲାର ଉପକୂଳ ଅଞ୍ଚଳରେ ଥିବା ଗ୍ରାମଗୁଡିକୁ ଜଳମଗ୍ନ କରିଥିଲା । ନଅ ମାଇଲ ଦୂରରେ ଥିବା ଜଗନ୍ନାଥ ସଡକରେ ମଧ୍ୟ ଘାଇ ସୃଷ୍ଟି ହୋଇଥିଲା । [୭] ବାତ୍ୟାରେ ପ୍ରାୟତଃ ୨୨,୦୦୦ ଲୋକଙ୍କ ଜୀବନ ହାନି ହେବା ସହ ୫୦,୦୦୦ ଗୋରୁଗାଈଙ୍କର ମୃତ୍ୟୁ ହୋଇଥିଲା[୮], "Dead bodies of men, women and children were found after the storm, interspersed with thousands of wild beasts, birds and bullocks....". [୯] ଜିଲ୍ଲାପାଳ ରିକେଟ୍ସ ସମଗ୍ର ଜିଲ୍ଲାରେ ବୁଲି କ୍ଷୟକ୍ଷତିର ଅନୁଧ୍ୟାନ କରିବା ସହ ରିଲିଫ୍ ଓ ପୁନରୁଦ୍ଧାର କାର୍ଯ୍ୟର ତଦାରଖ କରି ଉଚ୍ଚ ପ୍ରଶଂସିତ ହେବା ସଙ୍ଗେ

ସଙ୍ଗେ ସମସ୍ତଙ୍କର ପ୍ରିୟଭାଜନ ହୋଇଥିଲେ । "Mr. Ricketts, at that time Magistrate and Collector, made a circuit of the district immediately after the storm, and the names of 20,000 were registered as having perished."(୧୦)ପରବର୍ତ୍ତୀ ଗ୍ରୀଷ୍ମ ଋତୁ ପର୍ଯ୍ୟନ୍ତ ରିକେଟ୍ସ ବାଲେଶ୍ୱରରେ ରିଲିଫ୍ ଓ ପୁନଃ ଥଇଥାନ କାର୍ଯ୍ୟରେ ବ୍ୟସ୍ତ ରହିଥିଲେ । ୧୮୩୨ ମସିହା ଅକ୍ଟୋବର ମାସରେ ପୁନର୍ବାର ଏକ ବାତ୍ୟା ଓ ୧୮୩୩ ମସିହାରେ ଦୁର୍ଭିକ୍ଷ ପଡିଥିଲା ।"In these three years, 50,000 human beings were destroyed by drowning and starving." (୧୧) ୧୮୩୬ ମସିହାର ବାଲେଶ୍ୱରରେ ପଡିଥିବା ଦୁର୍ଭିକ୍ଷ ସମୟରେ ରିକେଟ୍ସ ସାହେବ ପରିଶ୍ରମ କରି କଲିକତା ଓ ଅନ୍ୟାନ୍ୟ ସ୍ଥାନରୁ ଚାନ୍ଦା ସଂଗ୍ରହ କରି ବହୁ ସଂଖ୍ୟାରେ ଦୁର୍ଭିକ୍ଷ ପୀଡିତ ପ୍ରଜାଙ୍କୁ ଅନ୍ନଦାନ ଦେଇ ପ୍ରାଣ ବଞ୍ଚାଇଥିବା ହେତୁ ସେ ବାଲେଶ୍ୱରବାସୀଙ୍କର କୃତଜ୍ଞତାର ପାତ୍ର ହୋଇଥିଲେ । (୧୨) ପରେ ଏହି ବିଷୟରେ ସେ ନିଜ ବିବରଣୀରେ ଲେଖିଥିଲେ,,"When magistrate of Balasore, on occurance of famine, I caused the people to be actually counted house by house"(gi) (୧୩) ଜିଲ୍ଲାର ଲୁଣ ପରିବହନ ପାଇଁ ଖୋଳା ହୋଇଥିବା ଚୂଡାମଣି କେନାଲ ରିକେଟ୍ସ କେନାଲ ନାମରେ ନାମିତ ହୋଇଥିଲା । ୧୮୨୬ ମସିହାରେ ଏହାର ନିର୍ମାଣ ସମ୍ପୂର୍ଣ୍ଣ ହୋଇଥିଲେ ମଧ୍ୟ ରିକେଟ୍ସଙ୍କ ଲୋକପ୍ରିୟତା ହେତୁ ଏହି କେନାଲ ତାଙ୍କ ନାମରେ ନାମିତ ହୋଇଥିଲା । (୧୪) ଦେଶୀୟ ରାଜ୍ୟ ନୀଳଗିରି ତଥା ମୟୂରଭଞ୍ଜରେ ଗଣ୍ଡଗୋଳ ସମାଧାନରେ ସେ ନିଜର ପାରଦର୍ଶିତା ଦେଖାଇଥିଲେ । ୧୮୩୬ ମସିହାରେ ତାଙ୍କୁ ଓଡିଶାର କମିସନର ପଦରେ ନିଯୁକ୍ତି ମିଳିଥିଲା ।

ଏହି ସମୟରେ ଘୁମସରର କନ୍ଧ ବିଦ୍ରୋହ ସମୟରେ ମାନ୍ଦ୍ରାଜ ସରକାରଙ୍କୁ ସେ ଯଥାଯଥ ସାହାଯ୍ୟ କରିଥିଲେ । ସେ କମିସନର ଥିବା ସମୟରେ ୧୮୩୭ ସାଲ୍‌ରେ କଟକରେ ଦୁର୍ଭିକ୍ଷ ପଡିଥିଲା । ୧୮୩୭ ସାଲରେ ଦୁର୍ଭିକ୍ଷ ସମୟରେ ସେ ଦୁଃଖୀମାନଙ୍କର ଦୁର୍ଦ୍ଦଶା ନିବାରଣର ଅନେକ ଉପାୟ କରିଥିଲେ । ଦୁର୍ଭିକ୍ଷ ଆରମ୍ଭ ହେବା ପୂର୍ବରୁ ବାଲମ ଚାଉଳ ଅଣାଇ ବିକ୍ରୟ କରାଇବାରୁ ଲୋକମାନେ ଅଧିକ କଷ୍ଟ ପାଇନାହାନ୍ତି । ଯେଉଁମାନଙ୍କର ଘର ଭାଙ୍ଗିଯାଇଥିଲା ସେମାନଙ୍କର ଘର ତୈୟାର କରାଇ ଦେଇଥିଲେ ଓ ବସ୍ତ୍ରହୀନମାନଙ୍କୁ ବସ୍ତ୍ର ଓ କମ୍ବଳ ଆପଣା ବ୍ୟୟରେ ଓ ମଧ୍ୟ ସରକାର ତରଫରୁ ଦେଇ ଥିଲେ ... (୧୫)

କମିସନର ହେବା ପରେ ପ୍ରଦେଶର ଜମିଜମା ସର୍ଭେ ଓ ବନ୍ଦୋବସ୍ତର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ ଥିଲା । ସେ ଦେଶୀୟ ଓଡିଆମାନଙ୍କୁ ତାଙ୍କ ସମୟରେ ବନ୍ଦୋବସ୍ତରେ ଉଚ୍ଚ ପଦରେ ନିଯୁକ୍ତ କରିଥିଲେ । ତାଙ୍କ ପୂର୍ବରୁ ୧୮୨୫ ମସିହାରେ ଷ୍ଟର୍ଲିଂ ନିଜର ରିପୋର୍ଟରେ ଓଡିଆମାନଙ୍କୁ ମୂର୍ଖ ଓ ଅଜ୍ଞ ଜାତି ଭାବେ ଅଭିହିତ କରିଥିଲେ କାରଣ ଓଡିଶାରେ ଇଂରାଜୀ ଶିକ୍ଷିତ ଯୋଗ୍ୟ ଲୋକଙ୍କ ଅଭାବ ହେତୁ ଉତ୍ତରରେ ବଙ୍ଗାଳୀ ଓ ଦକ୍ଷିଣରେ ତେଲୁଗୁମାନେ ସମସ୍ତ ସରକାରୀ ଚାକିରି ମାଡି ବସିଥିଲେ ।(୧୫) ଏପରିକି ୧୮୨୧ ମସିହାରେ କଟକର ମାଜିଷ୍ଟ୍ରେଟ୍ ଲେଖିଥିଲେ: "Scarcelya single real oriya receives a salary of more than Rs 10 per rensem, but several are naturalized Bangalis or Musalmans, I always give a preference to oriyas, but at this moment I scarcely know a single oriya possessing qualification to fit him for being a common muharrir" (୧୬) ରିକେଟ୍ସଙ୍କ ସମୟରେ ଏହି ପରିସ୍ଥିତିର ପରିବର୍ତ୍ତନ ଘଟିଥିଲା । ରିକେଟ୍ସ ଓଡିଆମାନଙ୍କୁ ବନ୍ଦୋବସ୍ତ କାମରେ ନିଯୁକ୍ତି ଦେଇଥିଲେ ଏବଂ କେତେକଙ୍କୁ ଡେପୁଟି କଲେକ୍ଟର ପଦକୁ ମଧ୍ୟ ପଦୋନ୍ନତି ଦେଇଥିଲେ । 'ଉତ୍କଳ ଦୀପିକା' ୧୮୮୬ ମସିହାରେ ତାଙ୍କର ଏହି କାର୍ଯ୍ୟକୁ ପ୍ରଶଂସା କରି ଲେଖିଥିଲା: ଏହାଙ୍କ ଅମଳରେ ଓଡିଶା ବନ୍ଦୋବସ୍ତ ସୁଚାରୁରୂପେ ସମ୍ପାଦିତ ହୋଇଥିଲା ଏବଂ ଅଦ୍ୟାପି ତହିଁର

ସୁଫଳମାନ ଆମ୍ଭେମାନେ ଭୋଗ କରୁଅଛୁ । ଏହି ମହୋଦୟ ଏଠାକୁ ଆସିବା ସମୟରେ ଓଡିଆମାନେ ଉଚ୍ଚ ଉଚ୍ଚ ସରକାରୀ କର୍ମମାନ ପାଇବା ପ୍ରତି କାହାରି ଆସ୍ଥା ନ ଥିଲା ଏବଂ ସେମାନଙ୍କର ଅବସ୍ଥା ବଡ ମନ୍ଦ ଥିଲା ଏବଂ ଏହାଙ୍କ ନ୍ୟାୟପରତା ଓ ଦୟାଶୀଳତା ଗୁଣରୁ ଥୋକେ ଓଡିଆ ଡିପୋଟୀ କିଲଟର ପଦରେ ଦେଶରେ ନିଯୁକ୍ତ ହୋଇଗଲେ ....ଦେଶ ଚିରକାଳ ଲାଗି ତାଙ୍କଠାରେ ଋଣୀ ହୋଇଅଛି [୧୭] ସେ ଚାକିରିରୁ ଅବସର ନେଇ ଭାରତ ପରିତ୍ୟାଗ କରିବାର କିଛି ବର୍ଷ ପରେ ୧୮୬୭ ମସିହାରେ Calcutta Reviewରେ ଓଡିଆମାନଙ୍କ ଚରିତ୍ରକୁ ଆକ୍ଷେପ କରି 'Orissa Past & Present' ନାମରେ ଏକ ପ୍ରବନ୍ଧ ପ୍ରକାଶିତ ହୋଇଥିଲା । ତାହାର ପ୍ରତିବାଦରେ ରିକେଟ୍ସ ଓଡିଆ ଡେପୁଟି କଲେକ୍ଟରମାନେ କିଭଳି ବନ୍ଦୋବସ୍ତ କାମରେ ଦକ୍ଷତା ପ୍ରଦର୍ଶନ କରିଥିଲେ, ତାହାର ସେ ଭୂୟସୀ ପ୍ରଶଂସା କରି Calcutta Reviewର ସମ୍ପାଦକଙ୍କୁ ପତ୍ର ଲେଖିଥିଲେ । ସେ ଲେଖିଥିଲେ"........in a few yearsnearly all administrative offices in the province were held by Ooriahs.....All the details of the Settlement of the Province were conducted by Ooria Deputy Collectors: and it is not too much to say, that their excellent conduct, the efficiency and the honesty which trust and sympathy produced, had beneficial effect on the fortunes of their fellow countrymen...... The manner in which they acquitted themselves called for the warmest ecomiums of the superior authorities, repeated again and again."[୧୮]

ପ୍ରାୟ ୧୩ ବର୍ଷ କାଳ ଓଡିଶାରେ କଟାଇବା ପରେ ୧୮୪୧ ମସିହାରେ ସେ ଚିଟାଗଙ୍ଗ ଡିଭିଜନର କମିଶନର ପଦରେ ନିଯୁକ୍ତି ପାଇ ଓଡିଶାରୁ ବଦଳି ହୋଇଯାଇଥିଲେ । ୧୮୪୯-୧୮୫୬ ମସିହା ମଧ୍ୟରେ ସେ କଲିକତା ରାଜସ୍ୱ ବୋର୍ଡର ସଦସ୍ୟ ଭାବରେ ଓଡିଶାର ସମସ୍ୟା ପ୍ରତି ମଧ୍ୟ ସହାନୁଭୂତିଶୀଳ ଥିଲେ । ବୋର୍ଡର ସଦସ୍ୟ ଥିବାବେଳେ ପ୍ରାକୃତିକ ଦୁର୍ବିପାକ ସମୟରେ ଖଜଣା ଛାଡ ପାଇଁ ପ୍ରସ୍ତାବ ଦେଇଥିଲେ, ଯାହା ବଙ୍ଗଳା ସରକାର ଗ୍ରହଣ କରିନଥିଲେ । ଓଡିଶାର ଗଡଜାତ ମହଲର ସୁପରିନ୍‌ଟେଣ୍ଡେଣ୍ଟଙ୍କ କାର୍ଯ୍ୟରେ ସାହାଯ୍ୟ କରିବା ପାଇଁ ସହାୟକ ପଦରେ କେବଳ ଓଡିଆମାନଙ୍କୁ ନିଯୁକ୍ତି ଦେବା ପାଇଁ ସେ ନିର୍ଦ୍ଦେଶ ଦେଇଥିଲେ । ସେସମୟର ଅନୁଗୋଳ ତହସିଲଦାର ବ୍ରହ୍ମାନନ୍ଦ ଦାସଙ୍କୁ ମାସିକ ୫୦୦ ଟଙ୍କା ବେତନ ଓ ପ୍ରତିଷ୍ଠାନ ଖର୍ଚ୍ଚ ପାଇଁ ମାସିକ ୧୦୦ ଟଙ୍କା ଖର୍ଚ୍ଚ ମଧ୍ୟ ସେ ଅନୁମୋଦନ କରିଥିଲେ । [୧୯]

୧୮୬୦ ଖ୍ରୀ.ଅ.ରେ ସରକାରୀ ଚାକିରିରୁ ଅବସର ଗ୍ରହଣ ପରେ ଭାରତରୁ ବିଦାୟ ନେଇ ଇଂଲଣ୍ଡରେ ବସବାସ କରୁଥିବା ସମୟରେ ମଧ୍ୟ ରିକେଟ୍ସଙ୍କର ଓଡିଶା ଓ ମୁଖ୍ୟତଃ ବାଲେଶ୍ୱର ପ୍ରତି ମମତା ଅତୁଟ ରହିଥିଲା । ନ' ଅଙ୍କ ଦୁର୍ଭିକ୍ଷ ସମୟରେ ଲୋକଙ୍କର ଦୁର୍ଗତି ବିଷୟରେ ସମ୍ବାଦପତ୍ରରୁ ଅବଗତ ହୋଇ ସେ ଓଡିଶାର ଦୁର୍ଦ୍ଦଶାଗ୍ରସ୍ତ ଲୋକଙ୍କ ପାଇଁ ୨୦୦ ଟଙ୍କାର ସାହାଯ୍ୟ ପଠାଇଥିଲେ । ସେ ମଧ୍ୟ ଚିଠିରେ ଲେଖିଥିଲେ : ଆମ୍ଭଙ୍କୁ ବାଲେଶ୍ୱର ଲୋକମାନେ ବିସ୍ମରଣ କରିଥିବେ, କିନ୍ତୁ ସେମାନଙ୍କ ସଙ୍ଗେ ଯେପରି ସୁଖରେ କାଳଯାପନ କରିଅଛୁ, ତାହା ଆମ୍ଭେ ବିସ୍ମରଣ କରିନାହୁଁ ଓ ବର୍ତ୍ତମାନ ସେମାନଙ୍କ ଦୁର୍ଦ୍ଦଶା ଦେଖି ଅତ୍ୟନ୍ତ ଦୁଃଖୀ ହେଲୁ, ସେମାନଙ୍କର ପୂର୍ବ କମିସନରଙ୍କଠାରୁ ୨୦୦ ଟଙ୍କାର ଦାନ ସେମାନଙ୍କୁ ଅଳ୍ପ ଦୃଶ୍ୟ ହେବ, ମାତ୍ର ବର୍ତ୍ତମାନ ସମୟରେ ଆମ୍ଭ ପାଖରେ ଅଧିକ ଟଙ୍କା ନାହିଁ...... [୨୦]

୧୮୬୭ ମସିହାରେ Calcutta Reviewରେ ଓଡିଆମାନଙ୍କୁ ମୂର୍ଖ, ଅଳସୁଆ ଓ ବୁଦ୍ଧିହୀନ ବୋଲି ମତ ବ୍ୟକ୍ତ କରି ଜନୈକ ବ୍ୟକ୍ତି 'Orissa Past & Present' ନାମରେ ପ୍ରବନ୍ଧଟିଏ ପ୍ରକାଶ କରିଥିଲେ । ଏହି ଆକ୍ଷେପର ତୀବ୍ର ବିରୋଧ କରି ସେହିବର୍ଷ Calcutta Reviewରେ

ରିକେଟ୍ସ ସମ୍ପାଦକକୁ ଏକ ପ୍ରତିବାଦ ପତ୍ର ଲେଖିଥିଲେ । ସେ ଲେଖିଥିଲେ ଯେ ବହୁବର୍ଷ ପୂର୍ବେ ଷ୍ଟର୍ଲିଂ ଓଡିଆମାନଙ୍କର ଚରିତ୍ର ଉପରେ ଯେଉଁ ମତପୋଷଣ କରିଥିଲେ, ଏହି ପ୍ରବନ୍ଧର ଲେଖକ ତାହାର ଅନୁରୂପ ମତ ପ୍ରକାଶ କରିଅଛନ୍ତି । ଷ୍ଟର୍ଲିଂଙ୍କ ସମୟରେ ଶିକ୍ଷିତ ଓଡିଆଙ୍କ ଅଭାବରେ ଓଡିଶାରେ ସରକାରୀ ଚାକିରିରେ ବିଶେଷତଃ ବଙ୍ଗାଳୀ ଓ ତେଲୁଗୁମାନେ ନିଯୁକ୍ତ ହେଉଥିଲେ । ମାତ୍ର ସେ ସମୟ ବଦଳି ଯାଇଛି । ଉଇଲ୍‌କିନ୍‌ସନ, ମିଲ୍ ଓ ତାଙ୍କ (ରିକେଟ୍ସଙ୍କ) ସମୟରେ ବହୁ ଯୋଗ୍ୟ ଓଡିଆ ସରକାରୀ ଚାକିରିରେ ନିଯୁକ୍ତ ହୋଇଛନ୍ତି । ଓଡିଶାର ସର୍ଭେ ଓ ବନ୍ଦୋବସ୍ତ କାମରେ ଓଡିଆ ଡେପୁଟି କଲେକ୍ଟରମାନେ ନିଜର ଦକ୍ଷତା ଓ ପାରଙ୍ଗମତା ଦେଖାଇଛନ୍ତି ବୋଲି ରିକେଟ୍ସ ପ୍ରତିବାଦରେ ଲେଖିଥିଲେ, ପ୍ରବଳ ଗ୍ରୀଷ୍ମରେ କଲିକତାର ରାଜରାସ୍ତାରେ ପାଲିଙ୍କି ବୋହୁଥିବା ଅଥବା ଇଂରେଜ ଉଚ୍ଚ ପ୍ରଶାସନିକ ଅଧିକାରୀଙ୍କ ବଙ୍ଗଳାରେ ପଙ୍ଖା ଟାଣୁଥିବା ଓଡିଆ କେବେ ଅଳସୁଆ ନୁହଁନ୍ତି ବୋଲି ସେ ଏହି ଲେଖାରେ ଦୃଢ ମତପୋଷଣ କରିଥିଲେ । ସେ ଲେଖିଥିଲେ ଯେ, , " I lived among the Ooriahs for twelve years; one of the most pleasing recollections of my life is the treatment I received at their hands;I must not allow such attacks pass unnoticed......"[22]

'ଉତ୍କଳ ଦୀପିକା' ମଧ୍ୟ ଲେଖିଥିଲା, କଲିକତା ରିଭ୍ୟୁ ପତ୍ରିକାରେ ଜଣେ ଲେଖକ ଓଡିଆଙ୍କ କେତେକ ନିନ୍ଦାପୂର୍ଣ୍ଣ ଆରୋପ କରିଥିଲା । ସାର୍ ହେନେରୀ ରିକେଟ୍ସ ସାହେବ ଉକ୍ତ ବିଷୟ ପାଠ ମାତ୍ର ସହ୍ୟ କରି ନ ପାରି ସ୍ୱାଭାବତଃ ତାହା ଖଣ୍ଡନ ନିମିତ୍ତ ଉକ୍ତ ପତ୍ରିକାରେ ଏକ ପତ୍ର ପ୍ରକାଶ କରିଅଛନ୍ତି । [୨୩]

୧୮୮୬ ମସିହା ଫେବୃଆରୀ ୨୫ ତାରିଖରେ ରିକେଟ୍ସଙ୍କର ଦେହାନ୍ତ ହୋଇଥିଲା । ତାଙ୍କର ମୃତ୍ୟୁରେ ଶୋକ ପ୍ରକାଶରେ 'ଉତ୍କଳ ଦୀପିକା' ଲେଖିଥିଲା, ଏ ମହୋଦୟ ଓଡିଶାର ଜଣେ ପ୍ରଧାନ ବନ୍ଧୁ ଥିଲେ ଏବଂ ଏହାଙ୍କ ଦ୍ୱାରା ଓଡିଶାର ଯେତେ ମଙ୍ଗଳ ସାଧନ ହୋଇଛି ତାହା ବର୍ଣ୍ଣନାତୀତ..... ଓଡିଶା ଏଭଳି ଗୋଟିଏ ବନ୍ଧୁ ହରାଇ ଯେ ଅତ୍ୟନ୍ତ ଦୁଃଖିତ ଅଛି, ସନ୍ଦେହ ନାହିଁ । [୨୪] ତାଙ୍କର ମରଶରୀରକୁ ଟାଇଫର୍ଡର ଶ୍ମଶାନରେ ସମାଧି ଦିଆଯାଇଥିଲେ ମଧ୍ୟ ତାଙ୍କର ଶେଷ ଇଚ୍ଛାନୁସାରେ ବାଲେଶ୍ୱରରେ ସ୍ତ୍ରୀଙ୍କ ସମାଧି ପାଖରେ ଥିବା ଫଳକରେ ତାଙ୍କର ନାମ ଓ ମୃତ୍ୟୁ ତାରିଖ ସହ ନିମ୍ନଲିଖିତ ବାକ୍ୟ ଖୋଦିତ ହୋଇଛି, "He never forgot Balasore & Ooriahs(Uriyas)"। ବାସ୍ତବରେ ଏହା ତାଙ୍କର ଓଡିଆ ପ୍ରୀତିର ଏହା ଶ୍ରେଷ୍ଠ ନିଦର୍ଶନ ନ ହୋଇ ଆଉ କ'ଣ ହୋଇପାରେ !

**ସହାୟକ ଗ୍ରନ୍ଥସୂଚୀ**


(୧) ଉତ୍କଳ ପୁତ୍ର , ୨ୟ ଭାଗ, ୧୬/୯/୧୮୭୪ ସଂଖ୍ୟା ୧୧ ।

(ସୁଧାକର ପଟ୍ଟନାୟକ, 'ସମ୍ବାଦପତ୍ରରୁ ଓଡିଶାର କଥା', ଗ୍ରନ୍ଥମନ୍ଦିର, କଟକ, ପୁନଃମୁଦ୍ରଣ, ୨୦୧୧, ପୃ - ୩୯୬)

(୨) G. Toynbee, "A sketch, The History of Orissa from 1803 to 1828", Calcutta, Bengal Secretariat Press, 1873, P.34

(୩) ତତ୍ରୈୟବ, ପୃ-୭୧

(୪) ଉତ୍କଳ ଦୀପିକା, ସେପ୍ଟେମ୍ବର ୮, ୧୮୬୬, ପୃ-୩୯

(୫) ତତ୍ରୈୟବ, ପୃ-୪୦

(୬) ଉତ୍କଳ ପୁତ୍ର, ୨ୟ ଭାଗ, ୧୬/୦୩/୧୮୭୪, ସଂଖ୍ୟା ୧୧

(୭) L.S.S.O' Malley, "Bengal District Gazetteers,Balasore", Logus Press,New Delhi(Reprinted)2015 , Page-93

(୮) ତତ୍ରୈଯବ, ପୃ–୯୪

(୯) ତତ୍ରୈଯବ, ପୃ–୯୪

(୧୦) ତତ୍ରେୟବ, ପୃ–୯୪

(୧୧) ତତ୍ରେୟବ, ପୃ–୯୪

(୧୨) ପ୍ୟାରିମୋହନ ଆଚାର୍ଯ୍ୟ,'ଓଡିଶାର ଇତିହାସ' (ସେକ୍ ମତଲୁବ ଅଲ୍ଲୀ ସଂକଳିତ) ଓଡିଶା ବୁକ୍ ଷ୍ଟୋର, ୨୦୧୨, ପୃ–୧୭୦

(୧୩) Henery Ricketts, "Reports on the Districts of Midnapore and Calcutta", John Gray Calcutta Gazette Office,1858, P-64

(୧୪) L.S.S.O' Malley, Bengal District Gazetteers, Balasore, ଅତ୍ରୈବ, Page-105

(୧୩) ଉତ୍କଳ ଦୀପିକା , ସେପ୍ଟେମ୍ବର ୮, ୧୮୬୬, ପୃ–୩୯

(୧୫) Andrew Sterling, "An Account, Geographical, Statistical and Historical of Orissa Proper or Cuttack", Calcutta, 1825, P-37

(୧୬) L.S.S.O' Malley, "Bengal District Gazetteers,Cuttack" Logus Press,New Delhi (Reprinted) , ପୃ–୧୮୬

(୧୭) ଉତ୍କଳ ଦୀପିକା , ୩ ଅପ୍ରେଲ , ୧୮୮୬, ପୃ–୧୦୬

(୧୮) Calcutta Review, Vol. XLV, 1867 ପୃ. ୨୩୪–୨୩୫

(୧୯) Henery Ricketts, "Reports on the Districts of Midnapore and Calcutta", John Gray Calcutta Gazette Office,1858, ପୃ ୯୩– ୯୪

(୨୦) ଉତ୍କଳ ଦୀପିକା , ୮ ସେପ୍ଟେମ୍ବର , ୧୮୬୬

(୨୧) Henery Ricketts, 'To The Editor of the 'Calcutta Review' inCalcutta Review, Vol. XLV, 1867, ପୃ. ୨୩୩–୨୩୫

(୨୨) ଅତ୍ରୈବ, ପୃ. ୨୩୬

(୨୩) ଉତ୍କଳ ଦୀପିକା, ସଂଖ୍ୟା ୨୬, ୦୬ ଜୁନ୍ ୧୮୬୭

(୨୪) ଉତ୍କଳ ଦୀପିକା , ୩ ଅପ୍ରେଲ , ୧୮୮୬, ପୃ–୧୦୬



ସି–୬୨, ଇଉନିଟ୍–୮
ଭୁବନେଶ୍ୱର




# ବିଶ୍ୱରେ ସାଧବ ସଂସ୍କୃତିର ମହତ୍ତ୍ୱ

**ପ୍ରଭାତ କୁମାର ନନ୍ଦ**

ମାନବ ସଭ୍ୟତାର ଶ୍ରେଷ୍ଠ ଏବଂ ସ୍ମରଣୀୟ ଚିନ୍ତନ ଓ କାର୍ଯ୍ୟାବଳୀକୁ ସଂସ୍କୃତି କୁହାଯାଏ । ସେହି ଭାବରେ ପୃଥିବୀର ବିଭିନ୍ନ ସଂସ୍କୃତି ମଧ୍ୟରୁ ସାଧବ ସଂସ୍କୃତିର ସ୍ଥାନ ଉଚ୍ଚରେ । ଆମ ପ୍ରଦେଶ ଓଡ଼ିଶାର ଖ୍ରୀଷ୍ଟପୂର୍ବ ଗୌରବ ବିଷୟରେ ଆଲୋଚନା କଲେ, କଳିଙ୍ଗ ଓ ଉତ୍କଳର ଉତ୍କର୍ଷ ଦୃଷ୍ଟିକୁ ଆସେ । ସମଗ୍ର ବିଶ୍ୱ ଇତିହାସରେ ଦୁଇଟି କାରଣ ଯୋଗୁଁ ଓଡ଼ିଆମାନେ ପ୍ରସିଦ୍ଧ । ପ୍ରଥମତଃ ସମୃଦ୍ଧ ନୌବାଣିଜ୍ୟ ଓ ଦ୍ୱିତୀୟତଃ ବିଭିନ୍ନ ଚାରୁକଳା । କଳିଙ୍ଗ ଅଧିବାସୀମାନଙ୍କର ବିଶ୍ୱ ପ୍ରସିଦ୍ଧ ନୌବାଣିଜ୍ୟ, ତାଙ୍କର ଅଦମ୍ୟ ସାହସ, ପୋତ ଗଠନରେ ପାରଦର୍ଶିତା, ଜଳ ପଥରେ ନୂତନ ଦ୍ୱୀପପୁଞ୍ଜ ଓ ସ୍ଥଳଭାଗ ଆବିଷ୍କାର କୁଶଳତା ଓ ବାଣିଜ୍ୟ କ୍ଷେତ୍ରରେ ସାଧୁତା ସହ ବିଶ୍ୱଭ୍ରାତୃତ୍ୱ ସ୍ଥାପନ ନିମିତ୍ତ ଉଦ୍ୟମ ଯୋଗୁଁ ସମ୍ଭବ ହୋଇପାରିଥିଲା ।

ଚାରୁକଳା କ୍ଷେତ୍ରରେ ବିଭିନ୍ନ ମନ୍ଦିରର ପ୍ରସ୍ତରଖଣ୍ଡରେ ସୂକ୍ଷ୍ମ ମାନବୀୟ ଚେତନାର ଚିତ୍ରଣ, ବିଭିନ୍ନ ଶୈଳୀର ମନ୍ଦିର ଓ ପ୍ରାସାଦ ନିର୍ମାଣ, ତାଳପତ୍ରରେ ବୃହତ୍ ଗ୍ରନ୍ଥ ରଚନା, ଶିଙ୍ଘ, ମୃର୍ତ୍ତିକା, କାଷ୍ଠ, ରୂପା, ସୁନାରେ ରମଣୀୟ ମୂର୍ତ୍ତି ଗଠନ, ଅଳଙ୍କାର ପ୍ରସ୍ତୁତି, ପଟ୍ଟଚିତ୍ରରେ ପାରଂପରିକ ଚିତ୍ର ଅଙ୍କନ ପ୍ରଭୃତି କ୍ଷେତ୍ରରେ ବହୁ ଭାବରେ ଓଡ଼ିଆମାନେ ପ୍ରଶଂସିତ ହୋଇଛନ୍ତି । ଲୋକକଳାରେ ପାଲା, ଦାସକାଠିଆ, ଛଉନୃତ୍ୟ, ଓଡ଼ିଶୀ ନୃତ୍ୟର ପ୍ରସିଦ୍ଧି ବିଶ୍ୱଜନବିଦିତ । ଓଡ଼ିଆମାନଙ୍କର ବିଭିନ୍ନ ରାଗ ରାଗିଣୀକୁ ଭିତ୍ତିକରି ଓଡ଼ିଶୀ ସଂଗୀତ, ବହୁ ସ୍ୱରର ଲୋକଗୀତ ଆମର ସଂସ୍କୃତିକୁ ଅଧିକ ଋଦ୍ଧିମନ୍ତ କରିଛି । ଏସବୁ ଓଡ଼ିଆମାନଙ୍କର ଅସ୍ମିତା ଓ ନିଜସ୍ୱ ସଂପତ୍ତି ।

ଏ ସମସ୍ତ ପ୍ରସିଦ୍ଧି, ଓଡ଼ିଆମାନେ ହାରୀ, ହୁରି ବା ଗୁହାରୀ କରି ପାଇନାହାନ୍ତି । ତାହା ଓଡ଼ିଆ ଜାତିର ନିଜସ୍ୱ ପରିଶ୍ରମର ଫଳ । ଦିନ ଥିଲା ଆର୍ଯ୍ୟମାନେ ଓଡ଼ିଆମାନଙ୍କୁ ବ୍ରାତ୍ୟ ବା ପତିତ ଭାବରେ ପରିଚିତି ଦେଉଥିଲେ । ଶାସ୍ତ୍ରକାର ମନୁ ଓଡ଼ିଶାକୁ ବ୍ରାତ୍ୟଭୂମି ରୂପେ ଅଭିହିତ କରିଥିଲେ । ଏ ରାଜ୍ୟକୁ ଆର୍ଯ୍ୟମାନଙ୍କର ପ୍ରବେଶ ନିଷେଧ ଥିଲା । ମାତ୍ର ଉଡ୍ର ଦେଶର ଅଧିବାସୀ ଆର୍ଯ୍ୟ ନୁହେଁ ବୋଲି କେବେହେଲେ ନିଜକୁ ହୀନ ମନେ କରୁନଥିଲେ । ବେଣୀସଂହାର କାବ୍ୟରେ କର୍ଣ୍ଣଙ୍କର ଘୋଷଣା 'ଦୈବାୟତ କୁଳେ ଜନ୍ମ, ମଦାୟତଃ ଚ ପୌରୁଷମ୍', ଏ ବିଷୟରେ ମନେପଡ଼େ । କର୍ଣ୍ଣଙ୍କୁ ସୂତପୁତ୍ର କହି ଅବହେଳିତ ଓ ଅପମାନିତ କରୁଥିବା, ରାଜବଂଶୀୟଙ୍କୁ ସେ ଦୃଢ଼ ଭାବରେ କହିଥିଲେ ଯେ, ମୋତେ କେହି ପଚାରି ସୂତ ଘରେ ଜନ୍ମ ଦେଇନଥିଲେ । ଏହା ଦୈବର ଅଧୀନ । ତେଣୁ ମୋତେ ସେଥିପାଇଁ ଦୋଷଦେବା ବା ଅପମାନିତ କରିବାର ଅଧିକାର କାହାର ନାହିଁ । ମାତ୍ର ନିଜ ଚେଷ୍ଟା, ଅଧ୍ୟବସାୟ, ଅଭ୍ୟାସ ବଳରେ ମୁଁ ଯେ, ଶ୍ରେଷ୍ଠ ଧନୁର୍ଦ୍ଧର, ତାହାକୁ କେହି ମୋତେ ଦାନରେ ଦେଇ ନାହାନ୍ତି । ମୋର ଆୟତରେ ମୁଁ ନିଜର ପୌରୁଷ ଅର୍ଜନ କରିଛି । ଠିକ୍ ସେହିଭଳି ଓଡ଼ିଆମାନେ ନିଜକୁ ଶ୍ରେଷ୍ଠ ବୋଲାଉଥିବା ଆର୍ଯ୍ୟମାନଙ୍କର ସମକକ୍ଷ ରୂପେ ଖ୍ରୀଷ୍ଟପୂର୍ବ

ସମୟରେ ଗୃହୀତ ହୋଇନଥିଲେ ମଧ୍ୟ, ନିଜର କଠିନ ପରିଶ୍ରମ, ଦୃଢ଼ ସଂକଳ୍ପ ଓ ସାହସିକତା ଯୋଗୁଁ ବିଶ୍ୱରେ ନୌବାଣିଜ୍ୟ କ୍ଷେତ୍ରରେ ପ୍ରସିଦ୍ଧି ଲାଭ କରିଥିଲେ । ପରେ ଆର୍ଯ୍ୟମାନେ ଉଡ୍ର ରାଜ୍ୟକୁ ଆସି ବସବାସ କରି ନିଜକୁ ଗୌରବାନ୍ୱିତ କରିଥିଲେ । ଇତିହାସରୁ ଜଣାଯାଏ ଯେ, ସୋମବଂଶୀଙ୍କ ଆଗମନ ପର୍ଯ୍ୟନ୍ତ ଉଡ୍ର ଥିଲା, ଅଣ ଆର୍ଯ୍ୟ ଗୋଷ୍ଠୀ ଶାସିତ ସ୍ୱତନ୍ତ୍ର ଜନପଦ । ଏଠାରୁ ନାଗ ସଭ୍ୟତା ଓ ଜୈନ ତଥା ସିଥିଆନ୍ ବୌଦ୍ଧ ସଭ୍ୟତାର ବିକାଶ ଘଟିଥିଲା । ସପ୍ତମ ଶତାବ୍ଦୀରେ ଗୌଡ଼ ସମ୍ରାଟ୍ ଶଶାଙ୍କ 'ଉଡ୍ର' ଜୟ କରି ତାହାକୁ 'ଉତ୍କଳ ବିଜୟ' କହିଥିଲେ । ସମକାଳୀନ ରାଜା ହର୍ଷବର୍ଦ୍ଧନ ମଧ୍ୟ ଉଡ୍ର ବିଜୟ କରିଥିଲେ ବୋଲି ଇତିହାସରେ ଉଲ୍ଲେଖ ଅଛି । ତେବେ ଉଡ୍ର ଦେଶର ଉପକୂଳ ଅଞ୍ଚଳକୁ ଗୌଡ଼ସମ୍ରାଟ୍ ଶଶାଙ୍କ ଶାସନ କରିଥିଲେ । ଏହା ଖ୍ରୀଷ୍ଟାବ୍ଦ ୬୦୦ର କଥା ।

ଖ୍ରୀଷ୍ଟପୂର୍ବ ସମୟରୁ ଓଡ଼ିଆମାନେ ନୌବାଣିଜ୍ୟରେ ସିଦ୍ଧିଲାଭ କରିଥିଲେ । ଖ୍ରୀଷ୍ଟପୂର୍ବ ୨୬୧ରେ ମଗଧ ସମ୍ରାଟ୍ ଅଶୋକ କଳିଙ୍ଗ ଆକ୍ରମଣ କରିବାର ବିଭିନ୍ନ କାରଣ ମଧ୍ୟରୁ କଳିଙ୍ଗର ଦୁର୍ଦ୍ଧର୍ଷ ନୌବାହିନୀକୁ ନିଜର ଅକ୍ତିଆରକୁ ଆଣିବା ପ୍ରଧାନ କାରଣ ଥିଲା । ମଗଧ ଅଧିପତି ପ୍ରତିପତ୍ତିଶାଳୀ ଓ ବିଶାଳ ସ୍ଥଳ ସେନାବାହିନୀର ସ୍ୱାମୀ ହୋଇଥିଲେ ମଧ୍ୟ ଜଳପଥରେ ନିଜର ଆଧିପତ୍ୟ ପ୍ରଦର୍ଶନ କରିବାକୁ ଅକ୍ଷମ ଥିଲେ । କଳିଙ୍ଗ ଯୁଦ୍ଧରେ ବିଜୟଲାଭ କରିବା ପରେ ସେ ନୌବାହିନୀକୁ ନିଜ ଅଧିକାର ଭୁକ୍ତ କରି, ବୌଦ୍ଧଧର୍ମ ପ୍ରଚାରରେ ବ୍ୟବହାର କରିଥିଲେ । ତାଙ୍କ ରାଜତ୍ୱ ସମୟରେ ଶ୍ରୀଲଙ୍କା ସହ କଳିଙ୍ଗର ସମ୍ବନ୍ଧ ଦୃଢ଼ ହୋଇଥିଲା । ଗୌତମ ବୁଦ୍ଧଙ୍କର ଦନ୍ତର ଏକ ଅଂଶ ଓ ବୋଧିଦ୍ରୁମ ସମ୍ରାଟ୍ ଅଶୋକଙ୍କ ଦ୍ୱାରା ସିଂହଳ ପଠାଯାଇଥିଲା । ଅଦ୍ୟାବଧି ସିଂହଳର ପରିବର୍ତ୍ତିତ ନାମ ଶ୍ରୀଲଙ୍କାରେ ବହୁ ଉତ୍କଳୀୟଙ୍କର ବଂଶଧର ବସବାସ କରୁଅଛନ୍ତି । ଉଡ୍ର ଦେଶର ମୂଳ ଅଧିବାସୀମାନେ ମୁଖ୍ୟତଃ କୃଷି କର୍ମରେ ବ୍ୟସ୍ତ ଥିଲେ, ହେଲେ ସେମାନେ ଅସ୍ତ୍ରଶସ୍ତ୍ର ପରିଚାଳନାରେ ସିଦ୍ଧହସ୍ତ ଥିଲେ । ଯେଉଁମାନେ କୃଷକ, ସେମାନେ ଆବଶ୍ୟକ ଅନୁସାରେ ସୈନିକ ହୋଇ ମାତୃଭୂମିକୁ ଶତ୍ରୁ କବଳରୁ ରକ୍ଷା କରୁଥିଲେ । ପରବର୍ତ୍ତୀ କାଳରେ ସେହି ପରଂପରା ପାଇକ ନାମରେ ନାମିତ ହୋଇଥିଲା ।

ଓଡ଼ିଆମାନେ ଉଡ୍ର, ଉତ୍କଳ ଓ କଳିଙ୍ଗର ଅଧିବାସୀ ହୋଇ ନିଜର ପରାକ୍ରମ ରକ୍ଷା କରିଥିଲେ । ସରଳ ଜୀବନ, ଉତ୍ତମ ସ୍ୱାସ୍ଥ୍ୟରକ୍ଷା, ଉଚ୍ଚଚିନ୍ତନ ପ୍ରଭୃତି ସୁଗୁଣାବଳୀରେ ସେମାନେ ଭୂଷିତ ହୋଇଥିଲେ । ସେଥିପାଇଁ ତାଙ୍କୁ ବହୁ ବାଧାବିଘ୍ନର ସମ୍ମୁଖୀନ ହେବାକୁ ପଡ଼ିଥିଲା । ତେଣୁ ସେମାନେ ସହଜିଆ ନଥିଲେ । ସମାଜରେ କର୍ମବାଦ ଦୃଷ୍ଟିରୁ ମାନବକୁ ଦୁଇଭାଗରେ ବିଭକ୍ତ କରାଯାଇପାରେ । ପ୍ରଥମତଃ କର୍ମତତ୍ପର, ପରିଶ୍ରମୀ ଓ କର୍ମକୁଶଳୀ ବ୍ୟକ୍ତି । ଦ୍ୱିତୀୟତଃ କର୍ମବିମୁଖ, ଆଳସ୍ୟପ୍ରିୟ ଓ ସହଜିଆ ବ୍ୟକ୍ତି ସମୂହ । ଯେଉଁ ସମାଜରେ ପ୍ରଥମ ବର୍ଗର ବ୍ୟକ୍ତିଙ୍କ ସଂଖ୍ୟା ଅଧିକ, ସେମାନେ ଅଧିକ ଉନ୍ନତ ଓ ବିଶ୍ୱରେ ପ୍ରଶଂସିତ । ଓଡ଼ିଆମାନେ କର୍ମତତ୍ପର, ପରିଶ୍ରମୀ ଓ କର୍ମକୁଶଳୀ ଥିଲେ । ବିଭିନ୍ନ କ୍ଷେତ୍ର ମଧ୍ୟରୁ, ନୌବାଣିଜ୍ୟ କ୍ଷେତ୍ରରେ ତାଙ୍କର ପ୍ରତିଷ୍ଠା ଇତିହାସରେ ସ୍ୱର୍ଣ୍ଣାକ୍ଷରରେ ଲିପିବଦ୍ଧ ହୋଇରହିଛି । ସହଜିଆ ଜାତି କେବେହେଲେ ନୌବାଣିଜ୍ୟରେ କୁଶଳୀ ହୋଇପାରିବ ନାହିଁ । ବିଭିନ୍ନ କାରଣ ଯୋଗୁଁ ସାଧବ ସଂସ୍କୃତି ଉଚ୍ଚ ପ୍ରଶଂସିତ ହୋଇଥିଲା ।

ପ୍ରଥମତଃ କୁଶଳୀ ନୌବଣିକ ହେବା ନିମିତ୍ତ ସାହସ ଆବଶ୍ୟକ । ସ୍ଥଳପଥରେ ଦୂରକୁ ଯାତ୍ରା କଲେ ଆବଶ୍ୟକ ଖାଦ୍ୟ, ଜଳ ମିଳିବାର ସମ୍ଭାବନା ଅଧିକ ମାତ୍ର ଜଳପଥରେ ଗତି କଲେ, କୌଣସି ସ୍ଥଳଭାଗରେ ପହଞ୍ଚିବା ପର୍ଯ୍ୟନ୍ତ ପାନୀୟ ଜଳ ଓ ଖାଦ୍ୟ ମିଳିବ ନାହିଁ । ସମୁଦ୍ରର ଜଳ ମଧ୍ୟରେ ନୌଯାତ୍ରା ହେଉଥିଲେ ମଧ୍ୟ, ତାହା ପାନଯୋଗ୍ୟ ନୁହେଁ । ସାଧବମାନେ ପ୍ରଥମେ ନୌଯାତ୍ରା କଲାବେଳେ ପରୀକ୍ଷାମୂଳକ ଭାବରେ ସ୍ଥଳଭାଗରେ ପହଞ୍ଚିବାର ଆଶାନେଇ ଆଗଭର ହେଉଥିଲେ । ଯଦି ବହୁଦିନ ଧରି ସ୍ଥଳରେ ପହଞ୍ଚି ନ ପାରିଲେ, ତେବେ ସେହି ନୌଯାନରେ

ସେମାନଙ୍କର ମୃତ୍ୟୁ ହୋଇଯିବ । ଭାରତର ଉପକୂଳରେ ଅନେକ ରାଜ୍ୟ ଥିଲେ ମଧ୍ୟ, ପ୍ରଥମତଃ କଳିଙ୍ଗର ସାଧବମାନେ ପରୀକ୍ଷାମୂଳକ ଭାବରେ ନୌଯାତ୍ରା କରିଥିଲେ । ଜାଭା, ସୁମାତ୍ରା, ଆବିଷ୍କାର ପୂର୍ବରୁ କେତେ ଯେ ସାଧବ ନିଜର ମୂଲ୍ୟବାନ ଜୀବନକୁ ଜଳସମାଧି କରିଥିବେ, ତାହା କଳନା କରିବା ସମ୍ଭବ ନୁହେଁ । ନୌଯାତ୍ରା ନିମିତ୍ତ ଅଶେଷ ସାହସର ଆବଶ୍ୟକତା ରହିଛି । ସେହି ସାହସର ଅଧିକାରୀ ହୋଇଥିବାରୁ ସଂସ୍କୃତ ସାହିତ୍ୟରେ 'କଳିଙ୍ଗାଃ ସାହସିକାଃ' ରୂପେ ଆପ୍ତବାକ୍ୟ ରହିଛି । ଜଣେ ସହଜିଆ, କର୍ମ ବିମୁଖ ବ୍ୟକ୍ତି ନୌବଣିକ ହୋଇପାରିବ ନାହିଁ । ତେଣୁ ଓଡ଼ିଆମାନେ ଖ୍ରୀଷ୍ଟପୂର୍ବ ସମୟରୁ ସାହସୀ ଥିଲେ ।

ଦ୍ୱିତୀୟତଃ ଅପୂର୍ବ ଶାରୀରିକ ଶକ୍ତି ଓ ଯୁଦ୍ଧକୌଶଳ ନ ଜାଣିଲେ, ଜଣେ ନାବିକ ହୋଇପାରିବ ନାହିଁ । ପୋତକୁ ଚଳାଇବାକୁ ହେଲେ କ୍ରମାଗତ କାତ ବା ଆହୁଲା ମାରିବାକୁ ପଡ଼ିବ ଓ ସେଥି ନିମିତ୍ତ ବିଶେଷ ଶାରୀରିକ ଶକ୍ତି ଦରକାର । ବାୟୁର ଗତି ଅନୁସାରେ ପୋତର ପାଲକୁ ଉଠାଇବା ଓ ଦିଗ ପରିବର୍ତ୍ତନ କରିବା ନିମିତ୍ତ କୌଶଳ ସହିତ ଶାରୀରିକ ଶକ୍ତିର ଆବଶ୍ୟକତା ରହିଛି । ତେଣୁ ନାବିକମାନେ ନିଜର ସ୍ୱାସ୍ଥ୍ୟର ଯତ୍ନ ନେଉଥିଲେ ଓ କଠିନ ପରିଶ୍ରମ ନିମିତ୍ତ ସମର୍ଥ ଥିଲେ । ତେଣୁ ସେମାନେ ସହଜିଆ ନଥିଲେ ।

ତୃତୀୟତଃ ନୌଯାତ୍ରା ସମୟରେ ଜଳଦସ୍ୟୁମାନଙ୍କ କବଳରୁ ରକ୍ଷାପାଇବା ନିମିତ୍ତ, ଯୁଦ୍ଧକୌଶଳ ଜାଣିଥିବା ଦରକାର । କଳିଙ୍ଗର ସାଧବମାନେ ଯୁଦ୍ଧବିଦ୍ୟା ଓ ବିଭିନ୍ନ ଅସ୍ତ୍ରଚାଳନରେ ସିଦ୍ଧହସ୍ତ ଥିଲେ । ମେଘାସ୍ଥିନିସ୍‌ଙ୍କ ବିବରଣୀରୁ ଜଣାଯାଏ ଯେ, ମୌର୍ଯ୍ୟ ଯୁଗରେ ଓଡ଼ିଆ ଏକ ଯୁଦ୍ଧପ୍ରିୟ, ସମର କୁଶଳୀ, ସମୃଦ୍ଧ ଜାତିରୂପେ ସୁଖ୍ୟାତି ଅର୍ଜ୍ଜନ କରିଥିଲେ । ସମ୍ରାଟ୍ ଅଶୋକ ବିଶ୍ୱପ୍ରସିଦ୍ଧ କଳିଙ୍ଗ ଯୁଦ୍ଧରେ ଓଡ଼ିଆ ବୀରଙ୍କ ଅଭୂତପୂର୍ବ ରଣକୌଶଳ, ଆତ୍ମୋତ୍ସର୍ଗ, ସ୍ୱଦେଶ ପ୍ରୀତିରେ ମୁଗ୍ଧ ହୋଇ ଚଣ୍ଡାଶୋକରୁ ଧର୍ମାଶୋକରେ ପରିଣତ ହୋଇଥିଲେ । ସମ୍ରାଟ୍ ଖାରବେଳଙ୍କ ରାଜତ୍ୱ କାଳରେ ଓଡ଼ିଆ ବୀରଗଣ ଆଫଗାନିସ୍ଥାନ ପର୍ଯ୍ୟନ୍ତ ରାଜ୍ୟ ଜୟ କରିଥିଲେ । ନୌବିଶାରଦ ପ୍ଲିନିଙ୍କ ମତରେ, ଯୁଦ୍ଧ ନିପୁଣ, ସମର ବିଶାରଦ ଜାତିମାନଙ୍କ ମଧ୍ୟରେ ଓଡ଼ିଆଏ ଥିଲେ ଅଗ୍ରଗଣ୍ୟ । ଇତିହାସର ବିଭିନ୍ନ ଗ୍ରନ୍ଥ ତଥା ପରିବ୍ରାଜକମାନଙ୍କର ବିବରଣୀରେ ଓଡ଼ିଆ ବୀରମାନଙ୍କର ଭୂୟସୀ ପ୍ରଶଂସା କରାଯାଇଛି । ତେଣୁ ଯୁଦ୍ଧବିଦ୍ୟା ନିପୁଣ ଥିବାରୁ ସାଧବମାନେ ସହଜିଆ ନଥିଲେ, ବରଂ ଦୁର୍ଦ୍ଧର୍ଷ ଓ ଯୋଦ୍ଧା ଥିଲେ ।

ଚତୁର୍ଥତଃ କେବଳ ନୌଯାତ୍ରାରେ ସାଧବମାନେ କୁଶଳୀ ନଥିଲେ, ସେମାନେ ବିଭିନ୍ନ ଜାତିର ପୋତ ନିର୍ମାଣରେ ବିଶାରଦ ଥିଲେ । ଭୋଜରାଜଙ୍କର 'ଯୁକ୍ତି କଳ୍ପତରୁ' ଗ୍ରନ୍ଥରେ ବିଭିନ୍ନ ପୋତ ନିର୍ମାଣର ପଦ୍ଧତି ବର୍ଣ୍ଣନା କରାଯାଇଛି । 'ଅର୍ଣ୍ଣବ ବିହାର' ଗ୍ରନ୍ଥରେ ପ୍ରାଚୀନ ନୌବାଣିଜ୍ୟର ସବିଶେଷ ବିବରଣୀ ରହିଛି । 'ବହିତ୍ରକୀର୍ତ୍ତି ବୈଭବମ୍' 'ଜଳଯାନମ୍', 'ବିଶାଖା ନିର୍ଦ୍ଦେଶମ୍' ପ୍ରଭୃତିରେ ପୁରାତନ ନୌବାଣିଜ୍ୟ ଧାରା ଓ ଉନ୍ନତମାନର ପୋତ ନିର୍ମାଣ କୌଶଳ ବର୍ଣ୍ଣନା ହୋଇଛି । ବିଭିନ୍ନ ମାନର ପୋତ ଗଠନ ନିମିତ୍ତ ନିର୍ଦ୍ଦିଷ୍ଟ କାଷ୍ଠର ସୂଚନା ଦିଆଯାଇଛି । ତେଣୁ ଶାରୀରିକ ଶକ୍ତି ସହ ପୋତ ନିର୍ମାଣଜନିତ ବୈଷୟିକ ଜ୍ଞାନ ସାଧବମାନଙ୍କର ଥିଲା । 'ପାଇକ ଖେଦା' ପୁସ୍ତକରେ ଆମର ପୁରାତନ ନାବ ନିର୍ମାଣ ବିଷୟରେ ସୂଚନା ଦିଆଯାଇଛି ।

ସମରେ ନୁହଁଇ ସମରେ ଅଟେ ସୁରଚତୁରୀ
ପୁଣପୁଣ ରାଜପୁର, ଲାଞ୍ଜୁଆ ଖାଇଜଙ୍ଗା
ଗଂଗା ପ୍ରସାଦ ଠିଆ
ନନ୍ଦିଆ ଖୁଣ୍ଟୁପଗୁରୁ ଏମାନ
ଗୁଣ କରିବା ଗୁଣ ସାବଧାନ
ଲାଞ୍ଜୁଆ ଯେ ଚାରୁ ଦୂରୁ ଦିଶଇ
ଯେହ୍ନେ ମହାମେରୁ ।''

ଉପରୋକ୍ତ ବିବରଣୀ ଅନୁସାରେ ନଅ ପ୍ରକାର ଜଳଯାନରୁ ତିନୋଟି ବାଣିଜ୍ୟ ଓ ଛଅଟି ଯୁଦ୍ଧ ନିମିତ୍ତ ଉଦ୍ଦିଷ୍ଟ ।

ଆବଶ୍ୟକତା ଅନୁସାରେ ବିଭିନ୍ନ ଆକାରର ପୋତ ନିର୍ମାଣ କରାଯାଇଥିଲା । ଏହା ସାଧବ ସଂସ୍କୃତିର ଅନ୍ୟତମ ଅପୂର୍ବ ଉପଲବ୍ଧି ।

ପଞ୍ଚମତଃ ଦୁର୍ବଳମନା ବ୍ୟକ୍ତି ସାଧବ ହୋଇ ପାରିବେ ନାହିଁ । କାରଣ ନୌବାଣିଜ୍ୟରେ କ୍ଷତି ସହିବାର ସମ୍ଭାବନା ରହିଛି । ଜୀବନ ସହିତ ଧନ ହରାଇବାର ଦୁର୍ଦ୍ଦଶା କେତେବେଳେ ଯେ ଆସିବ, କେହି କହି ପାରିବେ ନାହିଁ । କବି ଯଶୋବନ୍ତ ଦାସଙ୍କ ଭାଷାରେ,

‘ସିନ୍ଧୁର ଲହରୀ ଘାତେ ଭାସିଲା ବୋଇତ
କୂଳରେ ନ ଲାଗି ସର୍ବଦ୍ରବ୍ୟ ଗଲା ହତ...
ସାତସିନ୍ଧୁ ସାତଦ୍ୱୀପ ବୁଲି ଯାଉ ଯାଉ
ଲଙ୍କାଦ୍ୱୀପ ପରିବେଶ ହୋଇଲାକ ତହୁଁ ।’

ନୌବାଣିଜ୍ୟରେ ଝଡ଼, ବତାସ, ସାମୁଦ୍ରିକ ଜୀବ ଆକ୍ରମଣ ଆଦି ବହୁ ଦୁର୍ଘଟଣାର ସମ୍ଭାବନା ରହିଛି । କିମ୍ବଦନ୍ତୀରୁ ଜଣାପଡ଼େ ଯେ, ସିଂହଳ ନିକଟବର୍ତ୍ତୀ ସମୁଦ୍ର ବକ୍ଷରେ ଝଡ଼ ତୋଫାନଜନିତ ଦୁର୍ଘଟଣା ଯୋଗୁଁ କଳିଙ୍ଗର ପ୍ରାୟ ପାଞ୍ଚଶହ ବଣିକ ସଲିଳ ସମାଧି ଲାଭ କରିଥିଲେ । ମୃତ୍ୟୁକୁ ଭୟ ନ କରି ଦୂର ଦରିଆରେ ବୋଇତ ମେଲି ବିଦେଶ ଯାଉଥିବା ବେଳେ ଅନେକ ସାଧବ ମୃତ୍ୟୁବରଣ କରିବା ସ୍ୱାଭାବିକ । ତତ୍‌ସହିତ ସଞ୍ଚିତ ଧନ ବିପନ୍ନ ହେବା ଏକ ସାଧାରଣ କଥା । ଜଣେ ସହଜିଆ ବ୍ୟକ୍ତି ପକ୍ଷରେ ଏଭଳି ବିପତ୍ତିକୁ ସମ୍ମୁଖୀନ ହେବା ନିମିତ୍ତ ସାହସ ଅସମ୍ଭବ । ତାହା କେବଳ କର୍ମଠ ଓ କୁଶଳୀ ସାଧବମାନଙ୍କ ଦ୍ୱାରା ହିଁ ସମ୍ଭବପର ହୋଇପାରିଥିଲା ।

ଷଷ୍ଠତଃ ବିଦେଶକୁ ଯାଇ ନିଜ ଦେଶର ମୂଲ୍ୟବାନ ପଦାର୍ଥକୁ ବିକ୍ରୟ କରିବା ଓ ସେଠାରୁ ଉନ୍ନତମାନର ଦ୍ରବ୍ୟ ସଂଗ୍ରହ କରି ପ୍ରତ୍ୟାବର୍ତ୍ତନ କରିବା ନିମିତ୍ତ ବ୍ୟବସାୟିକ କୁଶଳତା ଆବଶ୍ୟକ । ବିଭିନ୍ନ ଦ୍ୱୀପପୁଞ୍ଜର ଶାସନ ଓ ଆଇନ ସମାନ ନୁହେଁ । ତେଣୁ ନିର୍ଦ୍ଦିଷ୍ଟ ନିୟମକୁ ମାନି ସଫଳତାର ସହ ବାଣିଜ୍ୟ କରିବା ସହଜ କଥା ନୁହେଁ । ସାଧବମାନେ ବିଭିନ୍ନ ଶସ୍ୟ, ପାଟବସ୍ତ୍ର, ରତ୍ନଠାରୁ ଆରମ୍ଭ କରି ହାତୀ ପର୍ଯ୍ୟନ୍ତ ପଣ୍ୟଦ୍ରବ୍ୟ ଆଧାର କରି ବାଣିଜ୍ୟ କରୁଥିଲେ ଓ ସଫଳତା ଲାଭ କରୁଥିଲେ । କେବଳ ବାଣିଜ୍ୟ ନୁହେଁ, ସାଧବମାନେ ଜାଭା, ସୁମାତ୍ରା, ବାଲି, ବ୍ରହ୍ମଦେଶ, ଚୀନ୍‌ରେ ନିଜର ଉପନିବେଶ ସ୍ଥାପନ କରିଥିଲେ । ବର୍ତ୍ତମାନ ସୁଦ୍ଧା ଓଡ଼ିଆମାନଙ୍କର ଦେବାଦେବୀ ସେହି ଦ୍ୱୀପରେ ପୂଜା ପାଉଛନ୍ତି ଓ ବିଭିନ୍ନ ଓଡ଼ିଆ ପର୍ବପର୍ବାଣି ପାଳିତ ହେଉଛି । କେବଳ ଯୋଗ୍ୟ ବ୍ୟକ୍ତିମାନେ ହିଁ ଏହିଭଳି ସାମାଜିକ ପ୍ରସିଦ୍ଧି ଲାଭ କରିବାକୁ ସମର୍ଥ ।

ସପ୍ତମତଃ ଏକ ବିଶେଷ ଗୁଣ ଯୋଗୁଁ ସାଧବ ସଂସ୍କୃତି ବିଶ୍ୱର ଶ୍ରେଷ୍ଠ ସଂସ୍କୃତି ଭାବରେ ଗୃହୀତ ହୋଇଛି । ତାହା ହେଲା ସର୍ବଧର୍ମ ସମନ୍ୱୟବାଦର ପ୍ରଚାର ସହ ବିଶ୍ୱଭ୍ରାତୃତ୍ୱ ଭାବ ପ୍ରଦର୍ଶନ । ବିଶ୍ୱର ବିଭିନ୍ନ ଜାତି ଯଥା: ଇଂରେଜ, ପର୍ତ୍ତୁଗୀଜ, ଫରାସୀ ପ୍ରଭୃତି ବାଣିଜ୍ୟ ନିମିତ୍ତ ବିଦେଶକୁ ଯାଇ ଉପନିବେଶ ସ୍ଥାପନ କରିଥିଲେ । ମାତ୍ର କାଳକ୍ରମେ ସେମାନଙ୍କୁ ସ୍ଥାନୀୟ ଜନସାଧାରଣ ବିତାଡିତ କରିଥିଲେ । କାରଣ ସେମାନଙ୍କର ବ୍ୟବସାୟିକ ମନୋବୃତ୍ତି ଏତେ ଉଗ୍ର ଥିଲା ଯେ, ସେମାନେ ସମସ୍ତ ଅନୀତିକୁ ପ୍ରୟୋଗ କରି ଜନ ଉତ୍ପୀଡନ କରୁଥିଲେ, ଭାରତର ଇଂରେଜ ଶାସନ ତାହାର ଜ୍ୱଳନ୍ତ ଉଦାହରଣ । ମାତ୍ର ଓଡ଼ିଆ ସାଧବମାନେ ନିଜର ଆଚରଣରେ ବନ୍ଧୁତା ଭାବ ପ୍ରଦର୍ଶନ କରୁଥିଲେ ଓ ବିଶ୍ୱକୁ ଗୋଟିଏ ପରିବାର ମନେକରି ତାଙ୍କର ସଂସ୍କୃତିକୁ ଗ୍ରହଣ କରିବା ସହିତ ନିଜ ସଂସ୍କୃତିର ପ୍ରସାର କରୁଥିଲେ । ତେଣୁ ସାଧବମାନେ ଉତ୍ପୀଡକ ନଥିଲେ ବରଂ ଉତ୍ତମ ବନ୍ଧୁ ଥିଲେ । ସେଥିନିମିତ୍ତ ସାଧବ ସଂସ୍କୃତିକୁ ସମସ୍ତେ ପ୍ରଶଂସା କରୁଥିଲେ ଏବଂ ବର୍ତ୍ତମାନ ମଧ୍ୟ କରୁଛନ୍ତି । ଏହା ଏକ ସହଜିଆ ସମାଜ ପକ୍ଷେ ଅସମ୍ଭବ ଓ ଉନ୍ନତ ପରଂପରାର ଦାୟାଦ ରୂପେ ସାଧବମାନେ ଆମର ସଂସ୍କୃତିକୁ ବିଶ୍ୱବ୍ୟାପକ କରିବାରେ ସମର୍ଥ ହୋଇଛନ୍ତି ।

ସଂସ୍କୃତ ସାହିତ୍ୟର ବିଶିଷ୍ଟ କବି କାଳିଦାସ ରଘୁବଂଶ କାବ୍ୟରେ କଳିଙ୍ଗର ଅଧିପତିଙ୍କୁ କେବଳ ମହେନ୍ଦ୍ର ପର୍ବତର ଅଧିପତି ନୁହେଁ ତତ୍‌ସହିତ ମହୋଦଧିର ପତି ଭାବରେ ବର୍ଣ୍ଣନା କରିଥିଲେ ।

''ଅସୌ ମହେନ୍ଦ୍ରାପି ସମାଜ ସାରଃ
ପତି ମହେନ୍ଦ୍ରସ୍ୟ ମହୋଦଧେଶ୍ଚ ।''

ପୁରାତନ କାଳରୁ ପୂର୍ବ ଉପକୂଳ ସମୁଦ୍ରକୁ ମହୋଦଧି ନାମରେ ନାମିତ କରାଯାଇଛି । କଳିଙ୍ଗ ସୀମାବର୍ତ୍ତୀ ସାଗର ବେଳାଭୂମିକୁ କଳିଙ୍ଗ ଦ୍ରେଶୁ ଓ ସାଗରକୁ କଳିଙ୍ଗ ସାଗର ଭାବେ ନାମିତ କରାଯାଇଥିଲା । ଇଂରେଜ ଶାସନ ବେଳେ କଳିଙ୍ଗଠାରୁ ବଙ୍ଗ ଅଧିକ ଗୁରୁତ୍ୱ ଲାଭ କରିବାରୁ ପୂର୍ବତଟ ସାଗରକୁ ବଙ୍ଗୋପସାଗର ଭାବେ କୁହାଗଲା । ମୋଗଲ ଶାସନ ବେଳରୁ ଓଡ଼ିଶା ତା'ର ନୌବାଣିଜ୍ୟିକ ପ୍ରତିଷ୍ଠା ହରାଇ ବସିଲା । ସତ୍ୟବାଦୀର କବି ନୀଳକଣ୍ଠ ଦାସ, 'କୋଣାର୍କେ' କାବ୍ୟରେ ହୃତ ନୌସମୃଦ୍ଧିକୁ ମନେ ପକାଇ ଲେଖିଥିଲେ ଯେ,

'କାହିଁ ଜାଭା କାହିଁ ବୋର୍ଣ୍ଣିଓ, କାହିଁ ମସଲା ଦ୍ୱୀପେ
ଯିବ ଭାସି ସୁଖ ସ୍ୱପନେ, ମଣି ବହେ ସମୀପେ ।'

ଓଡ଼ିଆମାନେ ଖ୍ରୀଷ୍ଟପୂର୍ବ ସମୟରୁ ନିଜର ସାହସିକତା, କାର୍ଯ୍ୟକୁଶଳତା ଓ ସାଧୁତା ଯୋଗୁଁ ବିଶ୍ୱରେ ଏକ ସ୍ୱତନ୍ତ୍ର ସଂସ୍କୃତି ଭାବେ 'ସାଧବ ସଂସ୍କୃତି' ସୃଷ୍ଟି କରିଥିଲେ । ଏଥିଲାଗି ଶତାବ୍ଦୀ ଶତାବ୍ଦୀ ବ୍ୟାପୀ ଓଡ଼ିଆମାନଙ୍କୁ କଠିନ ପରିଶ୍ରମ, ଅଧ୍ୟବସାୟ ଓ ଦୂରଦୃଷ୍ଟିସମ୍ପନ୍ନ କାର୍ଯ୍ୟଧାରାର ଅନୁସରଣ କରିବାକୁ ପଡ଼ିଥିଲା । ସେମାନେ କର୍ମଠ ଥିଲେ ଓ ସହଜିଆ ଭାବ ତାଙ୍କୁ ସ୍ପର୍ଶ କରିନଥିଲା ।

ଆତିଥ୍ୟ, ଏମ୍.ଆଇ.ଜି–୧–୨୨୭
ସତ୍ୟସାଇ ଏନ୍‌କ୍ଲେଭ, ଲେନ୍–୨୨
କୋଳଥିଆ, ଖଣ୍ଡଗିରି
ଭୁବନେଶ୍ୱର–୭୫୧୦୩୦



# ଗାନ୍ଧିଜୀ ଓ ପରିମଳ ବ୍ୟବସ୍ଥା

**ତ୍ରିଲୋଚନ ଦାଶ**

ଗାନ୍ଧିଜୀ ତାଙ୍କ ଜୀବନରେ ଦେଶର ପରିମଳ ବ୍ୟବସ୍ଥାକୁ ସବୁଠୁ ଅଧିକ ପ୍ରାଧାନ୍ୟ ଦେଇଥିଲେ । ଆଜକୁ ଏକ ଶତାବ୍ଦୀ ପୂର୍ବେ ବ୍ୟକ୍ତିଗତ ଓ ସମୂହ ସ୍ୱଚ୍ଛତାକୁ ନେଇ ତାଙ୍କର ଦୂରଦୃଷ୍ଟି ଭାବନା କଥା ଚିନ୍ତାକରି ବସିଲେ ଆଜି ବି ଆମକୁ ବିସ୍ମିତ ହେବାକୁ ପଡ଼େ ଯେ ଗାନ୍ଧିଜୀ ରାଜନୀତି ଓ ସମାଜ ବ୍ୟବସ୍ଥାର ବୈପ୍ଳବିକ ରୂପାନ୍ତର ଆଣିବାରେ ତାଙ୍କର ସମକାଳୀନ ରାଜନେତାଙ୍କ ମଧ୍ୟରେ ବିରଳ ତଥା ମୌଳିକ ଥିଲେ, ଏଥିରେ ସନ୍ଦେହ ନାହିଁ ।

ଗାନ୍ଧିଜୀ ଘରୋଇ ଓ ଆନୁଷ୍ଠାନିକ ଅବକାଶରେ ଗୋଟିଏ କଥା କହୁଥିଲେ ଯେ, 'ଭାରତର ରାଜନୈତିକ ସ୍ୱାଧୀନତା ଅପେକ୍ଷା ଏହାର ପରିମଳ ବ୍ୟବସ୍ଥା ଅଧିକ ଗୁରୁତ୍ୱପୂର୍ଣ୍ଣ' । 'ସ୍ୱଚ୍ଛତା' କେବଳ ଦେଶବାସୀଙ୍କୁ ତାଙ୍କର ଏକ ବାଚନିକ ଉପଦେଶ ନଥିଲା, ଥିଲା ତାଙ୍କର ଦୈନନ୍ଦିନର ଆଚରଣ, ଜୀବନଚର୍ଯ୍ୟା । ଭାରତର ଜନସାଧାରଣଙ୍କୁ ତାଙ୍କର ଏକ ବହୁ ଉଦ୍ଧୃତ ସନ୍ଦେଶ ଥିଲା– ମୋ ଜୀବନ ମୋର ବାର୍ତ୍ତା । ଏହି ପ୍ରସଙ୍ଗରେ ପରିମଳ ବ୍ୟବସ୍ଥା ପ୍ରତି ଲୋକଙ୍କ ଧ୍ୟାନ ଆକର୍ଷଣ କରିବା ଲକ୍ଷ୍ୟରେ ସେ କହୁଥିଲେ– ପ୍ରତ୍ୟେକ ବ୍ୟକ୍ତି ତା' ନିଜର ମେହେନ୍ତର । ଉଲ୍ଲେଖନୀୟ ଯେ କାହାକୁ ଶୌଚାଳୟ ସଫେଇ ଏବଂ ମୁଣ୍ଡରେ ମଳ ପରିବହନ କାର୍ଯ୍ୟରେ ନିୟୋଜିତ କରାଯିବାକୁ ଗାନ୍ଧିଜୀ ଦୃଢ଼ଭାବେ ବିରୋଧ କରିବା ସହିତ ଏହାର ଉଚ୍ଛେଦ ଚାହୁଁଥିଲେ ।

୧୯୧୫ ମସିହାରେ ଗାନ୍ଧିଜୀ ହରିଦ୍ୱାରରେ କୁମ୍ଭମେଳା ପରିଦର୍ଶନରେ ଯାଇଥିଲେ। ସେଠାରେ ସେ



ଦେଖିଲେ ଯେ ଲକ୍ଷାଧିକ ଶ୍ରଦ୍ଧାଳୁ ପବିତ୍ର ଗଙ୍ଗାନଦୀରେ ବୁଡ଼ ପକାଉଛନ୍ତି । କୁମ୍ଭମେଳାର ଅନୁଭୂତି ବର୍ଣ୍ଣନା କରି ଗାନ୍ଧିଜୀ 'ୟଙ୍ଗ୍ ଇଣ୍ଡିଆ' ସାପ୍ତାହିକୀରେ ଲେଖିଲେ–

"To my great grief I discovered insanitation, both moral and physical. xxx Thoughtless ignorant men and women use for natural functions the sacred banks of the river, where they are supposed to sit in quiet contemplation and find God. They violate religion, science and laws of sanitation."

'ନବଜୀବନ' ସାପ୍ତାହିକୀରେ ୧୯୨୫ ମସିହା ମେ ମାସରେ ଗାନ୍ଧିଜୀ ସ୍ୱଚ୍ଛତା ବା ପରିଚ୍ଛନ୍ନତାକୁ ନେଇ ଲେଖିଥିଲେ, ''୩୫ ବର୍ଷ ତଳୁ ମୋର ଏଇ ଉପଲବ୍ଧି ଯେ ଘରର ପାଇଖାନା, ବୈଠକ ଘର ସଦୃଶ ପରିଚ୍ଛନ୍ନ ରହିବା ଆବଶ୍ୟକ । ପାଶ୍ଚାତ୍ୟ ଜଗତରୁ ମୁଁ ଏହି ଜ୍ଞାନ ଲାଭ କରିଛି ଏବଂ ଭଲ ରୂପେ ଜାଣିଛି ଯେ ଆମର ଅଧିକାଂଶ ରୋଗର ଉତ୍ପତ୍ତିସ୍ଥଳ ଅପରିଚ୍ଛନ୍ନ ପାଇଖାନା ଏବଂ ଲୋକଙ୍କର ଯତ୍ରତତ୍ର ମଳମୂତ୍ର ତ୍ୟାଗ । ତେଣୁ ପରିଚ୍ଛନ୍ନ ଜାଗାରେ ମଳମୂତ୍ର ତ୍ୟାଗ କରିବା ଏବଂ ଏହି କାମ ପାଇଁ ବ୍ୟବହୃତ ସାମଗ୍ରୀକୁ ସଫାସୁତୁରା ରଖିବା ଏକାନ୍ତ ଅପରିହାର୍ଯ୍ୟ । ଏଥିରେ ମୁଁ ବିଶ୍ୱାସ କରେ ।''

ପଶ୍ଚିମବଙ୍ଗର ବୀରଭୂମି ଜିଲ୍ଲାରେ ରହୁଥିବା ଜଣେ ବ୍ୟକ୍ତିଙ୍କଠାରୁ ୧୯୩୭ ମସିହାରେ ଗାନ୍ଧିଜୀ ଚିଠିଟିଏ ପାଇଲେ, ଯହିଁରେ ସେ ବ୍ୟକ୍ତି ଜଣକ ଗାନ୍ଧିଜୀଙ୍କଠାରୁ ଜାଣିବାକୁ ଚାହିଁଥିଲେ ଯେ, ଆଦର୍ଶ ଗ୍ରାମ କାହାକୁ କୁହାଯିବ ଓ ଭାରତର ଗ୍ରାମାଞ୍ଚଳର ସବୁଠୁ ବଡ଼ ସମସ୍ୟାଟି କ'ଣ ? ଗାନ୍ଧିଜୀ ଏହି ପତ୍ର ପ୍ରେରକଙ୍କୁ ଉତ୍ତରରେ ଯାହା ଲେଖିଥିଲେ, ତାହା ୧୯୩୭ ମସିହାରେ 'ହରିଜନ' ପତ୍ରିକାରେ ପ୍ରକାଶ ପାଇଥିଲା । ତାହା ଥିଲା, ''ଯେଉଁ ଗାଁର ଲୋକେ ତାଙ୍କ ଗାଁର ପରିମଳ ବ୍ୟବସ୍ଥା ସୁଧାରିବା ପ୍ରତି ଯତ୍ନଶୀଳ ଏବଂ ପ୍ରତ୍ୟେକ ଗ୍ରାମବାସୀ ଏଥିପ୍ରତି ସଂକଳ୍ପବଦ୍ଧ, ସେହି ଗାଁକୁ ଆଦର୍ଶ ଗ୍ରାମ କୁହାଯିବ ।'' ଚିଠିରେ ଗାନ୍ଧିଜୀ ଆହୁରି ଲେଖିଥିଲେ– ''ଜଣେ ସ୍ୱେଚ୍ଛାସେବୀର କାମ ହେଉଛି ନିଜ ଆଡୁ ଗାଁର ମଇଳା ସଫା କରିବା ଓ ଗାଁ ଦାଣ୍ଡ ଓଳାଇବା । ଗାଁ ଲୋକେ କେଉଁଠି, କିପରି ଶୌଚ କରିବେ, ତାହା ସେମାନଙ୍କୁ କହିବା । ସ୍ୱଚ୍ଛତାର ମୂଲ୍ୟ ସମ୍ପର୍କରେ ବୁଝାଇବା ଏବଂ ସ୍ୱଚ୍ଛତା ହାନିର ଅପକାରିତା ଏବଂ ଏ ନେଇ ଥିବା ସ୍ୱାସ୍ଥ୍ୟଗତ ସମସ୍ୟା ସମ୍ପର୍କରେ ଅବଗତ କରାଇବା । ଲୋକେ ତାଙ୍କ କଥା ଶୁଣନ୍ତୁ କି ନ ଶୁଣନ୍ତୁ, ଏଥିପ୍ରତି ଧ୍ୟାନ ନ ଦେଇ ସେ ତାଙ୍କ ନିଜ କାମ କରିଯିବା ।'' ୧୯୪୬ ମସିହା ସେପ୍ଟେମ୍ବରରେ ଗାନ୍ଧିଜୀ ନୂଆଦିଲ୍ଲୀର ଏକ ସଭାରେ ବକ୍ତୃତା ଛଳରେ କହିଥିଲେ, ଯେ ସାହେବମାନଙ୍କ ବଙ୍ଗଳାର ପରିମଳ ବ୍ୟବସ୍ଥା ଯେପରି ଉନ୍ନତ, ସେଇ ଏକା ପରିସରରେ ରହୁଥିବା ଅନ୍ୟ କର୍ମଚାରୀମାନଙ୍କ ଘରର ପରିମଳ ବ୍ୟବସ୍ଥା ମଧ୍ୟ ସେହିପରି ଉନ୍ନତ ହେବା ଆବଶ୍ୟକ ।

ନିରୋଗ ତଥା ସୁସ୍ଥ ଜୀବନଯାପନ ପାଇଁ ସ୍ୱଚ୍ଛତା କିପରି ଅପରିହାର୍ଯ୍ୟ, ଗାନ୍ଧିଜୀ ତାହା ମର୍ମେ ମର୍ମେ ଅନୁଭବ କରିଥିଲେ । 'ସବୁରି ପାଇଁ ପୂରା ପରିମଳ' ଥିଲା ତାଙ୍କର ସ୍ୱପ୍ନ । ପରିଚ୍ଛନ୍ନତା ପ୍ରତି ସେ ଏତେ ସତର୍କ ଓ ସଚେତନ ଥିଲେ ଯେ ରାସ୍ତାରେ କେହି ଛେପ ପକାଇଲେ କି ନାକ ପୋଛିଲେ ଅସ୍ୱସ୍ତିବୋଧ କରୁଥିଲେ ତଥା ଏପରି କରିବାକୁ ଲୋକଙ୍କୁ ବାରଣ କରୁଥିଲେ । ୧୯୧୯ ମସିହା ନଭେମ୍ବର ୨ ତାରିଖରେ 'ନବ ଜୀବନ' ପତ୍ରିକାରେ ଗାନ୍ଧିଜୀ ଲେଖିଥିଲେ– ''ଛେପ, ଖଙ୍କାର, ସିଂଘାଣିରେ ଥିବା ଜୀବାଣୁ ଏତେ କ୍ଷତିକାରକ ଯେ ସେମାନେ ସହଜରେ ଅନ୍ୟକୁ ସଂକ୍ରମିତ କରିପାରନ୍ତି । ରାସ୍ତାରେ ଛେପ ପକାଇବା ଏକ ଅପରାଧ । ତା'ଛଡ଼ା ପାନ ଆଦି ଖାଇ ରାସ୍ତାଘାଟରେ ଏଣେତେଣେ ଛେପ ପକାଇବା କେତେକ ଲୋକଙ୍କର ରୀତିମତ ଅଭ୍ୟାସ । ଏଭଳି ଲୋକଙ୍କର ଅନ୍ୟର ଭାବନା ପ୍ରତି ପରବାୟ ନଥାଏ । ମୋ' ବିଚାରରେ ଛେପ, ଖଙ୍କାର ଆଦି ପକାଇବା ଜାଗାକୁ ଭଲରୂପେ ମାଟିରେ ଘୋଡ଼ାଇ ଦିଆଯିବା ଉଚିତ ।

ଗାନ୍ଧିଜୀଙ୍କ ବାପା ଏବଂ ଜେଜେବାପା ଥିଲେ ବୃତ୍ତିରେ ଦେୱାନ୍ । ଆଭିଜାତ୍ୟ ଦେୱାନ୍ ପରିବାରର ସନ୍ତାନ ତଥା ବୃତ୍ତିରେ ନିଜେ ବାରିଷ୍ଟର ହୋଇ ବି ସେ ନିୟମିତ ଭାବେ ସହରର ଘରକୁ ଘର ବୁଲି ନାଳନର୍ଦ୍ଦମାର ସ୍ଥିତି ନିରୀକ୍ଷଣ କରୁଥିଲେ । ଏଥିପାଇଁ ତାଙ୍କର ଟିକେ ବି ସଙ୍କୋଚ ନଥିଲା । ଏହାକୁ ଗାନ୍ଧିଜୀଙ୍କର ଆତ୍ମବଳ ଏବଂ ସାହସ ବୋଲି କୁହାଯିବ ।

ଅନ୍ତରର ପ୍ରେରଣାରେ ପ୍ରେରିତ ହୋଇ ସେ ଯେଉଁ କାମକୁ ଉଚିତ ମଣୁଥିଲେ, ତାହାକୁ ଯେକୌଣସି ମୂଲ୍ୟ ବିନିମୟରେ କରିବାକୁ କଦାପି ପଛଘୁଞ୍ଚା ଦେଉନଥିଲେ । ମନ ମାନିଥିବା କାମରେ ସେ କିପରି ଅଟଳ ଥିଲେ, ତାହା ରାଜକୋଟ ଅବସ୍ଥାନ କାଳରେ ତାଙ୍କ ଜୀବନରେ ଘଟିଥିବା ଏକ ଘଟଣାରୁ ଜଣାପଡ଼େ । ରାଜକୋଟରେ ରଜା ବୋଲି ଜଣେ କର୍ମଚାରୀ ଥା'ନ୍ତି, ତା'ର କାମ ହେଉଛି ରାସ୍ତାଘାଟ ଝାଡୁଦେବା ଓ ନାଳନର୍ଦ୍ଦମା ସଫା କରିବା । ମାତ୍ର ୧୨ ବର୍ଷ ବୟସର କିଶୋର ଗାନ୍ଧୀ ଭୁଲୁଭୁଲୁ କେବେ କେମିତି ରଜାକୁ ଛୁଇଁଦେଲେ ମାଆ ପୁତ୍‌ଲିବାଇ ତାଙ୍କୁ ଅଗତ୍ୟା ଗାଧୋଇବାକୁ କହୁଥିଲେ । ଅତି ସୁଧାର ଏବଂ ମାଆଙ୍କ କଥାକୁ ଅନ୍ୟଥା କରୁନଥିବା ଗାନ୍ଧୀ କିନ୍ତୁ ମାଆଙ୍କର ଏପରି ତାଗିଦ୍‌କୁ ପସନ୍ଦ କରିପାରୁ ନଥିଲେ । ଛୁଆ ଅଛୁଆଁ ପ୍ରସଙ୍ଗ ନେଇ ମାଆଙ୍କ ସହ ତାଙ୍କର ଯୁକ୍ତିତର୍କ ହେଉଥିଲା । ଗାନ୍ଧିଜୀ କହୁଥିଲେ– ''ମାଆ, ନାଳନର୍ଦ୍ଦମା ସଫା କରି ରଜା ତ ଆମର ସେବା କରୁଛି । ତାକୁ ଛୁଇଁଦେଲେ ମୁଁ ଗାଧୋଇବି କାହିଁକି ? ପୁଅର ଏ ଅକାଟ୍ୟ ଯୁକ୍ତିରେ ମାଆ ପୁତ୍‌ଲିବାଇ ନିରୁତ୍ତର ରହୁଥିଲେ । ପାଶ୍ଚାତ୍ୟର ବହୁ ଚଳଣିକୁ ଗାନ୍ଧିଜୀ ସମର୍ଥନ କରୁନଥିଲେ ବି ସେଠାର ପରିମଳ ବ୍ୟବସ୍ଥାକୁ ତାରିଫ୍ କରୁଥିଲେ ।

ସଫେଇ ସମ୍ପର୍କରେ ଗାନ୍ଧିଜୀଙ୍କର ଯେଉଁ ଅଭିଜ୍ଞାନ, ତାହା ସେ ଦକ୍ଷିଣ ଆଫ୍ରିକାରୁ ଆହରଣ କରିଥିଲେ । ଶିଖିଥିବା ଜ୍ଞାନକୁ ସେ ଆଗ ନିଜ ଜୀବନରେ ପ୍ରୟୋଗ କରିଥିଲେ । ନିଜର ସମସ୍ତ କାମ ନିଜ ହାତରେ କରୁଥିଲେ । ଆଫ୍ରିକାରେ ତିନିବର୍ଷର ରହଣି ପରେ ସ୍ୱଦେଶକୁ ଫେରି ଗାନ୍ଧିଜୀ ଦେଖିଲେ ଯେ ବମ୍ବେ ପ୍ରେସିଡେନ୍‌ସିରେ ପ୍ଲେଗ୍ ରୋଗ ବ୍ୟାପିଛି । ରାଜକୋଟକୁ ଏହି ରୋଗ ସଂକ୍ରମିତ ହେବାର ଦେଖି କାଳ ବିଳମ୍ବ ନ କରି ସେ ରାଜକୋଟର ପରିମଳ ବ୍ୟବସ୍ଥା ସୁଧାରିବାରେ ଲାଗିପଡ଼ିଲେ । ତାଙ୍କ କଥାରେ ଅନୁପ୍ରାଣିତ ହୋଇ ଲୋକେ ନିଜ ଘରଦ୍ୱାର ସଫାସୁତୁରା ରଖିଲେ । କ୍ରମେ ସହରର ପରିମଳ ବ୍ୟବସ୍ଥାରେ ଉନ୍ନତି ପରିଲକ୍ଷିତ ହେଲା ଏବଂ ରାଜକୋଟ ପ୍ଲେଗ୍ କବଳରୁ ରକ୍ଷା ପାଇଲା ।

ଲୋକଙ୍କୁ ସାମ୍ୟ ଭାବନାର ଶିକ୍ଷାଦେବା ପାଇଁ ଗାନ୍ଧିଜୀ 'ସ୍ୱଚ୍ଛତା'କୁ ମନ୍ତ୍ର ଭାବେ ଗ୍ରହଣ କରିଥିଲେ ଏବଂ ସମସ୍ତଙ୍କୁ ଏହି ମନ୍ତ୍ରରେ ଦୀକ୍ଷିତ କରାଉଥିଲେ । ଦକ୍ଷିଣ ଆଫ୍ରିକାରୁ ଦ୍ୱିତୀୟ ଥର ପାଇଁ ଭାରତ ଆସିବା ଅବକାଶରେ କଂଗ୍ରେସର କଲିକତା ଅଧିବେଶନରେ ଭାଗ ନେଇ ସେଠାକାର ବିପର୍ଯ୍ୟୟ ପରିମଳ ବ୍ୟବସ୍ଥା ଦେଖି ସେ ବ୍ୟଥିତ ହୋଇପଡ଼ିଥିଲେ । ଆଗନ୍ତୁକ ଅଭ୍ୟାଗତମାନେ ରହୁଥିବା ଘରର ବାରଣ୍ଡାକୁ ଶୌଚକର୍ମ ପାଇଁ ବ୍ୟବହାର କରୁଥିଲେ ସମସ୍ତେ ଏହାକୁ ଦେଖୁଥିଲେ ବି କେହି ପାଟି ଖୋଲୁ ନଥିଲେ । ଗାନ୍ଧିଜୀ କିନ୍ତୁ ନୀରବ ନ ରହି ଏହାର ପ୍ରତିବାଦ କଲେ । ସ୍ୱେଚ୍ଛାସେବୀମାନଙ୍କ ସାମ୍ନାରେ ଏପରି ଅସ୍ୱାସ୍ଥ୍ୟକର ପରିବେଶ ସୃଷ୍ଟି ହେଉଥିବା ସତ୍ତ୍ୱେ ସେମାନେ କାହିଁକି ଏହାର ପ୍ରତିକାର କରୁନାହାନ୍ତି ବୋଲି ପ୍ରଶ୍ନ କଲାରୁ ଗାନ୍ଧିଜୀଙ୍କୁ ସେମାନେ ଉତ୍ତର ଦେଲେ– 'ଏ କାମ ଆମର ନୁହେଁ' । ଗାନ୍ଧିଜୀ ପ୍ରତ୍ୟୁତ୍ତରରେ କିଛି ନ କହି ନିଜେ ସଫେଇ କାମ ହାତକୁ ନେଲେ । ଝାଡୁଟିଏ ଆଣି ଅପରିଚ୍ଛନ୍ନ ବାରଣ୍ଡାକୁ ସଫା କରିବାରେ ଲାଗିଗଲେ । ସ୍ୱେଚ୍ଛାସେବୀମାନେ ତାଙ୍କର ଏ କାମ ଦେଖି ବିସ୍ମିତ ହେଲେ । କଂଗ୍ରେସର ହରିପୁରା ଅଧିବେଶନରେ ସଫେଇ କାମ ପାଇଁ ଦୁଇ ହଜାର ଶିକ୍ଷକ ଏବଂ ଛାତ୍ରଙ୍କୁ ସ୍ୱତନ୍ତ୍ର ଭାବେ ପ୍ରଶିକ୍ଷଣ ଦିଆଯାଇଥିଲା । ସଫେଇ କାମରେ ନିଯୁକ୍ତ ଲୋକଙ୍କୁ ସମାଜରୁ ଅଲଗା କରି 'ଅସ୍ପୃଶ୍ୟ' ବିବେଚନା କରାଯାଉ, ଏହା ଗାନ୍ଧିଜୀ ଚାହୁଁନଥିଲେ । ସଫେଇର ଯେଉଁ ସାମାନ୍ୟ ଅବକାଶ ଥିଲା, ତହିଁରେ ସେ ନିଜକୁ ସଂପୃକ୍ତ କରୁଥିଲେ ଏବଂ ତହିଁରୁ ଭରପୂର ଆନନ୍ଦ ଉଠାଉ ଥିଲେ ।

ଦକ୍ଷିଣ ଆଫ୍ରିକାର ଭାରତୀୟମାନଙ୍କ ଘରେ ଘରେ ବୁଲି ସେ ସମସ୍ତଙ୍କୁ ଘର ଏବଂ ପରିବେଶ ସଫା ରଖିବାକୁ ବୁଝାଉ ଥିଲେ । ସଭାସମିତିରେ ଏଥିପାଇଁ ଆହ୍ୱାନ ଦେଉଥିଲେ ତଥା ଖବରକାଗଜରେ ଏନେଇ ଲେଖାମାନ ଲେଖୁଥିଲେ । ଦରବାନ୍‌ରେ ରହୁଥିଲା ବେଳେ ସେ ପରିମଳ ସାମଗ୍ରୀକୁ ନିଜ ହାତରେ ସଫା କରୁଥିଲେ । କେବଳ ସେତିକି ନୁହେଁ, ତାଙ୍କ ସହ ମିଶି ଏହି କାର୍ଯ୍ୟ କରିବା ପାଇଁ ପତ୍ନୀ କସ୍ତୁରବାଙ୍କୁ ମଧ୍ୟ କହୁଥିଲେ ।

ନିଜ ପିଲାମାନଙ୍କୁ ବି ସଫେଇ କାମରେ ନିୟୋଜିତ କରୁଥିଲେ ।

୧୯୧୬ ମସିହା ଫେବୃଆରୀ ୪ ତାରିଖରେ ମଦନମୋହନ ମାଳବ୍ୟଙ୍କ ଆମନ୍ତ୍ରଣକ୍ରମେ ଗାନ୍ଧିଜୀ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର ଉଦ୍‌ଘାଟନୀ ସମାରୋହରେ ଅତିଥି ଭାବେ ଯୋଗ ଦେଇଥିଲେ । ନିଜ ବକ୍ତବ୍ୟରେ ସେ ବିଶ୍ୱନାଥ ମନ୍ଦିର ପରିଦର୍ଶନର ସ୍ମୃତିକୁ ମନେ ପକାଇ କହିଥିଲେ– ''ଈଶ୍ୱରଙ୍କ ଏହି ନିବାସସ୍ଥଳୀର ଅପରିଚ୍ଛନ୍ନତା ମୋତେ ହତାଶ କରିଥିଲା । ମନେ ହୋଇଥିଲା, ଏହି ମହାନ୍ ମନ୍ଦିରଟି କ'ଣ ଆମ ଚରିତ୍ରର ପ୍ରତିଫଳନ ନୁହେଁ ? ମନ୍ଦିର ଚତୁଃପାର୍ଶ୍ୱରେ ଥିବା ଘରଗୁଡ଼ିକ କୌଣସି ନୀତିନିୟମ ଆଧାରରେ ନିର୍ମିତ ହୋଇଥିବା ପରି ଲାଗିଲା ନାହିଁ । ରାସ୍ତାଗୁଡ଼ିକ ଖସଡ଼ା, ଅଣଓସାରିଆ ଏବଂ ଅଳିଆ ଆବର୍ଜନା ଭର୍ତ୍ତି । ଏଥିପାଇଁ ସେ ସମସ୍ତଙ୍କୁ ଆହ୍ୱାନ କରିଥିଲେ ସ୍ୱଚ୍ଛତା ବଜାୟ ରଖିବାକୁ । ୧୯୩୪ ମସିହାରେ ଓଡ଼ିଶାରେ ଅନୁଷ୍ଠିତ 'ହରିଜନ ପଦଯାତ୍ରା'ରେ ଉଦ୍‌ବୋଧନ ଦେଇ ଗାନ୍ଧିଜୀ କହିଥିଲେ– 'ରୋଗ ଉପଶମ ପାଇଁ ଔଷଧ ଉପରେ ନିର୍ଭର ନ କରି ରୋଗକୁ ପ୍ରତିହତ କରାଯିବା ଉଚତ ।'

ତାଙ୍କ ବିଚାରରେ 'ଯିଏ ଶୌଚାଳୟ ସଫେଇ ପାଇଁ କୁଣ୍ଠାବୋଧ କରେନି, ସେଇ ହିଁ କେବଳ ସ୍ୱରାଜ ପାଇଁ ଉପଯୁକ୍ତ ।' ସ୍ୱଚ୍ଛତା ସମ୍ପର୍କରେ ତାଙ୍କର ସର୍ବଶ୍ରେଷ୍ଠ ଅନୁଭବଟି ଥିଲା– ''ଯେ ପର୍ଯ୍ୟନ୍ତ ତୁମେ ନିଜେ ଝାଡୁ ଏବଂ ବାଲ୍‌ଟି ଧରିନାହଁ, ସେ ପର୍ଯ୍ୟନ୍ତ ତୁମ ଗାଁ ବା ସହରକୁ ପରିଚ୍ଛନ୍ନ କରିପାରିବ ନାହିଁ ।''

ଦିନେ ଗାନ୍ଧିଜୀ ଗୋଟିଏ ବିଦ୍ୟାଳୟ ପରିଦର୍ଶନରେ ଯାଇ ବିଦ୍ୟାଳୟର ଶିକ୍ଷକମାନଙ୍କୁ କହିଥିଲେ, ''ଶିକ୍ଷାଦାନ ସହିତ ଶିକ୍ଷାର୍ଥୀମାନଙ୍କୁ ଭଲ 'ରାନ୍ଧୁଣିଆ' ଏବଂ 'ସଫେଇବାଲା' କରି ଆପଣମାନେ ଯେଉଁଦିନ ଗଢ଼ିତୋଳିବେ, ଆପଣଙ୍କ ଅନୁଷ୍ଠାନକୁ ସେହିଦିନ ଆଦର୍ଶ ଶିକ୍ଷାନୁଷ୍ଠାନରେ ପରିଣତ କରିପାରିବେ ।''

ଗାନ୍ଧିଜୀ 'ସ୍ୱଚ୍ଛ ଭାରତ ନିର୍ମାଣ'ର ସ୍ୱପ୍ନ କେବଳ ଦେଖୁନଥିଲେ, ତାଙ୍କ ଜୀବଦ୍ଦଶାରେ ତହିଁର ଏକ ଜ୍ୱଳନ୍ତ ଉଦାହରଣ ପାଲଟି ଥିଲେ । ତାଙ୍କ ତିରୋଧାନ ଆଜି ସୁଦୂର ଅତୀତ, ଅଥଚ ଅଧିକାଂଶ ଗ୍ରାମାଞ୍ଚଳ ଲୋକଙ୍କ ପାଖରେ ଶୌଚାଳୟଟିଏ ଅପହଞ୍ଚ । ଆମ ଦେଶର ପ୍ରଧାନମନ୍ତ୍ରୀ ସ୍ୱଚ୍ଛ ଭାରତ ଅଭିଯାନ ଯୋଜନାରେ ଖୋଲା ଶୌଚ ଅଭ୍ୟାସର ଅନ୍ତ ଘଟାଇ ଘରେ ଘରେ ଶୌଚାଳୟ ନିର୍ମାଣ ଏବଂ ବର୍ଜ୍ୟବସ୍ତୁର ସୁପରିଚାଳନା ପାଇଁ ଯେଉଁ ସଂକଳ୍ପ ନେଇଛନ୍ତି, ତାହା ସଫଳ ହେଲେ ଗାନ୍ଧୀଙ୍କ ସ୍ମୃତି ପ୍ରତି ଯେ ଏହା ଭାରତବାସୀଙ୍କ ସର୍ବଶ୍ରେଷ୍ଠ କୃତଜ୍ଞତା ହେବ, ଏଥିରେ ସନ୍ଦେହ ନାହିଁ ।

ବାସନ୍ଦରା, ଜଗତ୍‌ସିଂହପୁର
ପିନ୍ – ୭୫୪୧୧୧



# ଓଡ଼ିଶାର ଲୋକଗୀତ

**ଡାକ୍ତର ରବି ରଞ୍ଜନ ସାହୁ**

ଲୋକଗୀତ ହେଉଛି ଜନଗଣଙ୍କ ହୃଦୟର ଚିର ପ୍ରବହମାନ ସ୍ରୋତସ୍ୱିନୀ, ଯାହା ଯୁଗ ପରେ ଯୁଗ ପରିବର୍ତ୍ତିତ ପରିବର୍ଦ୍ଧିତ ହୋଇ ବେଦ ଭଳି ଗୋଟିଏ ଶ୍ରୁତିରୁ ଅନ୍ୟ ଶ୍ରୁତିକୁ ପ୍ରବାହିତ ହୋଇଥାଏ । ଏହା ସାହାଯ୍ୟରେ ଗୋଟିଏ ଯୁଗର ଲୋକେ ସେମାନଙ୍କ ପୂର୍ବ ପୁରୁଷଙ୍କ ଦ୍ୱାରା ଶିକ୍ଷାପ୍ରାପ୍ତ ହୋଇଥାନ୍ତି । ସେ ଧାରା ନିରବଚ୍ଛିନ୍ନ । ଏ ଗୀତ ଗୋଟିଏ ସ୍ଥାନରେ ଉତ୍ପନ୍ନ ହୋଇ ଲୋକମୁଖରେ ସମଗ୍ର ଦେଶରେ ବିସ୍ତାରିତ ହୋଇଥାଏ । ଦେଖିବାକୁ ମିଳେ ଯେ ଗୋଟିଏ ଗୀତ ଗୋଟିଏ ଅଞ୍ଚଳରେ ବା ବିଭିନ୍ନ ଅଞ୍ଚଳରେ ଭିନ୍ନ ଭିନ୍ନ ରୂପରେ ଉପଲବ୍ଧ ହୋଇଥାଏ । ଏହା ହେଉଛି ମାଟିର ଭାଷା, ଯେଉଁଠି ହୃଦୟର ସ୍ୱାଭାବିକ ସଂଗୀତ ବରାବର ଆଶ୍ରିତ । ଏଥିରେ ନ ଥାଏ ବିଚାରର ଦୁର୍ବୋଧତା । ଆତ୍ମାର ନୈସର୍ଗିକ ସ୍ୱର ଫୁଟି ଉଠିଥାଏ ଏଥିରେ ।

ଆନନ୍ଦ – ନିରାନନ୍ଦ, ବିରହ-ମିଳନ, ସଙ୍ଗ-ନିଃସଙ୍ଗ, ଆମୋଦ-ବିଷାଦ, ଅବସର-କର୍ମ ବିଭୋର ଇତ୍ୟାଦି ବିଭିନ୍ନ କ୍ଷେତ୍ରରେ ଲୋକଗୀତ ସ୍ୱରତୋକ୍ତି ଭାବରେ ଗୁଂଜରିତ ହୋଇଥାଏ ବା ଉଚ୍ଛରିତ ହୋଇଥାଏ ।

ବିଶେଷ କରି କିଛି ନା କିଛି କାମ କରାଯାଉଥିବା ସମୟରେ ଗୀତର ଗାନ ବା ଗୁଂଜରଣ ଶୁଣିବାକୁ ମିଳିଥାଏ । ହଳୁଆ ହଳ କରୁଥିବାବେଳେ, ଗାଡ଼ିଚାଳକ ଗାଡ଼ି ଚଲାଉଥିବା ବେଳେ, କୃଷକ କୃଷି କାର୍ଯ୍ୟ କଲାବେଳେ, କେହି ଛାତ ଢ଼ଳାଇ କରୁଥିବାବେଳେ, ଡ଼ଙ୍ଗା ଚାଲୁଥିବା ବେଳେ, ସୂତା କାଟୁଥିବା ବେଳେ କାମ ସହିତ ଗୀତ ଗୁଣୁଗୁଣାଇଥାନ୍ତି । ଗୀତର ମାଦକ ପ୍ରଭାବରେ ଶ୍ରମ ଦୂର ହୋଇଯାଇଥାଏ । କ୍ଲାନ୍ତି ଅନୁଭବ ହୁଏ ନା । କାମ ସହିତ ଗୀତ ଗାଇବା ଏକ ସ୍ୱାଭାବିକ ପ୍ରକ୍ରିୟା ମାତ୍ର କଠିନ ଶ୍ରମବେଳେ ଗୀତ ଗାଇ ହୁଏନା । ଶ୍ରମିକ ହାପେଁଇଯାଏ ସେତେବେଳେ ତା ମୁହଁରୁ କେବଳ ସ୍ୱର ବାହାରିଯାଏ – ଯାହାର କିଛି ଅର୍ଥ ନାହିଁ । ଯଥା 'ହୁଁରେ ଭାଇ' 'ଆରେ ଭାଇ' ଇତ୍ୟାଦି ।

କିନ୍ତୁ ବର୍ତ୍ତମାନ ଗୀତ ଆଉ କାମର ଅନିବାର୍ଯ୍ୟ ଅଙ୍ଗ ନୁହେଁ । କଳକାରଖାନାର କୋଳାହଳ – ଧୂଆଁ ଧୂଳିରେ ପ୍ରାଣ ଶୁଷ୍କ ପ୍ରାୟ । ଫଳରେ ଗୀତ ବିସ୍ମୃତ । ଏ ପରିପ୍ରେକ୍ଷୀରେ ଶ୍ରମିକର ଶ୍ରମ ବି ତା ପାଇଁ ଅସହ୍ୟ ନୁହେଁ ।

କେଉଁ ଅଜଣା କାଳରୁ, ଅଜଣା ସୂତ୍ରରୁ ନିସୃତ ହୋଇ ପିଢ଼ି ପରେ ପିଢ଼ି ଲୋକଗୀତର ସ୍ରୋତସ୍ୱିନୀ ଅଜସ୍ର ଅନୁଭୂତି ଓ ଅସଂଖ୍ୟ ଅଭିଜ୍ଞତାର ସମ୍ଭାର ନେଇ ବହି ଚାଲିଛି । ସେଥିରେ ପ୍ରତିବିମ୍ବିତ ସମୟର ସାମାଜିକ ସ୍ଥିତି, ଜୀବନ ଦର୍ଶନ, ରୀତି-ନୀତି, ଚଳଣି-ଆଚରଣ ସହିତ ବ୍ୟକ୍ତିଗତ ଜୀବନରେ ସ୍ନେହ-ସୁହାଗ, ଦୁଃଖ-ସୁଖ, ଭାବ-ଭାବନା, କ୍ରୋଧ-ଅସହାୟତା, ସ୍ନେହ-ମମତା ସାଂସ୍କୃତିକ ଓ ଧର୍ମୀୟ ଚେତନା ଇତ୍ୟାଦି ପ୍ରକଟିତ ହେଉଛି, ଝଡ଼ି-ବଢ଼ି-ମରୁଡ଼ି ଭଳି ପାଗର ପୂର୍ବାନୁମାନ ଶାରୀରିକ ଓ ମାନସିକ ସମସ୍ୟା ।

ଅବଶ୍ୟ ଗୀତ ଓ ନୃତ୍ୟ ପରସ୍ପରର ପରିପୂରକ । ତେବେ ବି ନାଗାନୃତ୍ୟ ଭଳି କେତେକ ନୃତ୍ୟ ଗୀତ ବିହୀନ । ଛଉ ନୃତ୍ୟରେ ବେଳେବେଳେ ଗୀତ ବୋଲାଯାଇଥାଏ । ସେଇଭଳି ଅନ୍ୟ ପାର୍ଶ୍ୱରେ, ପଟୁଆ, ଚଇତି ଘୋଡ଼ା, ପାଲା

ଓ ଦାସକାଠିଆର ସାଂଗୀତିକ ପରିବେଶରେ ନୃତ୍ୟର କିଛି ମହତ୍ତ୍ୱ ନାହିଁ । ଏଥିରେ ଗୀତ ସହିତ ବାଦ୍ୟର ତାଳ ସମନ୍ୱିତ ହୋଇଥାଏ । ଆଦିବାସୀଙ୍କ ବିବାହ ସମୟରେ ସାମାଜିକ ନୃତ୍ୟ ଆୟୋଜିତ ହୋଇଥାଏ । କୃଷି ଉତ୍ପାଦନ, ଗ୍ରହ ପୀଡ଼ାନାଶନ, କାମ-ପୀଡ଼ନ ତଥା କ୍ଲାନ୍ତି ବିନାଶନ ଲାଗି ଏସବୁ ନୃତ୍ୟ ଓ ତତ୍ ସଂପୃକ୍ତ ଗୀତର ଲକ୍ଷ୍ୟ । ଓଡ଼ିଶାର ଶିକାର ନୃତ୍ୟ, ପାଇକ ଓ ନାଗାନୃତ୍ୟ ବାସ୍ତବରେ ଯୁଦ୍ଧନୃତ୍ୟ । ଏଥିରେ ଲୋକଗୀତ ଅପେକ୍ଷା ଢ଼ୋଲ, ମହୁରୀ, ମାଦଳ ଭଳି ଲୋକବାଦ୍ୟର ମହତ୍ତ୍ୱ ଅଧିକ । ପୁଚି, ଡ଼ାଲଖାଇ, ଗୁଜିକୁଟ, ରସରକେଲି, ଜାମୁଡ଼ାଳି ଆଦି ନୃତ୍ୟ ସହିତ ଗୀତ ବୋଲାଯାଇଥାଏ ।

ବାରମାସୀ ପିଲା ଭୁଲାଣିଆ ଭଳି କେତେକ ଗୀତ ମନ ଭୁଲାଇବାକୁ ଉଦ୍ଦିଷ୍ଟ, ପୁଚିଗୀତ, କବାଡ଼ି, ଆଖି ବନ୍ଦ କରି ଚୋର ଖୋଜିବା ଗୀତ, ବୋଉ ବୋଉକା ଗୀତ, ଦୋଳି ଗୀତ ପ୍ରଭୃତି ଖେଳଗୀତ, କରମା, ଦଣ୍ଡନାଟ୍ୟ, ପାଟୁଆଯାତ୍ରାର ଅଧିକାଂଶ ଗୀତ ଧର୍ମାନୁଷ୍ଠାନ ସହିତ ସଂଶ୍ଳିଷ୍ଟ । ଏଭଳି ଗୀତ ବୈଚିତ୍ର୍ୟ ହୀନ ଏବଂ ଏଥିରେ କବିତ୍ୱ ନାମମାତ୍ର । ଓଡ଼ିଶାରେ ଗ୍ରାମାଞ୍ଚଳର ଝିଅ ବାହା ହୋଇ ଶାଶୁଘରକୁ ଯିବା ପୂର୍ବରୁ କାନ୍ଦଣା ଶିଖୁଥିଲା । ଶିକ୍ଷଣ-ପଦ୍ଧତି କୃତ୍ରିମ ହେଲେ ବି ଏହାଦ୍ୱାରା ନାରୀଜାତିର ସର୍ବଶ୍ରେଷ୍ଠ କବିତ୍ୱ ପ୍ରକଟିତ ।

ଗ୍ରାମୀଣ ଲୋକ ଯଶ ବା ଅର୍ଥ ଲିପ୍ସା ନେଇ ଗୀତ ଗାଇ ନଥାନ୍ତି । ଗୀତ ଶେଷରେ ଭଣିତାଙ୍କ ନାମ ନଥାଏ । ବ୍ୟକ୍ତି ଦ୍ୱାରା ଗୀତ ରଚିତ ହେଲେ ଏଥିରେ ବ୍ୟକ୍ତିର ବ୍ୟକ୍ତିତ୍ୱ ପରିବର୍ତ୍ତେ ସାମଗ୍ରିକ ବ୍ୟକ୍ତିତ୍ୱ ପ୍ରତିଫଳିତ ହୋଇ ଗୀତ ଗାଇ ଲୋକ-କବି ଶାଶ୍ୱତ ହେବାକୁ ଚାହିଁ ନଥାଏ ।

ବିପ୍ରକୃତି ବା ବାତାବରଣ ଦ୍ୱାରା ଲୋକଗୀତ ମହିମାନ୍ୱିତ ହୋଇଥାଏ । ସେଥିରୁ ଅଲଗା କରି ଗାଇଲେ ବିଶେଷ ଆନନ୍ଦ ମିଳେନା । ସ୍ୱର ଶିକ୍ଷା ଗ୍ରାମୀଣଙ୍କ ପାରମ୍ପରିକ ରୀତି ଅନୁଯାୟୀ ହୋଇଥାଏ । ଶୁଣି ଶୁଣି ଲୋକେ ଏ ସବୁ ଶିଖିଥାନ୍ତି । ପୌରାଣିକ କଥା ରାମ-କୃଷ୍ଣଙ୍କ କୀର୍ତ୍ତି କାହାଣୀ ଓ ଶ୍ରୀଜଗନ୍ନାଥଙ୍କ ମହିମା ଅନେକ ସମୟରେ ଓଡ଼ିଶୀ ଲୋକଗୀତର ବିଷୟବସ୍ତୁ ହେଲେ ବି ଧର୍ମନିରପେକ୍ଷତା ଏହାର ମୌଳିକ ଉପଜୀବ୍ୟ ।

ଲୋକଗୀତରେ ବ୍ୟବହୃତ ଅସଂଖ୍ୟ ନିରର୍ଥକ ଶବ୍ଦ ଏହାର ଆଦିମ ଅବସ୍ଥାରେ ସ୍ମାରକ । ହୁଏତ କେହି କେହି ଲୋକ କବି ନିଜ ମନର ଭାବକୁ ସ୍ପଷ୍ଟଭାବେ ପ୍ରକାଶ କରିପାରିନାହାନ୍ତି । ତାଙ୍କର ଅସ୍ପଷ୍ଟ ଅଭିବ୍ୟକ୍ତି ଧୀରେ ଧୀରେ ଦୁର୍ବୋଧ ହୋଇଯାଇଛି କିମ୍ବା ଯେଉଁ ବାତାବରଣରେ ଗୀତର ସୃଷ୍ଟି ତା' ବଦଳିଯିବା ଫଳରେ ଗୀତର ଅର୍ଥ ବୁଝି ହେଉନାହିଁ । ସେ ଯା' ହେଉନା କାହିଁକି ନିରର୍ଥକ ଓ ସୁବୋଧ ପାଦସବୁ ରସର ବାଧକ ନୁହଁନ୍ତି, ବରଂ ପରୋକ୍ଷରେ ନୃତ୍ୟର ସହାୟକ ହୋଇଥାନ୍ତି ।

ଲୋକଗୀତକୁ ସାମଗ୍ରିକ ଓ ବ୍ୟକ୍ତିଗତ - ଏଭଳି ଦୁଇ ଭାଗରେ ବିଭକ୍ତ କରାଯାଇପାରେ । କାରଣ କେତେକ ଗୀତ ସାମୂହିକ ଓ କେତେକ ବ୍ୟକ୍ତିଗତ ଏକାଏକା ବୋଲା ଯାଇଥାଏ । ଗୀତ ରଚନାରେ କେତେବେଳେ ସାମୂହିକ ଉଦ୍ୟମ ଥାଏ ତ କେତେବେଳେ ବ୍ୟକ୍ତିଗତ କିନ୍ତୁ ନିଶ୍ଚିନ୍ତ ଯେ ପ୍ରତିଭାଶାଳୀ ବ୍ୟକ୍ତିମାନେ ହିଁ ଲୋକଗୀତର ସ୍ରଷ୍ଟା ହୋଇଥାନ୍ତି । ଅସଂଖ୍ୟ ଲୋକ ଗୀତିକାର ପୁରୁଷ ଓ ମହିଳାଙ୍କ ମଧ୍ୟରୁ ସୁଯୋଗ ମିଳିଲେ କେତେକ କବି ଓ କବୟିତ୍ରୀ ଭାବେ ସ୍ୱୀକୃତ ହୋଇଥାନ୍ତି । ଏମାନଙ୍କ ପ୍ରତିଭାର ବାଣୀ ଗ୍ରାମଗୀତ । ଗ୍ରାମର ଅନ୍ୟ ବ୍ୟକ୍ତିମାନେ ସ୍ରଷ୍ଟା ନୁହଁନ୍ତି, ସେମାନେ କେବଳ ବାହକ ମାତ୍ର ।

ଊନବିଂଶ ଶତାବ୍ଦୀର ଶେଷ ଭାଗରେ ଓଡ଼ିଆ ଲୋକ ସାହିତ୍ୟ ସଂଗ୍ରହ ଲାଗି ଉଦ୍ୟମ ହୋଇଥିଲା । ଓଡ଼ିଶାର ତତ୍‌କାଳୀନ କମିଶନର ରେଭେନ୍ସା ସାହେବଙ୍କ ସହାୟତାରେ ପଣ୍ଡିତ କପିଳେଶ୍ୱର ଭୂଷଣ ନନ୍ଦଶର୍ମା କିଛି ଢ଼ଗ ଢ଼ମାଳୀ (ଯାହା ଲୋକଗୀତର ଅଂଶ ବିଶେଷ) ଏକତ୍ର ପ୍ରକାଶ କରିଥିଲେ । ୧୯୦୩ରେ ନୀଳମଣି ବିଦ୍ୟାରତ୍ନ କିଛି ଢ଼ଗ ଓ ଲୋକାଂଶ ସଂଗ୍ରହ କରି ପ୍ରକାଶ କରିଥିଲେ । ୧୯୧୪ରେ ଶ୍ରୀ ଭଗବାନ ହୋତାଙ୍କ ଓଡ଼ିଆ ପ୍ରବାଦମାଳା ଗ୍ରନ୍ଥ ପ୍ରକାଶିତ ହୋଇଥିଲା । ସେଇବର୍ଷ ରାଘବାନନ୍ଦ ଦାସଙ୍କ

ଦ୍ୱାରା କୃଷି ସଂପର୍କିତ କିଛି ଉକ୍ତି ସଂଗୃହୀତ ହୋଇ ପ୍ରକାଶ ପାଇଥିଲା । ଯେଉଁଥିରେ କୃଷି-ଜୀବିକାର ପ୍ରଧାନ ଉପାୟ ପାଳକ ଓ ଫଳ ଗଣନାର ବିବରଣୀ ଥିଲା । ୧୯୨୩ରେ ଅପର୍ଣ୍ଣା ପଣ୍ଡାଙ୍କ 'ଢ଼ଗମାଳିକା ତତ୍ତ୍ୱ ବୋଧିନୀ' ପୁସ୍ତକ ପ୍ରକାଶ ପାଇଥିଲା ।

ଲୋକଗୀତ ସଂଗ୍ରହ କ୍ଷେତ୍ରରେ ଶ୍ରୀ ଗୋପାଳ ଚନ୍ଦ୍ର ପ୍ରହରାଜ ପ୍ରଥମ ଅଗ୍ରଣୀ ଉଦ୍ୟମୀ ଥିଲେ । ଭାଷା-କୋଷ ପ୍ରଣୟନ ବେଳେ ମୌଳିକ ଶବ୍ଦ ଚୟନ କରୁ କରୁ ସେ ଲୋକଗୀତ ସଂଗ୍ରହରେ ଲାଗି ଯାଇଥିଲେ । କାରଣ ସେ ଆଶଙ୍କା କରୁଥିଲେ ଯେ ସଭ୍ୟତାର ପ୍ରସାର ସହିତ ଗ୍ରାମ୍ୟ ଗୀତ, ଲୋକନୃତ୍ୟର ପ୍ରଚଳିତ ବହୁ ମୌଳିକ ଶବ୍ଦ ଲୋପ ପାଇଯିବ । ତେଣୁ ସେ ଲୋକଗୀତ ସଂଗ୍ରହ ଲାଗି ଏକ ବଡ଼ ଧରଣର ଯୋଜନା ପ୍ରସ୍ତୁତ କରିଥିଲେ ।

ଓଡ଼ିଆ ଲୋକଗୀତ ସଂଗ୍ରହ ଲାଗି ୧୯୩୧ରେ ଶ୍ରୀ ଦେବେନ୍ଦ୍ର ସତ୍ୟାର୍ଥି ଓଡ଼ିଶା ଆସିଥିଲେ । ତାଙ୍କ ପ୍ରେରଣାରେ ଲୋକଗୀତ ସଂଗ୍ରହ କାର୍ଯ୍ୟ ଜୋରଦାର ହୋଇଥିଲା ଏବଂ ସେ କାର୍ଯ୍ୟରେ ଅଗ୍ରଣୀ ଥିଲେ ଚକ୍ରଧର ମହାପାତ୍ର । ୧୯୩୪ରେ ସେ 'ଗାଉଁଲୀ ଗୀତ ଚୁମ୍ବକ' ନାମକ ଏକ ପୁସ୍ତକ ପ୍ରକାଶିତ କରାଇଥିଲେ । ସେ ପୁସ୍ତକକୁ ଉଭୟ ଦେଶ ଓ ବିଦେଶରେ ଆକୃଷ୍ଟ କରାଇବାର ଉଦ୍ୟମ ହୋଇଥିଲା । ସେ ଦେବନାଗରୀ ଅକ୍ଷରରେ ସଂଗୃହୀତ ଗୀତଗୁଡ଼ିକୁ ତା'ର ଇଂରାଜୀ ଅନୁବାଦ ପ୍ରକାଶ କରିଥିଲେ । ସେ ତାଙ୍କର ସଂଗ୍ରହକୁ ଆଠ ଭାଗରେ ବିଭକ୍ତ କରିଥିଲେ । ଯଥା (କ) ବନ୍ଧୁଙ୍କ ସୁଖ-ଦୁଃଖ-ଗୀତିକା (ଖ) କିଶୋରୀଙ୍କ ମେଳ ଗୀତିକା (ଗ) ଗାଁ ପିଲାଙ୍କ ଖେଳ ଗୀତିକା (ଘ) ଗାଁ ପିଲାଙ୍କ ଢ଼ଗ (ଙ) ଗ୍ରାମ୍ୟ ବନ୍ଦନା ଗୀତ (ଚ) ପୋଥି ଗୀତିକା (ଛ) କୃଷକ ଗୀତିକା (ଜ) ପରିଶିଷ୍ଟ ଗୀତିକା ।

ଲୋକଗୀତ ସଂଗ୍ରହ କ୍ଷେତ୍ରରେ ଭାରତ ସେବକ ସମାଜର ସଭ୍ୟ ପଦ୍ମଶ୍ରୀ ଲକ୍ଷ୍ମୀ ନାରାୟଣ ସାହୁଙ୍କ ଉଦ୍ୟମ ଥିଲା ଭିନ୍ନ ପ୍ରକାରର । ସେ କନ୍ଧ, ସଉରା, ଗଣ୍ଡ, ଗଦବା, ସାନ୍ତାଳ, ପରଜା ଓ କୋୟା ଆଦି ଆଦିବାସୀ ଲୋକଙ୍କ ଗୀତଗୁଡ଼ିକୁ ସଂଗ୍ରହ କରି ଶତଦଳ ନାମକ ଏକ ପୁସ୍ତକରେ ପ୍ରକାଶ କରିଥିଲେ ।

ପରବର୍ତ୍ତୀ ଅବସ୍ଥାରେ ପ୍ରଫେସର ଡକ୍ଟର କୁଞ୍ଜବିହାରୀ ଦାସ ୧୯୪୮ରୁ ୧୯୫୩ ମଧ୍ୟରେ ପ୍ରାୟ ହଜାରେ ଲୋକଗୀତ ସଂଗ୍ରହ କରିବା ସହିତ 'ଓଡ଼ିଆ ଲୋକଗୀତ ଓ କାହାଣୀ' ଉପରେ ଗବେଷଣା କରି ଡ଼କ୍ଟରେଟ୍ ଲାଭ କରିଥିଲେ । ପ୍ରଫେସର ଡ଼ଃ କୁଞ୍ଜ ବିହାରୀ ଦାସ ତାଙ୍କ ଦ୍ୱାରା ପ୍ରକାଶିତ ପୁସ୍ତକଗୁଡ଼ିକ ହେଲା ପଲ୍ଲୀପୁଷ୍ପ (୧୯୪୮), ପଲ୍ଲୀ ଝରଣା (୧୯୫୦), ଏ ଷ୍ଟଡ଼ି ଅଫ ଓରିସାନ ଫକଲୋର (୧୯୫୩), ପଲ୍ଲୀଗୀତ ସଞ୍ଚୟନ (୧୯୫୪) ଏବଂ ଓଡ଼ିଆ ଲୋକଗୀତ ଓ କାହାଣୀ (୧୯୫୭) ।

ତା'ପରେ ଓଡ଼ିଆ ସାହିତ୍ୟ ଓ ସଭ୍ୟତା ଅଧିକରୁ ଅଧିକ ଆଗ୍ରହ ବହୁ ଭାବରେ ହ୍ରାସ ପାଇଛି । ମାତ୍ର ଉଦ୍ୟମ ସଂପୁର୍ଣ୍ଣ ଲୋପ ପାଇନାହିଁ । ଗତ ଦଶକରେ ବାଲେଶ୍ୱର ଆଡ଼ଭୋକେଟ ବିନୋଦ ଦାସଙ୍କ ଦ୍ୱାରା ସଂଗୃହୀତ ଢ଼ଗ ଢ଼ମାଳୀ ସିରିଜ୍ କାର୍ଯ୍ୟତଃ ସେ ଉଦ୍ୟମକୁ ନବଜୀବନ ଦେଇପାରିଛି ।

ଚାନ୍ଦିନୀଚୌକ, କଟକ-୨



# ଉତ୍କଳୀୟ ସଂସ୍କୃତିରେ ଲକ୍ଷ୍ମୀପୂଜା

**ଗୋଲାପ ନନ୍ଦ**

ମନୁଷ୍ୟ ଜୀବନରେ ଚାରି ପ୍ରକାର ପୁରୁଷାର୍ଥ ରହିଛି ଯାହାକୁ ଚତୁର୍ବର୍ଗ ଫଳ ବୋଲି କୁହାଯାଇଥାଏ । ତାହା ହେଲା – ଧର୍ମ, ଅର୍ଥ, କାମ, ମୋକ୍ଷ । ଦ୍ୱିତୀୟ ଫଳଟି 'ଅର୍ଥ' ଯାହାର ଅନ୍ୟ ନାମ ହୋଇଛି 'ଧନ' – ଯାହା ପ୍ରତ୍ୟେକ ବ୍ୟକ୍ତି ପାଇଁ ନିତାନ୍ତ ପ୍ରୟୋଜନ । ଏହା ସର୍ବଜନ ବିଦିତ ଯେ ଧନ ବିନା ଜୀବନ ଧାରଣ କରିବା ଅସମ୍ଭବ । ଜନ୍ମରୁ ମୃତ୍ୟୁ ପର୍ଯ୍ୟନ୍ତ ଧନର ଆବଶ୍ୟକତା ରହିଛି । ତେଣୁ ଅର୍ଥ ବ୍ୟବସ୍ଥାର ସୁଦୃଢ଼ୀକରଣ ପାଇଁ ମାଆ ଲକ୍ଷ୍ମୀଙ୍କର ଉପାସନା କରିବା ଯଥାର୍ଥତା ରହିଛି । ଅର୍ଥ ବିନା ସମସ୍ତ କାର୍ଯ୍ୟ ଅସମ୍ପୂର୍ଣ୍ଣ ରହେ, ବିନା ଅର୍ଥରେ ଧର୍ମର ଅସ୍ତିତ୍ୱ ଆଜି ଯୁଗରେ ସମ୍ଭବ ନୁହେଁ । ସେଥିପାଇଁ ପ୍ରତ୍ୟେକଙ୍କୁ ଶ୍ରୀ ସମ୍ପନ୍ନ ହେବାକୁ ପରାମର୍ଶ ଦିଆଯାଇଛି ।

ଉତ୍କଳୀୟ ସଂସ୍କୃତିରେ ଯାହା କିଛି ବୈଶିଷ୍ଟ୍ୟ ପରିଲକ୍ଷିତ ହୁଏ ତାହା ସବୁ ଶ୍ରୀଜଗନ୍ନାଥ ସଂସ୍କୃତିରୁ ଆସିଛି । ଏହାର ପ୍ରମାଣ ସ୍ୱରୂପ ଓଡ଼ିଆମାନଙ୍କ ଦ୍ୱାରା ବର୍ଷର ବିଭିନ୍ନ ସମୟରେ ପାଳିତ ହେଉଥିବା ପର୍ବପର୍ବାଣି ସବୁ ଶ୍ରୀମନ୍ଦିରରେ ମଧ୍ୟ ପାଳିତ ହୋଇଥାଏ । ଶ୍ରୀମନ୍ଦିରରେ ପୂଜିତା ମାଆ ଲକ୍ଷ୍ମୀ ଠାକୁରାଣୀ ଶ୍ରୀମନ୍ଦିର ଭଣ୍ଡାର ରୋଷଘରର ମାଲିକାଣୀ । ତାଙ୍କୁ ପୂଜା କରିବା ଦ୍ୱାରା, ତାଙ୍କର କୃପା ଦ୍ୱାରା ଶ୍ରୀମନ୍ଦିର 'ଶ୍ରୀ' ବୃଦ୍ଧି ତଥା 'ଶ୍ରୀକ୍ଷେତ୍ର'ର 'ଶ୍ରୀ' ବୃଦ୍ଧି ହୁଏ । ଧନଧାନ୍ୟ ଓ ଶ୍ରୀ ବୃଦ୍ଧି ପାଇଁ ସମସ୍ତେ ଲକ୍ଷ୍ମୀ ମାଆଙ୍କୁ ଉପାସନା, ଆରାଧନା କରିଥାନ୍ତି । ନିଜକୁ ଧର୍ମ ଭାବନାରେ ନିମଗ୍ନ କରିବା ପାଇଁ ବିଭୁ କୃପା ଓ ମାଆ ଲକ୍ଷ୍ମୀଙ୍କର କୃପାପ୍ରାପ୍ତି ପାଇଁ ବିଭିନ୍ନ ଓଷାବ୍ରତ ପାଳନର ଆବଶ୍ୟକତା ରହିଛି । ଆଧ୍ୟାତ୍ମିକତା, ନିଷ୍ଠା, ପବିତ୍ରତାର ମନ୍ତ୍ରରେ ଲୋକେ ଉଦ୍‌ବୁଦ୍ଧ ଓ ଅନୁପ୍ରାଣୀତ ହୋଇ ଓଷାବ୍ରତ ପାଳନ କରିଥାନ୍ତି । ମଣିଷ ମନର ଧର୍ମ ଭାବନା ହିଁ ପୂଜାପର୍ବକୁ ମଧୁମୟ କରିଛି ।

ପୂଜା ଏକ ମନୋବିଜ୍ଞାନ ପ୍ରକ୍ରିୟା ଯାହା ଈଶ୍ୱର ଓ ଭକ୍ତ ମଧ୍ୟରେ ଏଭଳି ଏକ ସେତୁ ନିର୍ମାଣ କରେ ଯେଉଁଥିରେ ଭକ୍ତ ବଡ଼ ବଡ଼ କଷ୍ଟରୁ ପାର ହୋଇଯାଇଥାଏ । ପଦ୍ମପୁରାଣରେ ଉଲ୍ଲେଖ ରହିଛି, ଯେଉଁ ବ୍ୟକ୍ତି ଅତ୍ୟନ୍ତ ଭକ୍ତିପୂର୍ବକ ମାଆ ମହାଲକ୍ଷ୍ମୀଙ୍କର ପୂଜା ଆରାଧନା କରନ୍ତି ସେମାନଙ୍କର ସମସ୍ତ ଦୁଃଖ–ଦାରିଦ୍ର୍ୟ, ରୋଗ, ଶୋକ ସନ୍ତାପ ଆଦି ଦୂର ହୁଏ । ସେମାନେ ପରମପଦ ଲାଭ କରନ୍ତି ।

ମାଆ ମହାଲକ୍ଷ୍ମୀଙ୍କର ପୂଜା ପରମ୍ପରା ଅତି ପ୍ରାଚୀନ । ବୈଦିକ ଯୁଗରୁ ଏ ପୂଜା ପ୍ରଥା ଚଳି ଆସିଛି ବୋଲି ପ୍ରମାଣ ରହିଛି । ମହାଲକ୍ଷ୍ମୀଙ୍କର ଶ୍ରୀସୂକ୍ତ ଯାହା ବେଦ ବର୍ଣ୍ଣିତ, ତାହା ଆର୍ଯ୍ୟଋଷିବୃନ୍ଦ ଗାନ କରିଥିବାର ଶାସ୍ତ୍ରରେ ଲିପିବଦ୍ଧ । ଅଷ୍ଟାଦଶ ପୁରାଣର ରଚୟିତା ମହର୍ଷି ବ୍ୟାସଦେବ ପଦ୍ମପୁରାଣରେ ଅତିସୁନ୍ଦର ଭାବରେ ମହାଲକ୍ଷ୍ମୀଙ୍କର ମହିମା ଗାନ କରିଛନ୍ତି । ବିଷ୍ଣୁପୁରାଣ, ପଦ୍ମପୁରାଣ, ବ୍ରହ୍ମବୈବର୍ତ୍ତ ପୁରାଣ, ଭାଗବତ ଇତ୍ୟାଦି ଅନେକ ପୁରାଣରେ ମାଆ ମହାଲକ୍ଷ୍ମୀଙ୍କର ବର୍ଣ୍ଣନା ରହିଛି ।

ଶାସ୍ତ୍ରରେ ବର୍ଣ୍ଣିତ ଯେ କୁମାର ପୂର୍ଣ୍ଣିମା ତିଥିରେ ସମୁଦ୍ର ମନ୍ଥନରୁ ଯେଉଁ ଚଉଦଟି (୧୪) ରତ୍ନ ବାହାରିଥିଲା ତାହା ମଧ୍ୟରେ ଲକ୍ଷ୍ମୀ ହିଁ ଶ୍ରେଷ୍ଠ । ତାଙ୍କୁ ପ୍ରାପ୍ତ କରିବା ପାଇଁ ତ ସମୁଦ୍ର ମନ୍ଥନର ଆବଶ୍ୟକତା । ଦୁର୍ବାସାଙ୍କ ଅଭିଶାପରୁ ଇନ୍ଦ୍ରଙ୍କଠାରୁ ଲକ୍ଷ୍ମୀ ଛାଡ଼ିଯିବାରୁ ସ୍ୱର୍ଗପୁର ଶ୍ରୀହୀନ ହେଲା । ଦେବତାମାନେ ହୀନବଳ ହୋଇ ଦୁର୍ଦ୍ଦଶା ଭୋଗ କଲେ । ଦେବତାମାନେ ବିଷ୍ଣୁଙ୍କୁ ପ୍ରାର୍ଥନା କରିବାରୁ ବିଷ୍ଣୁ ସେମାନଙ୍କୁ ଦାନବରାଜ ବଳିଙ୍କ ସହ ମିତ୍ରତା କରି ସମୁଦ୍ର ମନ୍ଥନ କରିବାକୁ ନିର୍ଦ୍ଦେଶ ଦେଲେ । ଦେବତାମାନେ ବାଧ୍ୟ ହୋଇ ଦୈତ୍ୟଙ୍କ ସହ ମିଶି ସମୁଦ୍ର ମନ୍ଥନ କରି ସାଗର ଅଧିପତି ବରୁଣଙ୍କ ପୁରରେ ଥିବା ବରୁଣ ନନ୍ଦିନୀ ଲକ୍ଷ୍ମୀଙ୍କୁ ପ୍ରାପ୍ତ ହେଲେ । ତେଣୁ ମାଆ ଲକ୍ଷ୍ମୀଙ୍କ ଅନୁପସ୍ଥିତିରେ ସ୍ୱର୍ଗରେ ଦେବତାମାନେ ମଧ୍ୟ ହତଶିରୀ ହୋଇ ଲକ୍ଷ୍ମୀଙ୍କୁ ପ୍ରାପ୍ତ କରିବାକୁ ସମୁଦ୍ର ମନ୍ଥନ ଭଳି କାର୍ଯ୍ୟ କରିଥିଲେ ।

ପଦ୍ମପୁରାଣରେ ଆହୁରି ମଧ୍ୟ ଉଲ୍ଲେଖ ରହିଛି ଯେତେବେଳେ ସୃଷ୍ଟି ସର୍ଜନା ହେଲା ଚଉଦ ଭୁବନରେ ଜୀବଜନ୍ତୁଙ୍କ ପାଇଁ ଖାଦ୍ୟର ଆବଶ୍ୟକତା ପଡ଼ିବାରୁ ବ୍ରହ୍ମାଙ୍କ ଅନୁରୋଧରେ ଭୃଗୁ ଋଷି ପ୍ରାର୍ଥନା କରିବାରୁ ମାଆ ମହାଲକ୍ଷ୍ମୀ ତାଙ୍କ କନ୍ୟା ଭାବେ ତାଙ୍କ କୋଳରେ ଆବିର୍ଭାବ ହୋଇ ଜୀବ ଜଗତକୁ ରକ୍ଷା କରିଥିଲେ । ମହାଲକ୍ଷ୍ମୀଙ୍କର ମହିମା ବର୍ଣ୍ଣନା କରିବାକୁ ଯାଇ ଶଙ୍କର ଭଗବାନ ମାଆ ପାର୍ବତୀଙ୍କୁ କହିଛନ୍ତି ଯେ ଲକ୍ଷ୍ମୀଙ୍କ କୃପା ପ୍ରାପ୍ତି ହେବାକୁ ପ୍ରଥମେ ନିଜେ ନାରାୟଣ ବୈକୁଣ୍ଠରେ ପୂଜା କରିଥିଲେ । ଦ୍ୱିତୀୟରେ ବ୍ରହ୍ମା ପୂଜିଲେ ଏବଂ ତୃତୀୟରେ ମୁଁ ନିଜେ (ଶଙ୍କର) ପୂଜିଲି । ଚତୁର୍ଥରେ ସ୍ୱାୟମ୍ଭୁବ ମନୁ, ପଞ୍ଚମରେ ଋଷିଗଣ, ଷଷ୍ଠରେ ମୁନିଗଣ, ସପ୍ତମରେ ସାଧୁସନ୍ଥ, ଅଷ୍ଟମରେ ଗୃହୀଜନ, ନବମରେ ଗନ୍ଧର୍ବଗଣ, ଦଶମରେ ଯକ୍ଷଗଣ, ଏକାଦଶରେ ରକ୍ଷମାନେ, ଦ୍ୱାଦଶରେ ବିଶ୍ୱଦେବା, ତ୍ରୟୋଦଶରେ ଗୁହ୍ୟକଗଣ, ଚତୁର୍ଦ୍ଦଶରେ ଚାରଣମାନେ, ପଞ୍ଚଦଶରେ ପାତାଳବାସୀମାନେ – ଏହିପରି କ୍ରମେ କ୍ରମେ ସମସ୍ତେ ମାଆ ଲକ୍ଷ୍ମୀଙ୍କର ପୂଜା କରିବାକୁ ଲାଗିଲେ ।

ଯେଉଁଠି ମାଆ ଲକ୍ଷ୍ମୀ ସର୍ବଦା ବରଦା ହୁଅନ୍ତି ସେଠି ଧନ ସମ୍ପଦ, ଐଶ୍ୱର୍ଯ୍ୟ ସମୃଦ୍ଧି ହୋଇଥାଏ । ସୁଖସମୃଦ୍ଧି ପ୍ରଦାୟିନୀ ମା'ଲକ୍ଷ୍ମୀ ନିଜେ 'ଶ୍ରୀଦେବୀ' ଓ 'ଭୂଦେବୀ' ଅଟନ୍ତି । ସମ୍ପୂର୍ଣ୍ଣ ଜଗତର ଅଧିଷ୍ଠାତ୍ରୀ ଦେବୀ ମା' କୃପାମୟୀ ଲକ୍ଷ୍ମୀ ବୁଦ୍ଧି ପ୍ରଦାୟିନୀ ଓ ସର୍ବ ମଙ୍ଗଳକାରିଣୀ ଅଟନ୍ତି । ତାଙ୍କରି କୃପା ପ୍ରାପ୍ତ ହେବା ପାଇଁ ସନ୍ତାନଟିଏ ପ୍ରାର୍ଥନା କରିଥାଏ –

ଲକ୍ଷ୍ମୀ ପଦ୍ମାଳୟା ପଦ୍ମା କମଳା ଶ୍ରୀ ହରିପ୍ରିୟା
ଇନ୍ଦିରା ଲୋକମାତା ମା' କ୍ଷୀରାବ୍ଧିତନୟା ରମା ।

ମାଆ ଭଗବତୀ ଲକ୍ଷ୍ମୀ କେବଳ ଧନପ୍ରଦାୟିନୀ ନୁହନ୍ତି, ସେ ଯଶ, ଗୌରବ, ବିଜୟ ଭକ୍ତିମୁକ୍ତି, ଆୟୁ ପ୍ରଦାୟିନୀ, ଶତ୍ରୁ ବିନାଶିନୀ ମଧ୍ୟ ଅଟନ୍ତି । ମହାଲକ୍ଷ୍ମୀ ସନ୍ତୋଷ ହେଲେ ମାନସିକ ସୁଖଶାନ୍ତି, ଶରୀରର ଶ୍ରୀବୃଦ୍ଧି, କାନ୍ତି, ଓଜ, ତେଜ, ବଳ, ସାହସ, ସୌନ୍ଦର୍ଯ୍ୟ, ମନୋବିନୋଦ, ମିତ୍ରସୁଖ ଏବଂ ଚାରିପୁରୁଷାର୍ଥ ପ୍ରାପ୍ତ ହୋଇଥାଏ । ମାନବ ଜୀବନକୁ ସାର୍ଥକ କରିବାକୁ ଓ ସଫଳ କରିବାକୁ ହେଲେ ମାଆ ଲକ୍ଷ୍ମୀଙ୍କର କୃପା ପ୍ରାପ୍ତି କରିବା ଆବଶ୍ୟକ ।

ମାଆଲକ୍ଷ୍ମୀଙ୍କ କୋପରୁ କେହି ନିସ୍ତାର ପାଇନାହାନ୍ତି । ଧନେଶ୍ୱର ସାଧବ ମହାଲକ୍ଷ୍ମୀଙ୍କୁ ଅବଜ୍ଞା କରିବାରୁ ତାଙ୍କ ଜୀବନରେ ଦୁଃଖଦୁର୍ଦ୍ଦଶା ମାଡ଼ି ଆସିଲା ଏବଂ ସେ ଶ୍ରମିକଭାବେ ମୂଲ ଲାଗିବାକୁ ଗଲେ– ଏକଥା ପଦ୍ମପୁରାଣରେ ଉଲ୍ଲେଖ ରହିଛି । 'ମହାଭାରତ'ରେ ବର୍ଣ୍ଣିତ ଯେ କୁରୁରାଜ ଦୁର୍ଯ୍ୟୋଧନ ଯିଏ ଦଶମହାବିଦ୍ୟାର 'କମଳା'ଙ୍କୁ ସାଧନା କରି ତାଙ୍କ କୃପା ଲାଭ କରିଥିଲେ ଯା'ଦ୍ୱାରା ସେ ମୃତ୍ତିକାକୁ ସ୍ପର୍ଶ କଲେ ତାହା ସୁବର୍ଣ୍ଣରେ ପରିଣତ ହେଉଥିଲା । କିନ୍ତୁ ଶେଷ ସମୟରେ ମାଆଲକ୍ଷ୍ମୀଙ୍କୁ ଅବମାନନା କରିବାରୁ ମୃତ୍ୟୁ ଦଣ୍ଡ ଭୋଗିଲେ । ପୌରାଣିକ କିମ୍ବଦନ୍ତୀ ଅନୁଯାୟୀ ଇନ୍ଦ୍ର ଦୁର୍ବାସାଙ୍କୁ ହେୟଜ୍ଞାନ କରିବାରୁ ସ୍ୱର୍ଗପୁର ଶ୍ରୀହୀନ ହେଲା । ସ୍ୱୟଂ ଜଗନ୍ନାଥ ଏବଂ ପ୍ରଭୁ ବଳଭଦ୍ର ମାଲକ୍ଷ୍ମୀଙ୍କ କୋପରୁ ବହୁ କଷ୍ଟ ପାଇଥିବାର 'ମାଣବସା ଲକ୍ଷ୍ମୀପୁରାଣ' ବହିରେ ମହାପୁରୁଷ ବଳରାମ ଦାସ ଲେଖିଛନ୍ତି ।

ଭଗବାନଙ୍କର ଅତି ପ୍ରିୟ ମାସ ହେଉଛି ମାର୍ଗଶିର– ଗୀତାରେ ଭଗବାନ କହିଛନ୍ତି 'ମାସାନ୍ ମାର୍ଗଶିରସ୍ମିଂ' । ଏ ମାସଟି ମାଆ ଲକ୍ଷ୍ମୀଙ୍କର ମଧ୍ୟ ଅତି ପ୍ରିୟ ମାସ । ତା' ମଧ୍ୟରୁ ଗୁରୁବାର ଦିନ ହେଉଛି ମାଆ ଲକ୍ଷ୍ମୀଙ୍କର ପ୍ରିୟବାର । ମାର୍ଗଶୀର ଗୁରୁବାରମାନଙ୍କରେ ମାଆ ଲକ୍ଷ୍ମୀଙ୍କର ପୂଜା ହୁଏ । ମାର୍ଗଶିର ମାସରେ ଧାନ ଅମଳ କରାଯାଏ । ସେହି ନୂଆ ଧାନରେ ବେଣୀ ପ୍ରସ୍ତୁତ କରି ନୂଆ ଧାନକୁ ପୂଜା କରାଯାଏ । ଏହି ପୂଜା ନାରୀମାନଙ୍କର ଅତ୍ୟନ୍ତ ପୁଣ୍ୟ । ନାରୀମାନେ ଭକ୍ତି ଓ ନିଷ୍ଠାର ସହିତ ଉପଯୁକ୍ତ ବିଧିବିଧାନ ଅନୁସାରେ ଘରଦ୍ୱାର ଲିପାପୋଛା କରି, ପଦ୍ମର ଚିତା ଓ ଲକ୍ଷ୍ମୀପାଦ ଝୋଟି ପକାଇ ଧୂପ, ଦୀପ ଜାଳି ଭୋଗ ନୈବେଦ୍ୟ କରନ୍ତି । ସୁବାସିତ ଅନ୍ନ ବ୍ୟଞ୍ଜନ, ମଣ୍ଡାପିଠା, ଦହିଭାତ, କ୍ଷିରୀ, ଶାଗ, ଆମ୍ବିଳ, ପିଠାପଣା ଆଦି ପୂଜା କରନ୍ତି । ଲକ୍ଷ୍ମୀଙ୍କ ପୁରାଣ ପଢ଼ନ୍ତି ଓ ଶୁଣନ୍ତି । ଘରେ ଶଙ୍ଖ, ହୁଳହୁଳି ଶବ୍ଦରେ ଏକ ସୁନ୍ଦର ଆନନ୍ଦମୟ ବାତାବରଣ ସୃଷ୍ଟି ହୁଏ ।

ପଞ୍ଚଦଶ ଶତାବ୍ଦୀର କବି ବଳରାମ ଦାସ ତାଙ୍କ ରଚିତ 'ଲକ୍ଷ୍ମୀପୁରଣ'ରେ ସୁନ୍ଦର ଭାବେ ମାଆ ଲକ୍ଷ୍ମୀଙ୍କର ମହିମା ବର୍ଣ୍ଣନା କରିଛନ୍ତି । ଏଥିରେ ବର୍ଣ୍ଣିତ ମାଣଓଷାର ପ୍ରଧାନ ବୈଶିଷ୍ଟ୍ୟ ହେଲା –

୧. ଧର୍ମଭାବନା ମନରେ ଜାଗ୍ରତ ହୁଏ – ମାଆଲକ୍ଷ୍ମୀଙ୍କର ପୂଜା ଆରାଧନା କରିବା ଦ୍ୱାରା ।

୨. କୃଷିଭିତ୍ତିକ ପର୍ବ ଭାବେ କୃଷିକୁ ପ୍ରାଧାନ୍ୟ ଦେବା– ଧାନ, ଚାଉଳକୁ ପୂଜା କରିବା । ତା'ଦ୍ୱାରା ଚାଷ ପାଇଁ ପ୍ରେରଣା ମିଳେ ।

୩. ସମାଜରେ ନାରୀକୁ ସମ୍ମାନ ଦେବା – ନାରୀ ବିନା ପୁରୁଷର ଅସାମର୍ଥ୍ୟ ପ୍ରକାଶ ପାଇଛି ଏ ପୁରାଣରେ । ସ୍ୱୟଂ ଭଗବାନ ମଧ୍ୟ ତାଙ୍କ ଶକ୍ତି ନିକଟରେ ଆତ୍ମସମର୍ପଣ କରିଛନ୍ତି ।

୪. ଛୁଆଁଅଛୁଆଁ ଭେଦଭାବକୁ ବିରୋଧ କରି ମାଆଲକ୍ଷ୍ମୀ ତା' ବିରୋଧରେ ସ୍ୱର ଉତ୍ତୋଳନ କରିଛନ୍ତି । ଜଗତର ପଡ଼ିଦାତ୍ରୀ ଅନ୍ନଦାତ୍ରୀ ମାଆଲକ୍ଷ୍ମୀ ଯେତେବେଳେ ପ୍ରଭୁଙ୍କଠାରୁ ଅନୁମତି ନେଇ ନଗର ଭ୍ରମଣ କରିବାକୁ ଗଲେ ସେତେବେଳେ ଚଣ୍ଡାଳ ସାହିରେ ଥିବା ଶ୍ରେଷ୍ଠ ଭକ୍ତ ଶ୍ରୀୟା ଚଣ୍ଡାଳୁଣୀର ଭକ୍ତିରେ, ଶୁଦ୍ଧ ପବିତ୍ରତାରେ ତା' ଆଚାର ବ୍ୟବହାରରେ ସନ୍ତୁଷ୍ଟ ହୋଇ ମାଆ ତା' ଘରେ ଉଭା ହୋଇ ତା'ଠାରୁ ପୂଜା ଗ୍ରହଣ କରି ତାକୁ ଅଶେଷ ବର ପ୍ରଦାନ କରି ମନ୍ଦିରକୁ ଫେରିବାବେଳେ ପ୍ରଭୁ ଜଗନ୍ନାଥ ବିରୋଧ କରିଥିଲେ । ଶ୍ରୀମନ୍ଦିରର ମୁରବୀ ତାଙ୍କ ଦେଢ଼ଶୂର ବଳଭଦ୍ରଙ୍କର କଡ଼ା ନିର୍ଦ୍ଦେଶ ଲକ୍ଷ୍ମୀ ଛୁଆଁ, ସେ ବିଟାଳ ହୋଇଛନ୍ତି । ତେଣୁ ତାଙ୍କୁ ତ୍ୟାଗ କରିବା ସମୀଚୀନ । ସ୍ୱାମୀଙ୍କ ଦ୍ୱାରା ପରିତ୍ୟକ୍ତା ଶକ୍ତି ସ୍ୱରୂପିଣୀ ମହାଲକ୍ଷ୍ମୀ ଯୁଗେ ଯୁଗେ ନାରୀ ସ୍ୱାଧୀନତାର ଓ ସ୍ୱାଭିମାନକୁ ଅକ୍ଷୁଣ୍ଣ ରଖିବା ପାଇଁ ସମୁଦ୍ର କୂଳରେ ଉଆସ ତିଆରି କରି ବେତାଳଙ୍କ ସହାୟତାରେ ଶ୍ରୀମନ୍ଦିରକୁ ଶ୍ରୀହୀନ କରିଛନ୍ତି । ମହାଲକ୍ଷ୍ମୀଙ୍କ ଅଭିଶାପରେ ଦୁଇଭାଇ ଭିକ୍ଷୁକ ବ୍ରାହ୍ମଣ ହୋଇ କ୍ଷୁଧା ତୃଷ୍ଣା ନିବାରଣ ପାଇଁ ଦ୍ୱାର ଦ୍ୱାର ବୁଲି ଭିକ୍ଷା ମାଗିଛନ୍ତି । ଶେଷରେ ଲକ୍ଷ୍ମୀଙ୍କ ଉଆସରେ ପହଞ୍ଚି ନିଜର କ୍ଷୁଧା ମେଣ୍ଟାଇଛନ୍ତି ଏବଂ ନିଜର ଅସାମର୍ଥ୍ୟତାକୁ ପ୍ରକାଶ କରିଛନ୍ତି । ପୁରୁଷ ପ୍ରଧାନ ସମାଜରେ ପୁରୁଷ ପଣିଆର ଅହଂକାରକୁ ଭାଙ୍ଗି ଦେଇ ନାରୀକୁ ସମାଜର ମାତୃସ୍ୱରୂପା, ଶକ୍ତିସ୍ୱରୂପା ଭାବେ ମର୍ଯ୍ୟାଦା ମିଳିପାରିଛି । ଛୁଆଁଅଛୁଆଁ ଭେଦଭାବକୁ ଦୂରେଇ ମହାପ୍ରସାଦକୁ ଆଚାଣ୍ଡାଳ ବ୍ରାହ୍ମଣ ଏକତ୍ର ଖାଇବେ– ଏହି ସର୍ତ୍ତଟି ସେଦିନ ମହାଲକ୍ଷ୍ମୀ ପ୍ରଭୁ ଜଗନ୍ନାଥଙ୍କ ନିକଟରେ ରଖିଛନ୍ତି –

ଜଗତମାତା ବୋଇଲେ ତୁମେ କର ସତ୍ୟ
ଚାଣ୍ଡାଳୁ ବ୍ରାହ୍ମଣ ଯାଏଁ ଖୁଆଖୋଇ ହେବେ
ସମସ୍ତେ ଖାଇଣ ହସ୍ତ ଜଳେ ନ ଧୋଇବେ
ହାଡ଼ିର ହସ୍ତୁ ବ୍ରାହ୍ମଣ ଛଡ଼ାଇ ଖାଇବେ
ବ୍ରାହ୍ମଣ ଖାଇ ହସ୍ତୁକୁ ମୁଣ୍ଡରେ ପୋଛିବେ ।

ଶେଷରେ ଜଗନ୍ନାଥଙ୍କୁ ଶ୍ରୀମନ୍ଦିରକୁ ଫେରାଇଛନ୍ତି ମାଆ ମହାଲକ୍ଷ୍ମୀ । ଏହି ସଂକ୍ଷିପ୍ତ ବିଷୟବସ୍ତୁ ଭିତରେ ରହିଛି ନାରୀ ପାଇଁ ଅନେକ ନୀତିଶିକ୍ଷା ଯାହା ତା'ର

ଜୀବନକୁ ସଂସ୍କାରିତ କରିପାରିବ । ନିଜେ ମହାଲକ୍ଷ୍ମୀ ସାଧବାଣୀକୁ ଉପଦେଶ ଦେଇ କହୁଛନ୍ତି –

ଗୁରୁବାର ଯେଉଁ ନାରୀ ପିଲାଙ୍କୁ ମାରଇ
କିବା ପାକହାଣ୍ଡି ଧୋଇ କଳା ନ ଛଡ଼ାଇ
ସନ୍ଧ୍ୟା ଗଡ଼ିଗଲେ ଯେ ଦିଅଇ ସଂଧ୍ୟାବତୀ
ଧନପୁତ୍ର ହାନି ହୁଏ ସଦା ହୁଏ କ୍ଷତି
ଗୁରୁବାରେ ଯେଉଁ ନାରୀ ପୋଡ଼ା ଦ୍ରବ୍ୟ ଖାଏ
ଶୋଇବା ଶଯ୍ୟାକୁ ବଙ୍କା କରିଣ ବିଛାଏ ।

ଆହୁରି ମଧ୍ୟ ଗୁରୁବାରରେ ଆମିଷ ଖାଇବା, ତେଲ ନ ଲଗାଇବା, କାହାର ଉଚ୍ଛିଷ୍ଟ ଖାଇବା, ଲାଉ ସହିତ ଏକତ୍ର ଆମିଷ ଖାଇବା, ଗୁରୁବାର ଦିନ ନାପିତ ଘରକୁ ଯାଇ କ୍ଷୌର ହେବା, ଭୋଜନ ସମୟରେ ଭୂମିରେ ଅନ୍ନ ପକାଇବା ଇତ୍ୟାଦି ବାରଣ କରାଯାଇଛି । ଗୁରୁବାର ଦିନମାନଙ୍କରେ ଲକ୍ଷ୍ମୀଙ୍କ ପ୍ରତି ଭକ୍ତିଭାବ ରଖି ଅନୁଚିତ କର୍ମମାନଙ୍କୁ ତ୍ୟାଗ କରି ସୁସଂସ୍କାରିତ ହୋଇ ରହିଲେ ଲକ୍ଷ୍ମୀ ମାଆଙ୍କ କୃପା ନିଶ୍ଚୟ ପ୍ରାପ୍ତି ହୋଇପାରିବ ।

ମାଆ ଲକ୍ଷ୍ମୀଙ୍କର ଅନ୍ୟ ଏକ ପ୍ରିୟ ବ୍ରତ ହୋଇଛି 'ସୁଦଶା ବ୍ରତ' । 'ପଦ୍ମପୁରାଣ'ରେ ଉଲ୍ଲେଖ ରହିଛି ଯେ ବର୍ଷର ଯେକୌଣସି ମାସରେ ଗୁରୁବାର ଦିନ ଶୁକ୍ଳଦଶମୀ ପଡ଼ିଲେ ସେ ଦିନ ସୁଦଶା ବ୍ରତ ହୁଏ । ଏହି ପବିତ୍ର ବ୍ରତ ବିଷୟରେ ମାଆ ପାର୍ବତୀ ଜାଣିବାକୁ ଚାହିଁବାରୁ ଭଗବାନ ଶଙ୍କର ତାଙ୍କୁ ରାଜା ବିକ୍ରମବାନ କିପରି ଲକ୍ଷ୍ମୀବ୍ରତକୁ ଅବହେଳା କରି ଦୁଃଖଦୁର୍ଦ୍ଦଶା ଭୋଗିଲେ ଏବଂ ପରେ ପୁଣି ସୁଦଶାବ୍ରତ କରି ନିଜ ସୁଖ ସୌଭାଗ୍ୟକୁ ଫେରିପାଇଥିଲେ ତାହା ବୁଝାଇ କହିଛନ୍ତି । ଏହି ସୁଦଶାବ୍ରତ କଲାବେଳେ ନାରୀମାନେ ଲକ୍ଷ୍ମୀଙ୍କ ନାମରେ ଗୋଟିଏ ବ୍ରତ ଡୋର ନିଜ ବାହୁରେ ବାନ୍ଧନ୍ତି । ଏଥିରେ ଲକ୍ଷ୍ମୀଙ୍କର ଦଶଟି ନାମରେ ଦଶଟି ଗଣ୍ଠି ପକାଇ ପୂଜା କରାଯାଏ । ଧୂପଦୀପ, ନୈବେଦ୍ୟ ପ୍ରଦାନ କରି ବ୍ରତ କଥା ଶୁଣି ଭକ୍ତି ଚିତ୍ତରେ ବ୍ରତ ଆଚରଣ କଲେ ବହୁପୁଣ୍ୟ ଫଳ ମିଳେ ବୋଲି ବିଶ୍ୱାସ ରହିଛି ।

ଉତ୍କଳୀୟ ସଂସ୍କୃତିରେ ଧର୍ମୀୟ ଭାବନାରେ ପୂଜାବ୍ରତ ଆଧାରରେ ଲକ୍ଷ୍ମୀ ପୂଜାର ସ୍ଥାନ ହେଉଛି ଶ୍ରେଷ୍ଠ । କୁମାର ପୂର୍ଣ୍ଣିମା ତିଥିରେ ମାଆ ମହାଲକ୍ଷ୍ମୀଙ୍କର ଆବିର୍ଭାବ ହୋଇଥିବାରୁ ଓଡ଼ିଶାର ପୁରପଲ୍ଲୀରେ ଗଜଲକ୍ଷ୍ମୀ ପୂଜା କରାଯାଏ । କାର୍ତ୍ତିକ ଅମାବାସ୍ୟାରେ ଦୀପାବଳି ରାତ୍ରିରେ ମଧ୍ୟ ଲକ୍ଷ୍ମୀପୂଜା ସର୍ବଶ୍ରେଷ୍ଠ ବୋଲି ଶାସ୍ତ୍ରରେ ଉଲ୍ଲେଖ କରାଯାଇଛି । ଧର୍ମାଚରଣ ତଥା ନୀତିନିୟମରେ ଶୁଦ୍ଧାଚାରରେ ରହି ନିଜ ପରିଶ୍ରମ ମାଧ୍ୟମରେ ଧନସଂପଦ, ସୁଖସୌଭାଗ୍ୟ ଇତ୍ୟାଦି ଲକ୍ଷ୍ମୀଙ୍କ କୃପାରୁ ଲାଭ କରିପାରିବ । ଯେତେଦିନ ଯାଏଁ ପୃଥିବୀରେ ପ୍ରାଣୀ ରହିଥିବେ ମନୁଷ୍ୟ ମନରେ ଧନ ଓ ଅନ୍ନର ଚିନ୍ତା ରହିଥିବ, ସେତେଦିନ ଯାଏଁ ମା'ଭଗବତୀ ଲକ୍ଷ୍ମୀଙ୍କର ପୂଜା ଉପାସନା ଲାଗି ରହିଥିବ ।

ଘର ନଂ– ୧ବି–୨୦
ଦେଉଳବେଢ଼ା କଲୋନୀ
ତାଳଚେର, ପିନ୍– ୭୫୯୧୦୨



# ପ୍ରାତଃ ସ୍ମରଣୀୟଃ ପ୍ରତାପ ଚନ୍ଦ୍ର ମହାନ୍ତି

**ସଚ୍ଚିଦାନନ୍ଦ ବେହେରା**

ଝଙ୍କଡ଼ ମାଟିର ଗର୍ବ ଓ ଗୌରବ ପ୍ରାତଃ ସ୍ମରଣୀୟ ପ୍ରତାପ ଚନ୍ଦ୍ର ମହାନ୍ତି ୧୯୨୦ ମସିହା ଅକ୍ଟୋବର ୨୩ ତାରିଖରେ ଜଗତସିଂହପୁର ଜିଲ୍ଲାର କନକପୁର ଶାସନ ଅନ୍ତର୍ଗତ ମୋହନପୁର ଗ୍ରାମରେ ପିତା-ଭାଗବତ ମହାନ୍ତି ଓ ମାତା ନୂପୁରମଣିଙ୍କ କୋଳମଣ୍ଡନ କରିଥିଲେ । ସାରଦା ଏକାଡେମୀରୁ ସ୍କୁଲ ଶିକ୍ଷା ଶେଷ କରି ସେ ରେଭେନ୍ସା କଲେଜ୍‌ରେ ଅଧ୍ୟୟନ କରିଥିଲେ । ବି.ଏ. ପଢ଼ିବା ସମୟରେ ରେଭେନ୍ସାରେ ସେହି ବର୍ଷ ଓଡ଼ିଆ ଅନର୍ସ ଶ୍ରେଣୀ ଖୋଲିଥିଲା । ସେ ଓଡ଼ିଆ ଅନର୍ସ ରଖି ସ୍ନାତକ ଉତ୍ତୀର୍ଣ୍ଣ ହୋଇଥିଲେ ଏବଂ ପରେ ରାଜ୍ୟ ଯୋଗାଣ ବିଭାଗରେ ନିଯୁକ୍ତି ପାଇଥିଲେ ମଧ୍ୟ କିଛି ଦିନ ପରେ ଚାକିରି ଛାଡ଼ି ଦେଇଥିଲେ । ଜୀବନରେ ଏମିତି ମୁହୂର୍ତ୍ତଟିଏ ଆସେ ଯାହା ତାଙ୍କ ସମଗ୍ର ଜୀବନରେ ଅଲିଭା ଓ ଅଭୁଲା ସ୍ମୃତି ହୋଇ ରହିଯାଇଥାଏ । ତିର୍ତ୍ତୋଲ ଅଞ୍ଚଳର ତତ୍‌କାଳୀନ ଧନାଢ଼୍ୟ ବ୍ୟକ୍ତି ଶ୍ରୀ ପାତିରାମ ପରିଜାଙ୍କ କନ୍ୟା ଚାରୁବାଳା ପରିଜାଙ୍କ ସହିତ ବିବାହ ସଂପନ୍ନ ପରେ ତାଙ୍କର ରାଜନୈତିକ କର୍ମମୟ ଜୀବନ ଆରମ୍ଭ ହୁଏ । ସେ ଜନତା ଦଳରେ ଯୋଗଦାନ କରି ତିର୍ତ୍ତୋଲ ବିଧାନସଭା ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇଥିଲେ । ରାଜସ୍ୱ, ଜଳସେଚନ, ଶକ୍ତି, ବାଣିଜ୍ୟ ଓ ପରିବହନ, ଶିକ୍ଷା ଓ ଯୁବବ୍ୟାପାର ବିଭାଗମାନଙ୍କରେ କ୍ୟାବିନେଟ୍ ମନ୍ତ୍ରୀ ଭାବରେ ଦାୟିତ୍ୱ ତୁଲାଇ ଥିଲେ । ତିର୍ତ୍ତୋଲ ନିର୍ବାଚନ ମଣ୍ଡଳୀରୁ ସେ ୪ଥର ଓଡ଼ିଶାର ବିଧାନସଭାକୁ ନିର୍ବାଚିତ ହୋଇଥିଲେ । ପ୍ରତାପ ବାବୁଙ୍କ ସରଳ ସ୍ୱଭାବ ଏବଂ ଲୋକପ୍ରିୟତା ସମଗ୍ର ରାଜ୍ୟରେ ଚର୍ଚ୍ଚାର କେନ୍ଦ୍ରବିନ୍ଦୁ ପାଲଟି ଯାଇଥିଲା । ସେ ଏକାଧାରରେ ଜଣେ ସମାଜସେବୀ, ସାହିତ୍ୟ ସାଧକ, ସଂସ୍କୃତିର ପୃଷ୍ଠପୋଷକ ଏବଂ ବିଚକ୍ଷଣ ରାଜନୈତିକ ନେତା ଥିଲେ । ସେ ବହୁ ଗୁରୁତ୍ୱପୂର୍ଣ୍ଣ ବିଭାଗର ଦାୟିତ୍ୱରେ ରହି ନିଜର ସ୍ୱତନ୍ତ୍ର ପରିଚୟ ସୃଷ୍ଟି କରିଯାଇଛନ୍ତି ।

୧୯୫୭ ମସିହା ଡିସେମ୍ବର ୯ ତାରିଖରୁ ୧୯୬୬ ମସିହା ଅକ୍ଟୋବର ୨୬ ତାରିଖ ପର୍ଯ୍ୟନ୍ତ ଜଗତସିଂହପୁର ଅଧିଷ୍ଠାତ୍ରୀ ଦେବୀ ମା'ଶାରଳା ମନ୍ଦିର ଟ୍ରଷ୍ଟର ସଭାପତି ଦାୟିତ୍ୱ ତୁଲାଇଥିଲେ । ଭାରତର ଜରୁରିକାଳୀନ ପରିସ୍ଥିତି ସମୟରେ ପ୍ରତାପ ଚନ୍ଦ୍ର ମହାନ୍ତିଙ୍କୁ ଆଭ୍ୟନ୍ତରୀଣ ନିରପତ୍ତା (ମିସା) ଆଇନ ଅଧୀନରେ ଗିରଫ କରାଯାଇଥିଲା ଏବଂ ଏକ ବର୍ଷ ପର୍ଯ୍ୟନ୍ତ ତାଙ୍କୁ କାରାବରଣ କରିବାକୁ ପଡ଼ିଥିଲା ।

**କିଛି ସ୍ମୃତି**

କାରାବରଣ ପରବର୍ତ୍ତୀ ସମୟରେ ଓଡ଼ିଶାର ପ୍ରବାଦପୁରୁଷ ବିଜୁ ପଟ୍ଟନାୟକ ମା'ଶାରଳାଙ୍କ ଦର୍ଶନ ନିମନ୍ତେ ଆସିଥିଲେ । ତାଙ୍କର ଦୁଇ ପାର୍ଶ୍ୱରେ ଥିଲେ ପୂର୍ବତନ ମନ୍ତ୍ରୀ ପ୍ରତାପ ଚନ୍ଦ୍ର ମହାନ୍ତି ଏବଂ ପୂର୍ବତନ ମନ୍ତ୍ରୀ ଡ. ଦାମୋଦର ରାଉତ । ହଠାତ୍ ଆରମ୍ଭ ହୋଇଗଲା ଏକ ବିରାଟ ପଟୁଆର ଓ ଶୋଭାଯାତ୍ରା । ଶାରଳାପୀଠ ସଙ୍ଗେ ସଙ୍ଗେ ଲୋକାରଣ୍ୟ ହୋଇଗଲା । ଏହି ପଟୁଆର

ଶୋଭାଯାତ୍ରା ଥିଲା ଶାରଳା ପୀଠଠାରୁ ମଣିଜଙ୍ଗା ପର୍ଯ୍ୟନ୍ତ । ଅତିଥିଙ୍କ ସମେତ ଜନସାଧାରଣ ମଣିଜଙ୍ଗାରେ ପହଞ୍ଚିବା ମାତ୍ରେ ପ୍ରତାପ ବାବୁ ଆରମ୍ଭ କଲେ ତାଙ୍କର ସ୍ୱାଗତ ଭାଷଣ । ରୁଣ୍ଡ ହୋଇଥିବା ସମସ୍ତ ଜନସାଧାରଣଙ୍କ ଆଖିରେ ଲୁହ । ଚାତକ ହୋଇ ଚାହିଁ ରହିଥିଲେ ପ୍ରତାପ ବାବୁଙ୍କ ମୁହଁକୁ । ଏହିପରି ଅନେକ ଥର ତାଙ୍କର ଭାଷଣରେ ମନ୍ତ୍ରମୁଗ୍ଧ ହୋଇଯାଇଥିଲେ ଜନସାଧାରଣ ।

**ଆଉ ଏକ ଦିନକର ଘଟଣା:** ମାଘ ସପ୍ତମୀ–ଶାରଳା ପୀଠରେ ଆଦିକବି ସାରଳା ଦାସଙ୍କ ଶ୍ରାଦ୍ଧ ଉତ୍ସବ ପ୍ରତାପ ଚନ୍ଦ୍ର ମହାନ୍ତିଙ୍କ ସଭାପତିତ୍ୱରେ ଅନୁଷ୍ଠିତ ହେଉଥାଏ । ମୁଖ୍ୟବକ୍ତା ପ୍ରଫେସର ଗୌରୀକୁମାର ବ୍ରହ୍ମା ତାଙ୍କ ଭାଷଣ ପ୍ରସଙ୍ଗରେ ପ୍ରଶ୍ନ କଲେ, 'ଏହା ବିଦ୍ୟାଦାୟିନୀ ମା'ଶାରଳାଙ୍କ ପୀଠ । ଆଦିକବି ସାରଳା ଦାସ 'ମହାଭାରତ'ରେ ଯେଉଁ ପର୍ବ ଶବ୍ଦ ଉଲ୍ଲେଖ କରିଛନ୍ତି, ତାହା କେଉଁ ଶବ୍ଦରୁ ଆସିଛି ? ବିଚଳିତ ହୋଇ ପଡ଼ିଲେ ସଭାପତି, ଅପେକ୍ଷା କରିଥାନ୍ତି କେତେବେଳେ ସରିବ ମୁଖ୍ୟବକ୍ତାଙ୍କ ଭାଷଣ ? ଚାହୁଁ ଚାହୁଁ ସରିଲା ମୁଖ୍ୟବକ୍ତାଙ୍କ ଭାଷଣ । ସଭାପତି ପ୍ରତାପ ଚନ୍ଦ୍ର ମହାନ୍ତି, ମୁଖ୍ୟବକ୍ତା ପ୍ରଫେସର ବ୍ରହ୍ମାଙ୍କ ପ୍ରଶ୍ନର ଉତ୍ତରକୁ ସ୍ପଷ୍ଟ ଭାବେ ବୁଝାଇଥିଲେ ଏବଂ ପରେ ଶିକ୍ଷା, ସଂସ୍କୃତି ଓ ପରମ୍ପରା ଉପରେ ଓଜସ୍ୱିନୀ ଭାଷଣ ପ୍ରଦାନ କରି ସମସ୍ତଙ୍କୁ ସ୍ତବ୍ଧ କରିଦେଇଥିଲେ ଏବଂ କହିଲେ ମୁଁ ରେଭେନ୍ସାର ପ୍ରଥମ ଓଡ଼ିଆ ଅନର୍ସ ଛାତ୍ର । ଡକ୍ଟର ଆର୍ତ୍ତବଲ୍ଲଭ ମହାନ୍ତିଙ୍କ ଛାତ୍ର । ବାସ୍ତବରେ ପ୍ରତାପବାବୁ ଥିଲେ ପ୍ରଜ୍ଞା ଓ ପ୍ରତିଭାର ମୂର୍ତ୍ତିମନ୍ତ ପ୍ରତୀକ । ମାଟିର ଚିରନ୍ତନ ବାସ୍ତବତାକୁ ସେ ଅଙ୍ଗେ ନିଭେଇ ଥିଲେ ।

ମନ୍ତ୍ରୀ ଥିବା ସମୟରେ ତାଙ୍କର ଚଳଣି ଯେପରି ସାଦାସିଧା, କ୍ଷମତାରୁ ଗଲାପରେ ବି ସେ ସେହିପରି ଜୀବନ ବିତାଉଥିଲେ । ସଦାସର୍ବଦା ସମାଜସେବାରେ ନିଜକୁ ନିୟୋଜିତ କରିଥିଲେ । ୭୨ ବର୍ଷ ବୟସରେ ଏପରି ଏକ ମାନବିକ ମୂଲ୍ୟବୋଧର ଉପାସକ ମହାନ୍ ରାଜନେତାଙ୍କ ଜୀବନର ଅବସାନ ଘଟିଲା ୧୯୯୩ ମସିହା ମାର୍ଚ୍ଚ ୧୫ ତାରିଖ ଦିନ କଟକଠାରେ । ଓଡ଼ିଶା ଇତିହାସରେ ସେ ଚିରସ୍ମରଣୀୟ ହୋଇ ରହିବେ । ତାଙ୍କ ଭିତରେ ଥିଲା ବାଳକର ସତ୍ୟତା, କିଶୋର ଉତ୍ସାହ, ବୟସ୍କଙ୍କ ପରିପକ୍ୱତା । ତାଙ୍କ ଜୀବନୀ ଯୁବପିଢ଼ି ପାଇଁ ପ୍ରେରଣାର ଉତ୍ସ ହୋଇ ରହିବ । ରାଜ୍ୟର ସେବା, ଶିକ୍ଷା, ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ସେ ନିଜ ପ୍ରତିଭାର ଅଭୁଲା ସ୍ୱାକ୍ଷର ରଖି ଯାଇଛନ୍ତି ।

ସୂଚନା ଅଧିକାରୀ
ସୂଚନା ଓ ଲୋକସଂପର୍କ ବିଭାଗ
ଭୁବନେଶ୍ୱର



# ଆଲୋକର ପର୍ବ ଦୀପାବଳି

**ବିଜୟଲକ୍ଷ୍ମୀ ସାହୁ**

ହିନ୍ଦୁ ପରମ୍ପରାରେ ଦୀପ ପ୍ରଜ୍ୱଳନର ସ୍ୱତନ୍ତ୍ର ମହତ୍ତ୍ୱ ରହିଅଛି । ଦୀପ ଆଲୋକକୁ ଦିବ୍ୟଜ୍ଞାନର ପ୍ରତୀକ ଭାବେ ଗ୍ରହଣ କରାଯାଏ । ଯାହା ମଣିଷ ମନରୁ ଅଜ୍ଞାନତା ଅନ୍ଧକାର ଦୂର କରି ଜ୍ଞାନର ଆଲୋକ ଭରି ଦେବା ସହ ସକାରାତ୍ମକ ଶକ୍ତି ଜାଗ୍ରତ ହୁଏ । ଦୀପର ଜ୍ୟୋତିକୁ ସର୍ଜନାକାରୀ, ଉଦ୍ଧାରକାରୀ ଏବଂ ପାପ ବିନାଶନକାରୀ ଭାବରେ ଅଭିହିତ କରାଯାଇଥାଏ ।

ଅନେକ ପୂଜା ପଦ୍ଧତିରେ ପ୍ରଥମେ ଦୀପ ପ୍ରଜ୍ୱଳନ କରାଯାଏ । ସେଥିପାଇଁ ଦୀପକୁ ପୂଜାର ପ୍ରମୁଖ ବୋଲି କୁହାଯାଏ । ଦୀପର ଉଜ୍ଜ୍ୱଳ ଶୁଦ୍ଧ ଓ ପବିତ୍ର ଜ୍ୟୋତିଧାରା ଯୁଗେ ଯୁଗେ ମଣିଷକୁ ଅନୁପ୍ରାଣିତ କରି ଆସିଛି । ଅସତ୍ୟରୁ ସତ୍ୟ ଅନ୍ଧାରରୁ ଆଲୋକ ଏବଂ ମୃତ୍ୟୁରୁ ଅମରତ୍ୱ ଆଡ଼କୁ ଯିବାର କାମନା କରି ଭକ୍ତ ଦୀପଟିଏ ଜାଳି ଶ୍ରଦ୍ଧା ଓ ଭକ୍ତିର ସହ ପ୍ରାର୍ଥନା କରେ ।

ସେହିପରି ଦୀପାବଳି ଖାଲି ହିନ୍ଦୁଧର୍ମରେ ପାଳନ କରାଯାଏ ନାହିଁ । ବୌଦ୍ଧ, ଜୈନ, ଶିଖ୍ ଧର୍ମାବଲମ୍ବୀମାନେ ମଧ୍ୟ ମହା ଆଡ଼ମ୍ବର ସହକାରେ ପାଳନ କରନ୍ତି । ଏହି ପର୍ବ ବିଭିନ୍ନ ଦେଶରେ ପାଳନ କରାଯାଏ ଯଥା- ନେପାଳ, ଶ୍ରୀଲଙ୍କା, ମାଲେସିଆ, ସିଙ୍ଗାପୁର କିନ୍ତୁ ଏହାର ନାମ ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ନାମରେ ପାଳନ କରାଯାଏ । ଏହାକୁ ସେମାନେ ଦିୱାଲି ପର୍ବ ଭାବରେ ପାଳନ କରନ୍ତି । ଦୀପାବଳିରେ ମହାସରସ୍ୱତୀ, ମହାକାଳୀ ଓ ମହାଲକ୍ଷ୍ମୀଙ୍କର ପୂଜା ଓ ଆରାଧନା କରାଯାଏ ଏବଂ ପିତୃପୁରୁଷଙ୍କୁ ଶ୍ରାଦ୍ଧ ଦେଇ ଦୀପଦାନ ମଧ୍ୟ କରାଯାଏ । ପୌରାଣିକ କଥା



ବସ୍ତୁକୁ ଦେଖିବାକୁ ଗଲେ ରାମାୟଣରେ ବର୍ଣ୍ଣନା କରାଯାଇଛି, ମର୍ଯ୍ୟାଦାପୁରୁଷ ଶ୍ରୀରାମଚନ୍ଦ୍ର ଚଉଦବର୍ଷ ବନବାସ ପରେ ଦୀପାବଳି ଦିନ ଅଯୋଧ୍ୟାକୁ ପ୍ରତ୍ୟାବର୍ତ୍ତନ କରିଥିଲେ ସାଥିରେ ମାତା ସୀତା, ଅନୁଜ ଲକ୍ଷ୍ମଣ ଓ ରାମ ଭକ୍ତ ବୀର ହନୁମାନ ସହ ଅଯୋଧ୍ୟାରେ ପାଦ ଦେଇଥିଲେ । ପ୍ରଜାଗଣ ମର୍ଯ୍ୟାଦାପୁରୁଷ ରାମଚନ୍ଦ୍ରଙ୍କୁ ସ୍ୱାଗତ କରିବାକୁ ଆଲୋକମାଳାରେ ସଜାଇ ନଗରକୁ ଆଲୋକିତ କରିଥିଲେ । ସେହିଦିନଠାରୁ ଆଲୋକର ପର୍ବ ଦୀପାବଳି ଉତ୍ସବ ପାଳନ ହୋଇ ଆସୁଅଛି । ପାଣ୍ଡବମାନେ ମଧ୍ୟ ବାରବର୍ଷ ବନବାସ ଯାଇଥିଲେ ଏବଂ ଏକବର୍ଷ ଅଜ୍ଞାତବାସ

ପରେ କାର୍ତ୍ତିକ ମାସ ଅମାବାସ୍ୟା ତିଥିରେ ହସ୍ତିନାକୁ ଫେରିଥିଲେ । ସେହିଦିନ ହସ୍ତିନାପୁରବାସୀମାନେ ନିଜର ଗୃହ ଓ ଗ୍ରାମକୁ ଆଲୋକମାଳାରେ ସଜାଇ ପାଣ୍ଡବମାନଙ୍କୁ ସ୍ୱାଗତ କରିଥିଲେ । ଏହି ଦିନକୁ ସ୍ମରଣୀୟ ଦିବସ ରୂପେ ଦୀପାବଳି ପର୍ବ ପାଳନ କରାଯାଏ । ଆଉ ମଧ୍ୟ ପୌରାଣିକ ମତ ଅନୁସାରେ ନରକାସୁର ଥିଲା ପ୍ରବଳ ପ୍ରତାପୀ । ଷୋଳ ସହସ୍ର ଗୋପୀମାନଙ୍କୁ ବନ୍ଦିନୀ କରି ରଖିଥିଲା । ସେମାନଙ୍କୁ ମୁକ୍ତ କରିବା ପାଇଁ ଦେବତାମାନଙ୍କୁ ସୁରକ୍ଷା ପାଇଁ ଭଗବାନ ଶ୍ରୀକୃଷ୍ଣ ନରକାସୁରକୁ ବଧ କରିଥିଲେ । ସେଦିନ ଥିଲା କାର୍ତ୍ତିକ କୃଷ୍ଣ ଚତୁର୍ଦ୍ଦଶୀ ଏହା ନରକ ଚତୁର୍ଦ୍ଦଶୀ । ନାମରେ ପରିଚିତ । ଦୀପାବଳି ତିନିଦିନ ପାଳନ କରାଯାଏ ଏବଂ କେଉଁଠାରେ ପାଞ୍ଚଦିନ ମଧ୍ୟ ପାଳନ କରନ୍ତି । ଏହା ବିଭିନ୍ନ ଦେଶରେ ଭିନ୍ନ ଭିନ୍ନ ଶୈଳୀରେ ପାଳନ କରାଯାଏ । ଦୀପାବଳିର ପୂର୍ବ ତ୍ରୟୋଦଶୀ, ଧନତରାସ, ଚତୁର୍ଦ୍ଦଶୀକୁ ନରକ ଚତୁର୍ଦ୍ଦଶୀ ଓ ଦୀପାବଳି ପର ଦିନ ଗିରିଗୋବର୍ଦ୍ଧନ ପୂଜା, ଦ୍ୱିତୀୟାକୁ ଭ୍ରାତୃଦ୍ୱିତୀୟା ବା ଯମ ଦ୍ୱିତୀୟା କୁହାଯାଏ । ଭ୍ରାତୃଦ୍ୱିତୀୟାରେ ଭାଇଙ୍କର ଶୁଭ ମନାସୀ ଭଉଣୀମାନେ ଭାଇଙ୍କୁ ବନ୍ଦାପନା କରି ମିଠା ପିଠା ଖୁଆନ୍ତି ନବବସ୍ତ୍ର ଦିଅନ୍ତି । ଇତିହାସକୁ ଦେଖିବାକୁ ଗଲେ ଐତିହାସିକ ଆବୁଲ ଫାଜଲଙ୍କ ରଚିତ 'ଆଇନ-ଇ-ଆକବରୀ'ରେ ମୋଗଲ ଶାସନ କାଳରେ ଦୀପାବଳି ପାଳନ କରାଯିବାର ଲିଖିତ ଅଛି । ଗୁପ୍ତ ଯୁଗରେ ସମ୍ରାଟ୍ ଦ୍ୱିତୀୟ ଚନ୍ଦ୍ରଗୁପ୍ତ ବିକ୍ରମାଦିତ୍ୟ, ପବିତ୍ର ଦୀପାବଳି ତିଥିରେ ସିଂହାସନ ଆରୋହଣ କରିଥିବା ଏବଂ ତା'ର ସ୍ମାରକୀ ରୂପେ ସେହିଦିନଠାରୁ ଗୁପ୍ତାବ୍ଦର ପ୍ରଚଳନ ହୋଇଥିବାର ଲିଖିତ ଅଛି । ଆଉ ମଧ୍ୟ ଶିଖ୍ ଧର୍ମର ଷଷ୍ଠଗୁରୁ ହର ଗୋବିନ୍ଦ ସିଂହ ମୋଗଲ ସମ୍ରାଟ୍ ଆଉରଙ୍ଗଜେବ୍‌ଙ୍କ ଦ୍ୱାରା ବନ୍ଦୀ ହୋଇ କାରାଗାରରେ ଥିଲେ, ଶିଖ୍‌ମାନଙ୍କର ବିରୋଧ ଯୋଗୁଁ ଶେଷରେ ଦୀପାବଳି ଦିନ ତାଙ୍କୁ କାରାମୁକ୍ତ କରାଯାଇଥିଲା । ଏହି ଦିନକୁ ଅନ୍ଧାରରୁ ଆଲୋକ ପ୍ରାପ୍ତିର ଦିବସ ଭାବେ ଶିଖ୍ ସମ୍ପ୍ରଦାୟମାନେ ପାଳନ କରି ଆସୁଛନ୍ତି । ଆଉ ମଧ୍ୟ ଶସ୍ୟ ଶ୍ୟାମଳା କ୍ଷେତକୁ ବିପଦ ମାଡ଼ି ଆସେ କୀଟ ପତଙ୍ଗ ଆଦି ଜନଜୀବନକୁ ମଧ୍ୟ ଅସ୍ତବ୍ୟସ୍ତ କରିଥାଆନ୍ତି । ଦୀପାବଳିର ଆଲୋକରେ ଆକୃଷ୍ଟ ହୋଇ ପଳାନ୍ତି । ସେଥିପାଇଁ କୁହାଯାଇଛି -

''ଆନନ୍ଦ ଦେଖିଣ ପତଙ୍ଗ ଧାବନ୍ତି ହୋଇ ଉଦ୍‌ବେଗ ।''

ପଦ୍ମପୁରାଣରେ କାର୍ତ୍ତିକ ମାସକୁ ଧର୍ମ, ଅର୍ଥ, କାମ ମୋକ୍ଷ ପ୍ରଦାନକାରୀ ଭାବରେ ବିବେଚନା କରାଯାଇଥିବା ବେଳେ ସାରଳା ମହାଭାରତରେ ଏହି ମାସକୁ ପୁଣ୍ୟ ତଥା ପବିତ୍ର ମାସ ଭାବରେ ବର୍ଣ୍ଣନା କରାଯାଇଛି । କାର୍ତ୍ତିକ ମାସରେ ଦୀପ ଦାନ ଦ୍ୱାରା ମୋକ୍ଷ ଓ ଧର୍ମ ପ୍ରାପ୍ତି ହୋଇଥାଏ । ସେଥିପାଇଁ ଭକ୍ତମାନେ କାର୍ତ୍ତିକରେ, ଦେବାଳୟ, ନଦୀତଟ ତୁଳସୀ ଚଉରା ମୂଳେ ଦୀପ ଦାନ କରି ଆତ୍ମସନ୍ତୋଷ ଲଭନ୍ତି । କହିବାକୁ ଗଲେ କାର୍ତ୍ତିକ ମାସର ଦୀପଦାନର ମାହାତ୍ମ୍ୟ ସ୍ୱତନ୍ତ୍ର ଅନନ୍ୟ, ତନ୍ମଧ୍ୟରୁ ଆକାଶଦୀପର ସ୍ୱତନ୍ତ୍ର ମାହାତ୍ମ୍ୟ ରହିଛି । ମଠ ମନ୍ଦିରମାନଙ୍କରେ ତୁଳସୀ ଚଉଁରା ମୂଳେ ଏହି ଦୀପକୁ ଜଳାଇ ଥାଆନ୍ତି । ଏହି ଦୀପ ଅନ୍ୟ ଦୀପଠାରୁ ଭିନ୍ନ ଧରଣର ତିଆରି ହୋଇଥାଏ । ଏକ ଲମ୍ବ ବାଉଁଶରେ ଦଉଡ଼ି ବନ୍ଧାଯାଏ । ଏହି ଦଉଡ଼ିରେ ହାଣ୍ଡି ରହିଥିବାର ବ୍ୟବସ୍ଥା ଥାଏ । ମାଟିହାଣ୍ଡିରେ ଅଳ୍ପ ଛିଦ୍ର କରାଯାଇ ମାଟିଦୀପଟିଏ ରଖାଯାଇ ସେଥିରେ ତେଲ ସଳିତା ଦେଇ ସଜାଇ ଜଳାଯାଏ ଏବଂ ଏକ ଢାଙ୍କୁଣୀ ଦେଇ ବନ୍ଦ କରାଯାଏ ଏବଂ ଧୀରେ ଧୀରେ ତାହା ଦଉଡ଼ି ସାହାଯ୍ୟରେ ଉପରକୁ ଉଠାଯାଏ । ହାଣ୍ଡିର ଚତୁଃପାର୍ଶ୍ୱସ୍ଥ ଛିଦ୍ର ମଧ୍ୟରୁ ଦୀପର ଉଜ୍ଜ୍ୱଳ ରଶ୍ମି ବିଛୁରିତ ହୋଇପଡ଼େ । କାର୍ତ୍ତିକ ବ୍ରତଧାରୀମାନେ ଧର୍ମଦେବତା ଓ ବିଷ୍ଣୁଙ୍କ ଉଦ୍ଦେଶ୍ୟରେ ଏହି ଆକାଶଦୀପ ଜଳେଇଥାନ୍ତି । ଶାସ୍ତ୍ର ମତରେ କାର୍ତ୍ତିକ ମାସରେ ପାଳିତ ପର୍ବ ଦୀପାବଳି ଉଜ୍ଜ୍ୱଳତାର ଆଲୋକର ପର୍ବ । ଏହିଦିନ ପିତୃପୁରୁଷଙ୍କୁ ପିଣ୍ଡଦାନ ସହ ଦୀପ କାଉଁରିଆ କାଠି ଜଳାଇ ପୟାଶ୍ରାଦ୍ଧ କରାଯାଏ । ଏହି ଶ୍ରାଦ୍ଧ ପିତୃପୁରୁଷଙ୍କୁ ସନ୍ତୁଷ୍ଟ କରିବା ପାଇଁ କାଉଁରିଆ କାଠିରେ ଅଗ୍ନି ସଂଯୋଗ କରି ପିଠା ଫଳ ନୈବେଦ୍ୟ ଦେଇ ଜଳୁଥିବା କାଉଁରିଆ କାଠିକୁ

ହାତରେ ଧରି ପିତୃପୁରୁଷଙ୍କ ସମ୍ବୋଧନ କରି କହିଥାନ୍ତି ବଡ଼ ବଡୁଆ ହୋ ଅନ୍ଧାରେ ଆସି ଆଲୁଅରେ ଯାଅ... ।

ଏହିପରି ପିତୃପୁରୁଷଙ୍କର ସଦ୍‌ଗତି କାମନା କରାଯାଏ । ଏହି ଦିନ ମଧ୍ୟ ଅଧିଷ୍ଠାତ୍ରୀ ଦେବୀ ମା' ଲକ୍ଷ୍ମୀ, ସରସ୍ୱତୀଙ୍କୁ ପୂଜାର୍ଚ୍ଚନା କରାଯାଏ । ମା' ଶ୍ୟାମାକାଳୀଙ୍କର ମୃଣ୍ମୟୀ ମୂର୍ତ୍ତି ପୂଜା କରାଯାଏ । ଦୀପାବଳୀକୁ କାଳୀପୂଜା ଉତ୍ସବ କୁହଯାଏ ।

ଶ୍ରୀମନ୍ଦିରରେ ଦେବ ଦୀପାବଳି ଉତ୍ସବ ଅନନ୍ୟ । ଏହି ପର୍ବ ମାର୍ଗଶିର ମାସ କୃଷ୍ଣ ଚତୁର୍ଦ୍ଦଶୀ ତିଥିଠାରୁ ଶୁକ୍ଳ ପ୍ରତିପଦ ତିଥି ପର୍ଯ୍ୟନ୍ତ ଦେବତାମାନଙ୍କର ଦୀପାବଳି ବା ଦୀପଦାନ ଉତ୍ସବ ପାଳିତ ହୁଏ । ଏହିଦିନ କେତେକ ମନ୍ଦିରମାନଙ୍କୁ ଆଲୋକମାଳାରେ ସଜ୍ଜିତ କରାଯାଇଥାଏ । କିନ୍ତୁ ଶ୍ରୀମନ୍ଦିରରେ ଏହି ଦୀପାବଳି ଉତ୍ସବ ଶ୍ରୀଜଗନ୍ନାଥଙ୍କ ପିତୃଶ୍ରାଦ୍ଧ ରୂପେ ପାଳନ କରାଯାଏ । ମହାପ୍ରଭୁ ଶ୍ରୀଜଗନ୍ନାଥ ମାନବବାଦୀ ଠାକୁର ତେଣୁ ମାନବୀୟ ଲୀଳା ରଚନା କରନ୍ତି । ତାଙ୍କର ରୀତି ନୀତି ଉତ୍ସବ ମାନବବାଦର ନିୟମରେ ପାଳନ କରାଯାଏ । ଏହି ଉତ୍ସବରେ ମହାପ୍ରଭୁ ବେଶ ପରିପାଟୀ ତିନିଦିନ ଶ୍ରାଦ୍ଧ ବେଶରେ ସଜ୍ଜିତ ହୁଅନ୍ତି । ପିତା ପିତୃଗଣଙ୍କୁ ଶ୍ରାଦ୍ଧ ଦୀପଦାନ କରିଥାନ୍ତି । ଶ୍ରାଦ୍ଧ ସମୟରେ ଯେଉଁ ବସ୍ତ୍ର ପରିଧାନ କରନ୍ତି ତାହାକୁ କାଶି ଧଡ଼ିଆ ଲୁଗା କୁହାଯାଏ । ଏହି ବସ୍ତ୍ରର ରଙ୍ଗ ଶ୍ୱେତ ଓ ଲାଲ ରଙ୍ଗର ଧଡ଼ିରେ ବଡ଼ ବଡ଼ କୁମ୍ଭମାନ ପଡ଼ିଥାଏ । ଏହି ବସ୍ତ୍ର ସହ ଶ୍ରୀଜୀଉମାନଙ୍କ ଚାଦର ପରିଧାନ କରାଯାଏ । ଶିରରେ ଶ୍ରୀକପଡ଼ା ନାମକ ସ୍ୱତନ୍ତ୍ର ବସ୍ତ୍ରରେ ଶୋଭିତ କରାଯାଏ ଏବଂ ପୁଷ୍ପାଳକ ସେବକମାନେ ଶ୍ରୀଜୀଉମାନଙ୍କୁ ଆକର୍ଷଣୀୟ ଶ୍ରାଦ୍ଧବେଶରେ ସଜ୍ଜିତ କରିଥାନ୍ତି । ଏହି ବେଶରେ ମହାପ୍ରଭୁମାନେ ଅଳଙ୍କାର ତଳିଭୁଜ, କୁଣ୍ଡଳ, ଚନ୍ଦ୍ରସୂର୍ଯ୍ୟ, ଆଡ଼କାନି, ତେଗି, ହରିଡ଼ାମାଳି ଓ ଅଣ୍ଟା କମର ପଟି ପ୍ରଭୃତି ସୁବର୍ଣ୍ଣ ଅଳଙ୍କାର ପରିଧାନ କରିଥାନ୍ତି । ଶ୍ରୀମନ୍ଦିରରେ ମାର୍ଗଶିର କୃଷ୍ଣ ଚତୁର୍ଦ୍ଦଶୀ ତିଥିରେ ପ୍ରଭୁ ବାମନ ରୂପରେ ଦେବ ପିତାମାତା ସତ୍ୟଯୁଗର କଶ୍ୟପ ଋଷି ଓ ଅଦିତିଙ୍କ ପ୍ରତି ପିଣ୍ଡ ଓ ଦୀପୋତ୍ସର୍ଗ କରନ୍ତି । ମାର୍ଗଶିର ଅମାବାସ୍ୟା ତିଥିରେ ପ୍ରଭୁ ଶ୍ରୀରାମଚନ୍ଦ୍ର ରୂପରେ ତ୍ରେତୟା ଯୁଗର ପିତା ବସୁଦେବ ମାତା ଦେବକୀଙ୍କୁ ନନ୍ଦ ଓ ଯଶୋଦାଙ୍କୁ ପିଣ୍ଡଦାନ କରନ୍ତି । ଗଜପତି ମହାରାଜା ଇନ୍ଦ୍ରଦ୍ୟୁମ୍ନ ବିଷ୍ଣୁଙ୍କୁ ଦର୍ଶନ ପାଇଁ ବହୁ କାମନା କରିଥିଲେ । ପ୍ରଭୁଙ୍କ ଆଜ୍ଞାରେ ଅଶ୍ୱମେଧ ଯଜ୍ଞ କରି ଗୁଣ୍ଡିଚା ମନ୍ଦିର ସ୍ଥାପନ କରିଥିଲେ ଏବଂ ବ୍ରହ୍ମାଙ୍କ ଦ୍ୱାରା ଶ୍ରୀବଳଭଦ୍ର ଶ୍ରୀଜଗନ୍ନାଥ ଓ ଦେବୀ ସୁଭଦ୍ରା ତିନି ମୂର୍ତ୍ତିଙ୍କୁ ସ୍ଥାପନ କରି ବ୍ରହ୍ମାଙ୍କ ଦ୍ୱାରା ପ୍ରତିଷ୍ଠା କରାଇଥିଲେ । ତେଣୁ ଏହି ଦେବ ଦୀପାବଳିରେ ମାର୍ଗଶିର ଶୁକ୍ଳ ପ୍ରତିପଦ ତିଥିରେ ପ୍ରଭୁ ଶୁଭ୍ରବସ୍ତ୍ର ଚଦର ପରିଧାନ କରି ପିତା ଇନ୍ଦ୍ରଦ୍ୟୁମ୍ନ ମାତା ରାଣୀ ଗୁଣ୍ଡିଚାଙ୍କୁ ପିଣ୍ଡ ଓ ଦୀପଦାନ କରନ୍ତି ଏବଂ ଏହିଦିନ ଶ୍ରୀମନ୍ଦିର ଆଲୋକରେ ସଜ୍ଜିତ ହୋଇଥାଏ । ଆଉ ଏକ ପର୍ବ ଥାଏ ଶ୍ରାଦ୍ଧ ଓ ଦୀପମାନ ସରିଲା ପରେ ଚୁନରା ସେବକ ଶ୍ରୀମନ୍ଦିରର ତିନି ଦେଉଳ ଉପରେ ମହାଦୀପ ଜାଳି ଗଜପତି ମହାରାଜାଙ୍କୁ ମହାପ୍ରଭୁଙ୍କର ଆଶୀର୍ବାଦ ପାଇଁ ପ୍ରଭୁଙ୍କ ନିକଟରେ ନିବେଦନ କରନ୍ତି ।

ଦୀପଦାନ ଓ ଆଳତିର ମହତ୍ତ୍ୱ ଅନେକ ରହିଛି । ହୋମଯଜ୍ଞାଦି ଦେବ ପୂଜାରେ ଘୃତାନଳ ଓ ବିଭିନ୍ନ ଗ୍ରହପୀଡ଼ା ଉପଶମ ନିମନ୍ତେ ବିଭିନ୍ନ ତୈଳରେ ଦୀପଦାନର ବିଧି ରହିଛି ଏବଂ ଭଗବାନଙ୍କୁ ଆଳତି କଲାବେଳେ ମନ୍ତ୍ର ବୋଲାଯାଏ ।

ସେ ଅଗ୍ନିର ଜ୍ୟୋତି ହେଉ, ରବି ଜ୍ୟୋତି ହେଉ ବା ଚନ୍ଦ୍ରଜ୍ୟୋତି ହେଉ ସବୁ ଜ୍ୟୋତିର ତୁମ୍ଭେ ମହାନ୍ । ତେଜୋମୟ, ଜ୍ୟୋତିମୟ ପରମପୁରୁଷ ବିଦ୍ୟମାନ । ତେଣୁ ଦୀପର ଜ୍ୟୋତି ପ୍ରଦର୍ଶନରେ ହେ ପ୍ରଭୁ ତୁମର ଆଳତି କରି ମନର ସମସ୍ତ କଳୁଷ କାଳିମା ବିନାଶ କରିବା ସଙ୍ଗେ ସଙ୍ଗେ ତୁମ୍ଭର ଦିବ୍ୟଦର୍ଶନ ମୋ ନୟନ ପଥାରୂଢ଼ ହେଉ ।

ଏଚ୍.ଆଇ.ଜି – ୨/୩୦୩
ଷ୍ଟେଟ୍ ବ୍ୟାଙ୍କ କଲୋନୀ
କେଶୁରା, ଭୁବନେଶ୍ୱର-୨

## ପଲ୍ଲୀକବି ନନ୍ଦକିଶୋର ବଳ

# ଲିଭିନାହିଁ ସେହି ଅଲିଭା ଦୀପ

ପ୍ରଶାନ୍ତ କୁମାର ଦାଶ

ଉତ୍କଳର ମାଟି, ପାଣି, ପବନ, ପରିବେଶ ଓ ଛବିଳ-ସୁନ୍ଦର ପ୍ରକୃତିକୁ ମନୋରମ ଛନ୍ଦରେ ଛନ୍ଦାୟିତ କରି କାବ୍ୟ କବିତାର ତାଜମହଲ ଗଢୁଥିବା କବି ନନ୍ଦକିଶୋର ବଳ



ତାଙ୍କର ଆପଣାର ସୃଷ୍ଟି ପାଇଁ ପଲ୍ଲୀକବି ଭାବେ ଖ୍ୟାତ ଥିଲେ । ଅତି ଶାନ୍ତ କାନ୍ତ ନମନୀୟ ଓ ସରଳ ସ୍ୱଭାବର ସେଇ ମହାମନୀଷୀଙ୍କର ଜନ୍ମ ଡିସେମ୍ବର ମାସ ୨୨ତାରିଖ ୧୮୭୫ ମସିହାରେ କଟକ ଜିଲ୍ଲାର ବିରୂପା ନଦୀ ତଟସ୍ଥ ମାହାଙ୍ଗାର କୁସୁପୁର ଗ୍ରାମରେ ହୋଇଥିଲା । ସେ ମାତ୍ର ତରୁଣ ଅବସ୍ଥାରୁ ଭାବନାରେ ମଜ୍ଜି ରହୁଥିଲେ ସଦାସର୍ବଦା । ତାଙ୍କର ପ୍ରାଥମିକ ଛାତ୍ରଜୀବନ ଅତି ସୁରଭିତ ଥିଲା । ପାଠଶାଳାରୁ ତାଙ୍କ କବି ଜୀବନର ସଜସୁମନ ଫୁଟି ଉଦ୍‌ଭାସିତ ହୋଇଥିଲା । ମାଧ୍ୟମିକ ଶିକ୍ଷା, ଉଚ୍ଚ ମାଧ୍ୟମିକ ଶିକ୍ଷା ସମାପ୍ତି ପରେ ୧୯୦୧ ମସିହାରେ ମାତ୍ର ୨୬ ବର୍ଷ ବୟସରେ ବି.ଏ. ପାସ୍ କରିବା ପରେ ଶିକ୍ଷକ ଭାବରେ ଶିକ୍ଷା ବିଭାଗରେ ନିଯୁକ୍ତି ପାଇଥିଲେ ସେ । ଶିକ୍ଷକ ଭାବରେ କର୍ତ୍ତବ୍ୟରତ ଓ ଆଦର୍ଶ ଶିକ୍ଷାଦାନ ନିମନ୍ତେ ସେ ଉଚ୍ଚପଦସ୍ଥ ଅଧିକାରୀଙ୍କ ଦ୍ୱାରା ସମ୍ମାନିତ ଓ ପୁରସ୍କୃତ ହୋଇଥିଲେ । ଛାତ୍ରବତ୍ସଳ ଶିକ୍ଷକ ଭାବରେ ସେ ଛାତ୍ରଛାତ୍ରୀଙ୍କ ମହଲରେ ବେଶ୍ ଆଦୃତ ଥିଲେ । ଆଦର୍ଶ ଶିକ୍ଷାଦାନ ଓ ମୂଲ୍ୟବୋଧଭିତ୍ତିକ ଶିକ୍ଷା ବ୍ୟବସ୍ଥାର ଉନ୍ନତି କରାଇ ସେ ୧୯୨୪ ମସିହାରେ ମାତ୍ର ୪୯ବର୍ଷ ବୟସରେ ତତ୍‌କାଳୀନ ଶାସକ ଇଂରେଜ ସରକାରଙ୍କଠାରୁ 'ରାୟବାହାଦୁର' ଉପାଧି ଲାଭ କରିଥିଲେ । ଆମ ଓଡ଼ିଶାରେ ପ୍ରଚଳିତ ତଥାକଥିତ ଲୋକକଥାକୁ ବ୍ୟବହାର କରି ସେ ଅନେକ ସୁନ୍ଦର କବିତାମାନ ରଚନା କରିଯାଇଛନ୍ତି । ମେଘ ବରଷିଲା ଟୁପୁରୁ ଟୁପୁରୁ, କେଣ୍ଟୁର ମାଇଲା ଗଜା, ଆସ ଆସ ପାରା ଯୋଡ଼ିକ ମୋର ପିଣ୍ଡାରେ ବସ, ଧୋରେ ବାଇଆ ଧୋ... ଆଦି ଏହାର ଗୋଟିଏ ଗୋଟିଏ ବଳିଷ୍ଠ ଉଦାହରଣ । କାକବାରଣ ଓ ଚୁଟିଆମୂଷା କବିତାରେ ସେ ଓଡ଼ିଆ ଗ୍ରାମ୍ୟ ଜନଜୀବନ ଏବଂ ବଣମୂଲକର କଥା ଅତି ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି । ସେ ଲେଖିଥିବା ଅନେକଗୁଡ଼ିଏ କବିତା ଅତି

ସରଳ, ତରଳ ଓ ସହଜ ହୋଇଥିବାରୁ ତାହା ଗ୍ରାମ୍ୟ ଜୀବନରେ ଅତି ପ୍ରଭାବଧର୍ମୀ ହୋଇପାରିଛି । ଏଯାବତ୍ ତାଙ୍କ ରଚିତ କବିତା ଜନମାନସର ପ୍ରତିବିମ୍ବ ରୂପେ ଉଦ୍‌ଭାସିତ ହୋଇ ରହିଛି । ସେ ନିଜର କେତେଗୁଡ଼ିଏ କବିତାକୁ ନାନାବାୟା ଗୀତ ଭାବରେ ଲେଖିଯାଇଛନ୍ତି । କେବଳ ଲୋକକଥା, ଗାଁର ଜନଜୀବନ ନୁହେଁ, ଗାଁ ଲୋକଙ୍କର ସରଳ ଜୀବନଯାପନ ପ୍ରଣାଳୀର ନିଚ୍ଛକ ଛବି । ଭୂତ, ପ୍ରେତ ସମ୍ପର୍କୀୟ କଥା, ଈଶ୍ୱରଭକ୍ତି, ଯାନିଯାତ୍ରା ଓ ପର୍ବପର୍ବାଣି ଆଦିକୁ ମଧ୍ୟ ସେ ତାଙ୍କ କାବ୍ୟ କବିତାରେ ସ୍ଥାନ ଦେଇଛନ୍ତି । ସେ ଅତି ସରଳ ଓ ସହଜ ଢଙ୍ଗରେ କବିତାଗୁଡ଼ିକ ଲେଖିଥିବାରୁ ତାକୁ ଓଡ଼ିଶାର ପୁରପଲ୍ଲୀର ନରନାରୀଗଣ ଏଯାବତ୍ ମନେରଖିଛନ୍ତି । ସେ ଓଡ଼ିଆ ଭାଷାରେ ଉପନ୍ୟାସ, କାବ୍ୟ, ସମାଲୋଚନା ଓ ଗୀତିକବିତା ସହିତ ଅନେକ ଶିଶୁ–ସାହିତ୍ୟ ରଚନା କରିଯାଇଛନ୍ତି । ତାଙ୍କ ସୃଷ୍ଟି ମଧ୍ୟରେ ଉପନ୍ୟାସ– କନକଲତା, କାବ୍ୟ– ଶର୍ମିଷ୍ଠା, କୃଷ୍ଣକୁମାରୀ, ଗୀତିକବିତା– ନିର୍ଝରିଣୀ, ବସନ୍ତ ନାନାବାୟା ଗୀତ, ପ୍ରଭାତ ସଙ୍ଗୀତ, ବିରୂପା, ପଲ୍ଲୀଚିତ୍ର, ନିର୍ମାଲ୍ୟ ଓ ଜନ୍ମଭୂମି ଆଦି ପ୍ରଧାନ । ବର୍ତ୍ତମାନ ତାଙ୍କ ଦ୍ୱାରା ଲିଖିତ ଗଛ ଓ କାଠୁରିଆ ପିଲାଙ୍କ ପାଠ୍ୟପୁସ୍ତକରେ ସ୍ଥାନିତ ଓ ପାଠକାଦୃତ ଲାଭ କରିଛି । ଗଛ ଓ କାଠୁରିଆ କବିତାରେ ଗଛ କାଟିଲେ ତା'ର କୁପ୍ରଭାବ ପରିବେଶ ପ୍ରତି ପରିଲକ୍ଷିତ ହେବ ବୋଲି ସେ ବାର୍ତ୍ତା ଦେଇଥିଲେ । ପ୍ରକୃତିକୁ ସେ ମନଭରି ଭଲ ପାଉଥିଲେ । ତାଙ୍କ କବିତାରେ ନଦୀ, ଝରଣା, ପାହାଡ଼, ବୃକ୍ଷଲତା, ପ୍ରକୃତି ଅତି ମନୋରମ ଓ ମନଲୋଭା ଥିଲା । ପ୍ରକୃତିକୁ ଭଲ ପାଇବାର ବାର୍ତ୍ତା ସେ ନିଜର ସୃଷ୍ଟି ମାଧ୍ୟମରେ ଜନସମାଜକୁ ବାଣ୍ଟିଥିଲେ । ସେ କବିତାରେ ନୀତିଶିକ୍ଷାକୁ ସ୍ଥାନ ଦେଇଥିବାରୁ ତାଙ୍କ ଲେଖାକୁ ଲୋକମାନେ ଆଦର୍ଶ ଅନୁସୃଜନ ଭାବରେ ଗ୍ରହଣ କରିଆସୁଛନ୍ତି ସଦାସର୍ବଦା । ନିଜ ସୃଷ୍ଟିରେ ପଦଲାଳିତ୍ୟ ଓ ମାଧୁର୍ଯ୍ୟ ସ୍ଥାନ ପାଇଥିବାରୁ ଲୋକମାନେ ତାହାକୁ ଅତି ସହଜରେ ମନେ ରଖିପାରିବାରେ ସମର୍ଥ ।

ସେହି ବରେଣ୍ୟ ସ୍ରଷ୍ଟା ତଥା ପଲ୍ଲୀକବି ନନ୍ଦକିଶୋର ବଳ ଉତ୍କଳର ବାଣୀଭଣ୍ଡାରକୁ ନିଜର ସରଳ ସାବଲୀଳ ସୃଷ୍ଟି ସର୍ଜନାକୁ ଦାନ କରି ୧୯୨୮ ମସିହା ଜୁଲାଇ ମାସ ୧ତାରିଖ ଦିନ ସମସ୍ତ ଆତ୍ମୀୟସ୍ୱଜନଙ୍କୁ ତଥା ଉତ୍କଳର ପୁରପଲ୍ଲୀର ଜନତାଙ୍କୁ ପର କରି ଇହଲୀଳା ସମ୍ବରଣ କରିଥିଲେ ମାତ୍ର ୫୩ ବର୍ଷ ବୟସରେ । ସେ ମରି ସୁଦ୍ଧା ଅମର । ନିଜର ସୃଷ୍ଟିସର୍ଜନା ଓ କାଳଜୟୀ କାବ୍ୟ କବିତା ପାଇଁ ସେ ସଦା ଚିରଞ୍ଜୀବୀ, ସ୍ମରଣୀୟ ଓ ପ୍ରଖ୍ୟାତ କବି ଭାବରେ ଜନମାନସରେ ଆଲୋକିତ ।

---

କୁଞ୍ଜୀର, ସଙ୍ଗଳାଇ, ପିପିଲି, ପୁରୀ



# ଅବିଭକ୍ତ ପୁରୀ ଓ କଟକ ଜିଲ୍ଲାର ପ୍ରମୁଖ ପର୍ଯ୍ୟଟନ ସ୍ଥଳୀ

**ରବୀନ୍ଦ୍ର ନାଥ ମିଶ୍ର**

ପର୍ଯ୍ୟଟନର ଆକ୍ଷରିକ ଅର୍ଥ ହେଲା ପରିଭ୍ରମଣ । ପ୍ରାଚୀନ ସଂସ୍କୃତିରେ ବି ପର୍ଯ୍ୟଟନର ପୃଷ୍ଠଭୂମି ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥିଲା । ଏହି ପରିଭ୍ରମଣ ହିଁ ମନୁଷ୍ୟକୁ ବିକାଶ ଆଡ଼କୁ ବାଟ କଢ଼ାଇ ଥାଏ । ମନୁଷ୍ୟର ଜିଜ୍ଞାସା ଓ ଅନୁସନ୍ଧିତ୍ସାର ପରିପୂରଣ ନିମନ୍ତେ ପର୍ଯ୍ୟଟନ ବେଶ୍ ସହାୟକ ସାଜିଥାଏ ମଧ୍ୟ । ଆଜିର ଏହି ଆଧୁନିକ ଯୁଗରେ ବିଶ୍ୱର ଅଧିକାଂଶ ରାଷ୍ଟ୍ର ପର୍ଯ୍ୟଟନକୁ ଶିଳ୍ପର ମାନ୍ୟତା ପ୍ରଦାନ କରି ଏହାର ବ୍ୟାପକ ପ୍ରଚାର ପ୍ରସାର ପାଇଁ ସୁଚିନ୍ତିତ ଯୋଜନାମାନ କାର୍ଯ୍ୟକାରୀ କରୁଅଛନ୍ତି । ସେପ୍ଟେମ୍ବର ୨୭ ତାରିଖକୁ ବିଶ୍ୱ ପର୍ଯ୍ୟଟନ ଦିବସର ମାନ୍ୟତା ମିଳିଛି । ଇତିହାସକୁ ବିଶ୍ଳେଷଣ କଲେ ଜଣାଯାଏ, ଅତୀତରେ ହୁଏନ୍ସାଂ, ଫାହିୟାନ୍, ମେଘାସ୍ଥିନିସ୍, ଆଲବେରୁଣୀ ଆଦି ପ୍ରସିଦ୍ଧ ପରିବ୍ରାଜକଗଣ ଆମ ଦେଶ ଭାରତବର୍ଷ ପରିଭ୍ରମଣ କରି ଶିକ୍ଷା, ସଂସ୍କୃତି, ସଭ୍ୟତା, ସମାଜ ସଂସ୍କାର, ଶାସନ ବ୍ୟବସ୍ଥା ଓ ସାମାଜିକ ଚଳଣି ସଂପର୍କରେ ଜ୍ଞାନ ଆହରଣ କରି ତା'ର ସଦୁପଯୋଗ କରିଥିଲେ ।

ଆଜି ପର୍ଯ୍ୟଟନର କ୍ଷେତ୍ର ଅତି ବ୍ୟାପକ ହୋଇଛି । ପର୍ଯ୍ୟଟନ ଯୋଗୁଁ ଆମେ ଦେଶ ଦେଶ ମଧ୍ୟରେ ମଣିଷ ମଣିଷ ମଧ୍ୟରେ ସ୍ନେହ, ପ୍ରେମ, ଆତ୍ମୀୟତା ଓ ଭ୍ରାତୃଭାବ ସୃଷ୍ଟି କରିପାରିଛୁ । ଏହି ପର୍ଯ୍ୟଟନ ବିଭିନ୍ନ ସଭ୍ୟତା, ସାମାଜିକ ଚଳଣି, ସାଂସ୍କୃତିକ ସଚେତନତା ଓ ବିକାଶରେ ସହାୟକ ହୋଇଛି । ବାସ୍ତବରେ ପର୍ଯ୍ୟଟନ ଦ୍ୱାରା ଆମ ଜ୍ଞାନ ପରିସୀମାର ଉନ୍ନତି ଘଟିଛି ଓ ଏହା ଅର୍ଥନୈତିକ ସମୃଦ୍ଧିରେ ମଧ୍ୟ ସହାୟକ ହୋଇଛି ।

ପର୍ଯ୍ୟଟନ କହିଲେ ପୂର୍ବ କାଳରେ ଲୋକମାନେ ବୁଝୁଥିଲେ ବିଭିନ୍ନ ତୀର୍ଥଭ୍ରମଣ କରିବା, ଦେବଦେବୀ ଦର୍ଶନ କରି ଆଶୀର୍ବାଦ ଲଭିବା, ସ୍ନାନ, ଦାନ, ତପ, ଜପ କରି ଆତ୍ମିକ ଉନ୍ନତି ସାଧନ କରିବା । ଆଜି କିନ୍ତୁ ଏହି ପର୍ଯ୍ୟଟନର ସଂଜ୍ଞା ବଦଳି ଯାଇଛି । ପ୍ରାକୃତିକ ସୌନ୍ଦର୍ଯ୍ୟରେ ବିମଣ୍ଡିତ ନଦନଦୀ, ପାହାଡ଼, ପର୍ବତ, ଗିରିକନ୍ଦର ସମୁଦ୍ର, ଝରଣା, ସବୁଜ ବନାନୀ ବିଭିନ୍ନ ଐତିହ୍ୟସ୍ଥଳୀ, ଅତୀତ ସଭ୍ୟତାର ଧ୍ୱଂସାବଶେଷ, କଳା, ଭାସ୍କର୍ଯ୍ୟ ପ୍ରଭୃତି ପର୍ଯ୍ୟଟନସ୍ଥଳୀର ମାନ୍ୟତା ପାଇଛି । ଏସବୁଥିରେ ପରିପୂର୍ଣ୍ଣ ଆମର ରାଜ୍ୟ ଓଡ଼ିଶା ।

ଏ କ୍ଷେତ୍ରରେ ଓଡ଼ିଶାର ସ୍ଥାନ ସ୍ୱତନ୍ତ୍ର । ଦିନେ ଏହି ଓଡ଼ିଶା, ଉତ୍କଳ ଓ କଳିଙ୍ଗ ନାମରେ ପରିଚିତ ଥିଲା । ଉତ୍କୃଷ୍ଟ କଳାର ଦେଶ ଉତ୍କଳ ବୋଲି ଯାହା କୁହାଯାଏ, ତାହା ପ୍ରକୃତରେ ଯଥାର୍ଥ । ଉତ୍କଳୀୟମାନେ ଗୀତବାଦ୍ୟାଦି ଚତୁଃଷଷ୍ଠୀ କଳାରେ ନିପୁଣ । ଏଇଥିପାଇଁ ତ ଏହାର ନାମ ଉତ୍କଳ । ବିଶେଷ କରି ଗୀତ, ବାଦ୍ୟ, ନୃତ୍ୟ, ଅଭିନୟ, ମୂର୍ତ୍ତିକଳା, ସ୍ଥାପତ୍ୟକଳା, ଭାସ୍କର୍ଯ୍ୟକଳା, ଚିତ୍ରକଳା ଓ କାବ୍ୟକଳା ପ୍ରଭୃତିରେ ଉତ୍କଳୀୟମାନଙ୍କ ପାରଦର୍ଶିତା ରହିଛି । ସେମାନେ ଏସବୁକୁ ପ୍ରଦର୍ଶନ କରି ଆମ ରାଜ୍ୟରେ ଓ ରାଜ୍ୟ ବାହାରେ ପ୍ରଶଂସିତ ହୋଇଛନ୍ତି । ଏହାକୁ ଦେଖିବା ନିମନ୍ତେ ପର୍ଯ୍ୟଟକମାନେ ଆକୃଷ୍ଟ ହୋଇ ଆମ ରାଜ୍ୟକୁ ଆସିଥାନ୍ତି । 'କଳିଙ୍ଗାଃ ସାହସିକାଃ, କଳିଙ୍ଗର ବୀର ପାଇକଗଣ ଅତ୍ୟନ୍ତ ଦୁର୍ଦ୍ଧର୍ଷ । ଦିନେ ଏମାନେ ପରାକ୍ରମଶାଳୀ ରାଜା ଚଣ୍ଡାଶୋକଙ୍କୁ ଧର୍ମାଶୋକରେ

ପରଣିତ କରିଦେଇଥିଲେ । ବାସ୍ତବରେ କଳିଙ୍ଗ ବୀରମାନଙ୍କ ନିକଟରେ ଅଶୋକଙ୍କର ମୁଣ୍ଡ ନଇଁ ଯାଇଥିଲା । ସେ ସ୍ୱୀକାର କରିଥିଲେ ଯେ, ହିଂସା ପ୍ରଣୋଦିତ ତରବାରୀର ଜୟ ପ୍ରକୃତ ଜୟ ନୁହେଁ, ପ୍ରଜାମାନଙ୍କର ହୃଦୟକୁ ଜୟ କରିବା ହେଉଛି ପ୍ରକୃତ ଜୟ । ମାତୃଭୂମି ପାଇଁ ବୀରତ୍ୱର ସହ ଲଢ଼ି ଏହି ବୀରଗଣ ଅକାତରରେ ଜୀବନଦାନ କରି ଦେଇଥିଲେ । ଯେଉଁଥିପାଇଁ ଧଉଳି ପାହାଡ଼ର ପାଦଦେଶରେ ଦୟା ନଦୀ କୂଳରେ ଦିନେ ରକ୍ତର ସ୍ରୋତ ପ୍ରବାହିତ ହୋଇଥିଲା । ଧଉଳି ପାହାଡ଼ ଥିଲା ତା'ର ମୂକସାକ୍ଷୀ ।

ଏହିସବୁ ଐତିହ୍ୟ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିଥାଏ । ଧଉଳି ପାହାଡ଼ରେ ସ୍ଥାପିତ ବୁଦ୍ଧଦେବଙ୍କର କମନୀୟ ମୂର୍ତ୍ତି କଳିଙ୍ଗ ଯୁଦ୍ଧର ସ୍ମୃତିକୁ ରୋମନ୍ଥନ କରେ । ସେହିପରି ଖ୍ରୀଷ୍ଟପୂର୍ବ ଦ୍ୱିତୀୟ ଶତକ ସମୟରେ ଗଙ୍ଗାଠାରୁ ଗୋଦାବରୀ ପର୍ଯ୍ୟନ୍ତ ନିଜର ସାମ୍ରାଜ୍ୟକୁ ବିସ୍ତାର କରିଥିବା ମହାମେଘବାହନ ଐର ଖାରବେଳଙ୍କ କୀର୍ତ୍ତି ମଧ୍ୟ ଉଲ୍ଲେଖଯୋଗ୍ୟ । ଭୁବନେଶ୍ୱର ନିକଟବର୍ତ୍ତୀ ଖଣ୍ଡଗିରି, ଉଦୟଗିରିର ହାତୀଗୁମ୍ଫା, ଶିଳାଲିପି ତାଙ୍କ ପୃଷ୍ଠପୋଷକତା ଲାଭ କରିଥିବା ଜୈନଧର୍ମର ଐତିହ୍ୟକୁ ସ୍ମରଣ କରିଥାଏ । ଦିନେ ଓଡ଼ିଶାରେ ବୌଦ୍ଧଧର୍ମ ଜୈନଧର୍ମ ରାଜାଙ୍କ ପୃଷ୍ଠପୋଷକତା ଲାଭ କରି ବହୁଳ ପ୍ରଚାର ପ୍ରସାର ଲାଭ କରିଥିଲା ।

ଖାରବେଳ ସେସମୟରେ ବହୁ ଜନହିତକର କାର୍ଯ୍ୟ କରିବା ସଂଗେ ସଂଗେ ଖଣ୍ଡଗିରିରେ ଓ ଉଦୟଗିରିରେ ଗୁମ୍ଫା ନିର୍ମାଣ କରାଇଥିଲେ । ଏହା ଜୈନଧର୍ମାବଲମ୍ବୀ ସନ୍ନ୍ୟାସୀମାନଙ୍କ ପାଇଁ ପ୍ରାୟତଃ ଉଦ୍ଦିଷ୍ଟ ଥିଲା । ଏହି ଗୁମ୍ଫାଗୁଡ଼ିକର ସେ ନାମକରଣ କରିଥିଲେ ମଧ୍ୟ । ସେଥିରୁ ଦୁଇ ମହଲା ବିଶିଷ୍ଟ ରାଣୀଗୁମ୍ଫା, ହାତୀଗୁମ୍ଫା, ବ୍ୟାଘ୍ର ଗୁମ୍ଫା, ଅନନ୍ତ ଗୁମ୍ଫା, ସର୍ପଗୁମ୍ଫା ଓ ଜୟବିଜୟ ଗୁମ୍ଫା ପ୍ରଭୃତି ଉଲ୍ଲେଖଯୋଗ୍ୟ । ବ୍ରାହ୍ମୀ ଲିପିରେ ଓ ପ୍ରାକୃତ ଭାଷାରେ ଲିଖିତ ସତର ଧାଡ଼ି ବିଶିଷ୍ଟ ହାତୀଗୁମ୍ଫା ଶିଳାଲେଖ ଆଜି ମଧ୍ୟ ତତ୍କାଳୀନ ସଂସ୍କୃତିର ସୂଚନା ପ୍ରଦାନ କରିଥାଏ ।

ସେହିପରି ସମୁଦ୍ର ପତ୍ତନଠାରୁ ପ୍ରାୟ ୧୦୦ଫୁଟ ଉଚ୍ଚତାରେ ଅବସ୍ଥିତ ସାରଙ୍ଗଗଡ଼ ଦୁର୍ଗ, ଓଡ଼ିଶାର ରାଜଧାନୀ ଭୁବନେଶ୍ୱର ନିକଟସ୍ଥ ଚନ୍ଦକା ସଂରକ୍ଷିତ ଜଙ୍ଗଲ ମଧ୍ୟରେ ଅବସ୍ଥିତ । ସାରଙ୍ଗଗଡ଼ ନାମରେ ଏହି ପ୍ରସିଦ୍ଧ ଦୁର୍ଗ ସୋମବଂଶୀ ରାଜା ଲଲାଟେନ୍ଦୁ କେଶରୀଙ୍କ ଦ୍ୱାରା ସ୍ଥାପନ କରାଯାଇଥିଲା । ପରବର୍ତ୍ତୀ କାଳରେ ସୋମବଂଶୀ ରାଜା କର୍ଣ୍ଣକେଶରୀ ଦେବଙ୍କୁ ପରାସ୍ତ କରି ଗଙ୍ଗବଂଶର ପ୍ରତିଷ୍ଠାତା ଅନନ୍ତବର୍ମନ୍ ଚୋଡ଼ଗଙ୍ଗଦେବ ୧୦୧୦ ଖ୍ରୀଷ୍ଟାବ୍ଦରେ ଏହି ସାରଙ୍ଗଗଡ଼ ଦୁର୍ଗକୁ ଅଧିକାର କରିଥିଲେ । ସେହିଦିନଠାରୁ ଏହି ଦୁର୍ଗ ଚୁଡ଼ଙ୍ଗଗଡ ନାମରେ ପରିଚିତ । ଇତିହାସର ମୂକସାକ୍ଷୀ ଏହି ଗଡ଼ ପର୍ଯ୍ୟଟକମାନଙ୍କୁ ବହୁ ଭାବରେ ଆକୃଷ୍ଟ କରିଥାଏ ।

ଅତୀତରେ କଟକ ଥିଲା ଓଡ଼ିଶାର ରାଜଧାନୀ, କଟକ ସହରର ପଶ୍ଚିମ ଦିଗକୁ ଓଡ଼ିଶାର ବଡ଼ନଦୀ, ମହାନଦୀ ଦୁଇ ଭାଗ ହୋଇ ଦକ୍ଷିଣରେ କାଠଯୋଡ଼ି ଓ ଉତ୍ତରରେ ମହାନଦୀ ନାମରେ ପ୍ରବାହିତ ହେଉଥିଲା । ୧୦୦୬ ଖ୍ରୀଷ୍ଟାବ୍ଦରେ ସୋମବଂଶୀ ରାଜା ମର୍କତକେଶରୀ ବାଇମୁଣ୍ଡିର ପ୍ରେରଣାରେ କଟକକୁ କାଠଯୋଡ଼ିର ବନ୍ୟା ଦାଉରୁ ରକ୍ଷା କରିବା ପାଇଁ ସୁଉଚ୍ଚ ପଥରବନ୍ଧ ନିର୍ମାଣ କରାଇଥିଲେ । ପରବର୍ତ୍ତୀ ସମୟରେ ବାରବାଟୀ ଅର୍ଥାତ୍ ୨୪୦ ଏକର ଜାଗା ଉପରେ ଏହି ଦୁର୍ଗ ସ୍ଥାପନ କରାଯାଇଥିବାରୁ ଏହାର ନାମ ବାରବାଟୀ ଦୁର୍ଗ ହୋଇଥିଲା । ଉତ୍କଳର ସ୍ୱାଧୀନ ରାଜା ଅନଙ୍ଗ ଭୀମଦେବ ଥରେ ତାଙ୍କ ରାଜଧାନୀ ଚୌଦ୍ୱାରରୁ ବଣ ଜଙ୍ଗଲରେ ପରିପୂର୍ଣ୍ଣ ଥିବା ଏହି ଅଞ୍ଚଳକୁ ପରିଭ୍ରମଣରେ ଆସିଥିବା ବେଳେ ଗୋଟିଏ ବଗପକ୍ଷୀ ଶିକାରୀ ଛଞ୍ଚାଣକୁ ମାଡ଼ି ବସିଥିବାର ଦେଖିଲେ, ତେଣୁ ଏହି ସ୍ଥାନଟିର ଗୁରୁତ୍ୱ ତଥା ମାହାତ୍ମ୍ୟ ଅନୁଭବ କରି ସେ ଏଠାରେ ରାଜଧାନୀ ସ୍ଥାପନ କରିବାକୁ ସିଦ୍ଧାନ୍ତ ନେଲେ । ଦୁର୍ଗଟି ସୁଉଚ୍ଚ ପ୍ରାଚୀର ଦ୍ୱାରା ଚାରିଦିଗରୁ ଆବୃତ୍ତ । ପ୍ରାଚୀରର ଚାରିପଟେ ଗଭୀର ଗଡ଼ଖାଇ ଦୁର୍ଗକୁ ସୁରକ୍ଷା ପ୍ରଦାନ କରୁଅଛି । ଏହି ପରିଖା ଗୋଟିଏ ଗୁପ୍ତ ନାଳ ଦ୍ୱାରା ମହାନଦୀ ସହ ସଂଯୁକ୍ତ ।

ଶତ୍ରୁମାନଙ୍କ କବଳରୁ ଦୁର୍ଗକୁ ରକ୍ଷା କରିବା ପାଇଁ ଗଡ଼ ମଧ୍ୟକୁ ଏକମାତ୍ର ପ୍ରବେଶ ଦ୍ୱାର ରହିଛି ।

ଐତିହାସିକ ଆବୁଲ ଫାଜଲ୍ କୁହନ୍ତି, ରାଜା ମୁକୁନ୍ଦଦେବଙ୍କ ଦ୍ୱାରା ୧୫୫୯–୧୫୬୮ ଖ୍ରୀଷ୍ଟାବ୍ଦ ମଧ୍ୟରେ ଏଠାରେ ପଥରରେ ନବତଳ ପ୍ରାସାଦ ନିର୍ମାଣ କରାଯାଇଥିଲା । ପ୍ରାସାଦର ତଳ ମହଲାରେ ହାତୀ, ଘୋଡ଼ା, ଦ୍ୱିତୀୟ ମହଲାରେ ଯୁଦ୍ଧୋପକରଣ ଓ ତହିଁର ସୁରକ୍ଷା କର୍ମଚାରୀ, ତୃତୀୟ ମହଲାରେ ରାଜାନୁଚର ଓ ପ୍ରହରୀବର୍ଗ, ଚତୁର୍ଥ ମହଲାରେ ଶିଳ୍ପୀଗଣ, ପଞ୍ଚମ ମହଲାରେ ରନ୍ଧନ ଶାଳା, ଷଷ୍ଠ ମହଲାରେ ରାଜସଭା, ସପ୍ତମ ମହଲାରେ ଗୋପନୀୟ ମନ୍ତ୍ରଣାଳୟ ଓ ରାଜକର୍ମାଳୟ, ଅଷ୍ଟମ ମହଲାରେ ରାଣୀ ଅନ୍ତଃପୁର, ନବମ ମହଲାରେ ସ୍ୱୟଂରାଜା ଅବସ୍ଥାନ କରୁଥିଲେ । ପ୍ରାଚୀନ ଭାରତରେ କୌଣସି ରାଜାମାନଙ୍କ ଦ୍ୱାରା ଏପରି ନବତଳ ପ୍ରାସାଦ ନିର୍ମାଣର ଉଦାହରଣ ଦେଖାଯାଏ ନାହିଁ । ଗଡ଼ମଧ୍ୟରେ ଗଡ଼ଚଣ୍ଡୀଙ୍କ ମନ୍ଦିର ଓ ଗଡ଼ ବାହାରେ ମହାନଦୀ କୂଳରେ ପ୍ରସିଦ୍ଧ ଗଡ଼ ଗଡ଼େଶ୍ୱରଙ୍କ ମନ୍ଦିର ରହିଛି । ଏହି ଗଡ଼ଟି କଳାପାହାଡ଼ର ଆକ୍ରମଣରେ ଧ୍ୱଂସବିଧ୍ୱସ୍ତ ହୋଇଥିଲା ।

ଶେଷ ସ୍ୱାଧୀନ ରାଜା ମୁକୁନ୍ଦଦେବଙ୍କୁ ହତ୍ୟା କରି ମୁସଲମାନ ସେନାପତି କଳାପାହାଡ଼ ଓଡ଼ିଶାକୁ ଅଧିକାର କରିଥିଲେ । ଅଧୁନା ଏହା ମଧ୍ୟରେ ଇନ୍‌ଡୋର ଷ୍ଟାଡ଼ିୟମ୍ ଓ ଏହାର ସମ୍ମୁଖରେ ବାରବାଟୀ ଷ୍ଟାଡିୟମ୍ ନିର୍ମାଣ କରାଯାଇଛି । ଦୁର୍ଗର ଧ୍ୱଂସାବଶେଷ ଏବେବି ପ୍ରତ୍ନତାତ୍ତ୍ୱିକ ସର୍ବେକ୍ଷଣ ସଂସ୍ଥାଦ୍ୱାରା ଜାତୀୟ ଐତିହ୍ୟ ଭାବେ ସଂରକ୍ଷିତ ।

ଅତୀତରେ ଓଡ଼ିଶାରେ ମାତ୍ର ୧୩ଟି ଜିଲ୍ଲା ଥିଲା । ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ପ୍ରୟାସରେ ଆଜି ତାହା ୩୦ଟି ଜିଲ୍ଲାରେ ପରିଣତ ହୋଇଛି । ପ୍ରତ୍ୟେକ ଜିଲ୍ଲାରେ ଊଣା ଅଧିକ ବହୁ ପର୍ଯ୍ୟଟନସ୍ଥଳୀ ସବୁ ରହିଛି । ଯାହା ପର୍ଯ୍ୟଟକମାନଙ୍କୁ ବିଶେଷ ଭାବେ ଆକୃଷ୍ଟ କରିଥାଏ । ଆସନ୍ତୁ, ତେବେ ଆଜି ଅବିଭକ୍ତ ପୁରୀ ଓ କଟକ ଜିଲ୍ଲାର ବିଭିନ୍ନ ପର୍ଯ୍ୟଟନସ୍ଥଳୀ ମଧ୍ୟରୁ କେତେକଙ୍କ ସଂପର୍କରେ ଆଲୋଚନା କରିବା ।

ଅବିଭକ୍ତ ପୁରୀ ଜିଲ୍ଲାର ଉପଖଣ୍ଡ ଖୋର୍ଦ୍ଧା ଅଧୁନା ଜିଲ୍ଲାର ମାନ୍ୟତା ଲଭିଛି । ଏହି ଜିଲ୍ଲା ଅନ୍ତର୍ଗତ ଭୁବନେଶ୍ୱର ଓଡ଼ିଶାର ରାଜଧାନୀ । ଏଠାରେ ଅନେକ ଐତିହାସିକ ପୀଠ ରହିଥିବା ବେଳେ ପର୍ଯ୍ୟଟକମାନଙ୍କୁ ଆକୃଷ୍ଟ କରିବା ପାଇଁ ରହିଛି ରାଜ୍ୟ ସଂଗ୍ରହାଳୟ । ଏଠାରେ ବିଭିନ୍ନ ଐତିହାସିକ ତଥ୍ୟ, ଚିତ୍ରକଳା, ମୂର୍ତ୍ତିକଳାର ସଂରକ୍ଷଣ ସହ ଦୁର୍ଲଭ ପୋଥି ଓ କାଳର କରାଳ ଗର୍ଭରେ କ୍ରମଶଃ ଲୁଚିଯାଉଥିବା ବିଭିନ୍ନ ବସ୍ତୁ, ପୁସ୍ତକ, କଳାକୌଶଳ ସବୁକୁ ଯତ୍ନର ସହ ସଂରକ୍ଷିତ କରାଯାଇଛି । ଏହା ପର୍ଯ୍ୟଟକମାନଙ୍କୁ ବିମୋହିତ କରେ । ଏଠାରେ ରହିଛି ଗ୍ରହ ନକ୍ଷତ୍ରମାନଙ୍କର ଏକ ପର୍ଯ୍ୟବେକ୍ଷଣଶାଳା 'ପଠାଣି ସାମନ୍ତ ପ୍ଲାନେଟୋରିୟମ୍' । ଗ୍ରହ ନକ୍ଷତ୍ରମାନଙ୍କର ଅବସ୍ଥିତି, ମହାକାଶ ସମ୍ବନ୍ଧୀୟ ବିଶେଷ ଜ୍ଞାନ ତଥା ବିଭିନ୍ନ ମହାଜାଗତିକ ଘଟଣାବଳୀକୁ ଏଠାରୁ ଅନୁଧ୍ୟାନ କରାଯାଏ ଓ ତାହା ଅନୁସନ୍ଧିତ୍ସୁ ଦର୍ଶକମାନଙ୍କୁ ଦେଖେଇ ଦିଆଯାଏ । ଭୁବନେଶ୍ୱରର ଅଦୂରରେ ଅର୍ଥାତ୍ ପ୍ରାୟ ୧୫ କି.ମି. ଦୂରରେ ରହିଛି ନନ୍ଦନକାନନ । ନାନା ପ୍ରକାର ଜୀବଜନ୍ତୁ, ସରୀସୃପ, ନାନାପ୍ରକାର ପଶୁପକ୍ଷୀ, ସିଂହସଫାରି, ବାଘସଫାରିକୁ ନେଇ ସମୃଦ୍ଧ ଏହି ଚିଡ଼ିଆଖାନା । ଏଠାରେ ବୋଟିଂର ସୁବିଧା ଥିବା ବେଳେ ରୋପ୍‌ୱେରେ ବସିବାର ଆନନ୍ଦ ମିଳିଥାଏ । ଛୋଟପିଲାମାନଙ୍କ ପାଇଁ ରେଳରେ ବସିବାର ମଜା ମଧ୍ୟ ମିଳେ । ଅଦୂରରେ ଅଛି ବଟାନିକାଲ୍ ଗାର୍ଡେନ । ନାନା ପ୍ରକାର ଉଦ୍ଭିଦ ଏଠାରେ ଦେଖିବାକୁ ମିଳିଥାଏ । ଆଉ ମଧ୍ୟ ଭୁବନେଶ୍ୱରରେ ରହିଛି ରାଜ୍ୟପାଳ ଭବନ, ବିଧାନସୌଧ ଓ ଲୋକସେବା ଭବନ । ତା'ଛଡ଼ା ବଡ଼ ବଡ଼ ହୋଟେଲ, ଅତିଥିଶାଳା ଓ ଅବସର ବିନୋଦନ କେନ୍ଦ୍ର ପ୍ରଭୃତି ମଧ୍ୟ ରହିଛି ।

ପୁରୀ ଜିଲ୍ଲାର କାକଟପୁରର ମା' ମଙ୍ଗଳା ପୀଠ ଏକ ପ୍ରମୁଖ ପର୍ଯ୍ୟଟନସ୍ଥଳୀ । ପ୍ରାଚୀ ନଦୀ ତଟରେ ଅବସ୍ଥିତ ଏହି ପୀଠ ପୁରାଣ ପ୍ରସିଦ୍ଧ ଅଟେ । ମହାପ୍ରଭୁ ଜଗନ୍ନାଥଙ୍କ ନବକଳେବର ସମୟରେ ଦଇତାପତି ଓ ପତି ମହାପାତ୍ର ତଥା ଅନ୍ୟାନ୍ୟ ସେବକମାନେ ଏଠାରେ ଆସି ପରେହି

ପଡ଼ନ୍ତି । ମା'ଙ୍କ ସ୍ୱପ୍ନାଦେଶରେ ଏମାନେ ଦାରୁର ସନ୍ଧାନ ପାଇଥାନ୍ତି । ଅଷ୍ଟଚଣ୍ଡୀଙ୍କ ମଧ୍ୟରୁ ଅନ୍ୟତମା ଏହି ମା' ବିପଦଗ୍ରସ୍ତମାନଙ୍କୁ ବିପଦରୁ ରକ୍ଷା କରିବା ସହ ଜଳପଥରେ ନୌକାଦ୍ୱାରା ଗମନାଗମନ କରୁଥିବା ନାଉରିମାନଙ୍କ ପାଇଁ ଏକମାତ୍ର ବିପଦହାରିଣୀ ଭାବେ ପ୍ରସିଦ୍ଧା ଅଟନ୍ତି ।

ବଣଜଙ୍ଗଲ ଓ ପାହାଡ଼ ପର୍ବତରେ ପରିପୂର୍ଣ୍ଣ ନୟାଗଡ଼ ଜିଲ୍ଲା ପର୍ଯ୍ୟଟକମାନଙ୍କ ମନରେ ଅପାର ଆନନ୍ଦ ଭରି ଦେଇଥାଏ । ଏହି ଜିଲ୍ଲାସ୍ଥିତ ମହାନଦୀର ଦକ୍ଷିଣ ତଟରେ ଅବସ୍ଥିତ ନୀଳମାଧବ ପୀଠ ପର୍ଯ୍ୟଟକମାନଙ୍କୁ ବେଶ୍ ଆକୃଷ୍ଟ କରିଥାଏ । ଏହି ଜିଲ୍ଲାରେ ଲଡୁବାବା ଭାବେ ପ୍ରସିଦ୍ଧ ଲଡୁକେଶ୍ୱର ମନ୍ଦିର ରହିଛି । ଅଦୂରରେ ଖଣ୍ଡପଡ଼ାର ଶ୍ରୀରଘୁନାଥଜୀଉ ଜିଲ୍ଲାର ଗୌରବ ବର୍ଦ୍ଧନ କରୁଛନ୍ତି । ଏହି ଖଣ୍ଡପଡ଼ା ପ୍ରଖ୍ୟାତ ଜ୍ୟୋତିର୍ବିଦ୍ ସାମନ୍ତ ଚନ୍ଦ୍ରଶେଖରଙ୍କ ଜନ୍ମସ୍ଥାନ । ସେ ଦିନେ ବାଉଁଶନଳୀ ସାହାଯ୍ୟରେ ଗ୍ରହ ନକ୍ଷତ୍ରମାନଙ୍କ ଗତିବିଧି ନିରୀକ୍ଷଣ କରି ଯାହା ପ୍ରମାଣ ପୂର୍ବକ ଲେଖି ଯାଇଥିଲେ, ତାହା ଆଜିର ଜ୍ୟୋତିର୍ବିଦ୍‌ମାନଙ୍କ ପାଇଁ ଅନୁକରଣୀୟ ହୋଇଛି । 'ସିଦ୍ଧାନ୍ତ ଦର୍ପଣ' ତାଙ୍କର ମହନୀୟ କୀର୍ତ୍ତି ।

ଖୋର୍ଦ୍ଧା ଜିଲ୍ଲାର ସଦର ମହକୁମାଠାରୁ ଅନତି ଦୂରରେ ରହିଛି ବରୁଣେଇ ପାହାଡ଼, ଅତ୍ରିର ପ୍ରସିଦ୍ଧ ଉଷ୍ଣ ପ୍ରସ୍ରବଣ ଓ ଖୋର୍ଦ୍ଧାର ରାଜଗଡ଼ । ଅତୀତରେ ପୁରୀର ଗଜପତିମାନେ ଏହି ଖୋର୍ଦ୍ଧାଗଡ଼ରେ ଅବସ୍ଥାନ କରୁଥିଲେ । ଏହାର ଧ୍ୱଂସାବଶେଷ ଅଦ୍ୟାପି ପର୍ଯ୍ୟଟକମାନଙ୍କୁ ବିଶେଷ ଆକୃଷ୍ଟ କରିଥାଏ । ଓଡ଼ିଶାର ପ୍ରସିଦ୍ଧ ଲୁଣାପାଣି ହ୍ରଦ ଏହି ଜିଲ୍ଲାରେ ଅବସ୍ଥିତ । ଖୋର୍ଦ୍ଧା, ପୁରୀ ଓ ଗଞ୍ଜାମ ଜିଲ୍ଲାର ସୀମାକୁ ଲାଗିଥିବା ଏହି ହ୍ରଦ ପର୍ଯ୍ୟଟକମାନଙ୍କ ପାଇଁ ବିଶେଷ ଆକର୍ଷଣ ଅଟେ । ୫ନମ୍ବର ରାଜପଥରେ ଭୁବନେଶ୍ୱରରୁ ବାହାରି ପ୍ରାୟ ୧୦୦କି.ମି. ବ୍ରହ୍ମପୁର ଆଡ଼କୁ ଗଲେ ପଡ଼େ ବାଲୁଗାଁ । ଏଠାରୁ ଚିଲିକା ଭ୍ରମଣ ପାଇଁ ବୋଟ୍‌ରେ ଯିବାକୁ ହୋଇଥାଏ । ଏଠାରୁ ପର୍ଯ୍ୟଟକମାନେ ହଜାର ହଜାର ସଂଖ୍ୟାରେ ନଳବଣ, କାଳିଜାଇ ପାହାଡ଼ ବୁଲିବାକୁ ଯାଇଥାନ୍ତି । ପୁରୀପଟରୁ ସାତପଡ଼ାରୁ ମଧ୍ୟ ପର୍ଯ୍ୟଟକମାନେ ଚିଲିକାରେ ନୌକାବିହାର କରିଥାନ୍ତି ଓ ଡଲଫିନ୍ ଦେଖିବାକୁ ଆସିଥାନ୍ତି । ଶୀତଦିନେ ଲକ୍ଷ ଲକ୍ଷ ସଂଖ୍ୟାରେ ରଙ୍ଗବେରଙ୍ଗର ପକ୍ଷୀ ମଧ୍ୟ ଏସିଆ ଓ ସାଇବେରିଆ ଆଦି ଅଞ୍ଚଳରୁ ଏଠାକୁ ଆସିଥାନ୍ତି । ଦର୍ଶକମାନଙ୍କ ପାଇଁ ଏହା ମୁଖ୍ୟ ଆକର୍ଷଣ । ୧୧୦୦କି.ମି. ପରିବ୍ୟାପ୍ତ ଏହି ଲୁଣିପାଣି ହ୍ରଦ ଏସିଆ ମହାଦେଶର ସର୍ବବୃହତ୍ ହ୍ରଦର ମାନ୍ୟତା ଲାଭ କରିଛି । ଏହାର ମୁହାଣ ବଙ୍ଗୋପ ସାଗରକୁ ଛୁଇଁଛି । ଏହା ମଧ୍ୟରେ ପାରିକୁଦ ରାଜବାଟୀ ଥିବାବେଳେ କୃଷ୍ଣପ୍ରସାଦ ନାମରେ ଗୋଟିଏ ବ୍ଲକ୍ ମଧ୍ୟ ଅଛି । ଚିଲିକାକୁ ବାଲୁଗାଁ, ସାତପଡ଼ା ଓ ରମ୍ଭାପଟରୁ ପ୍ରବେଶ ପଥ ରହିଛି । ଏଠାରେ ପ୍ରାୟ ୧୬୦ ପ୍ରକାର ମାଛ, ଅସଂଖ୍ୟ ପ୍ରଜାତିର ପକ୍ଷୀ, କଇଁଚ, କଙ୍କଡ଼ା ଓ ଚିଙ୍ଗୁଡ଼ି ପ୍ରଭୃତି ଦେଖିବାକୁ ମିଳନ୍ତି । ନୌକାବିହାର ସମୟରେ ଅଦୂରରେ ଥିବା ମାମୁ ଭଣଜା, ଘଣ୍ଟଶିଳା, ଭାଲେରି, ଚଢ଼େଇହଗା ପାହାଡ଼ ଆଉ ଚିଲିକା ମଧ୍ୟରେ ଶହ ଶହ ସଂଖ୍ୟାରେ ଭାସୁଥିବା ବୋଟ୍ ଓ ଡଙ୍ଗା ତଥା ଅସଂଖ୍ୟ ପ୍ରକାର ପକ୍ଷୀ ଦର୍ଶକମାନଙ୍କ ମନକୁ ମୁଗ୍ଧ କରିଦେଇଥାଏ ।

ବାଲୁଗାଁଠାରୁ କିଛି ଦୂରରେ ରହିଛି ବାଣାସୁର ଦ୍ୱାରା ପ୍ରତିଷ୍ଠିତ ବାଣପୁରର ଭଗବତୀଙ୍କ ପୀଠ । ଅଷ୍ଟଚଣ୍ଡୀଙ୍କ ମଧ୍ୟରୁ ଅନ୍ୟତମା ଅଟନ୍ତି ମା' ଭଗବତୀ । ପଶ୍ଚିମକୁ ମୁଖ କରିଥିବା ମା'ଙ୍କର ଏହି ପୀଠରେ ପ୍ରତିଦିନ ଶ୍ରଦ୍ଧାଳୁମାନଙ୍କର ଭିଡ଼ ଜମେ । ଏଠାରୁ କିଛି ଦୂରରେ ରହିଛି ନାରାୟଣୀଙ୍କ ପୀଠ । ବନବାସିନୀ ମା' ନାରାୟଣୀ ଭକ୍ତମାନଙ୍କୁ ଅଭୟ ପ୍ରଦାନ କରିଥାନ୍ତି ।

ଓଡ଼ିଶା ଶ୍ରୀଜଗନ୍ନାଥଙ୍କ ପାଇଁ ବିଶ୍ୱ ଦରବାରରେ ପରିଚିତ । ଏଣୁ ଅତୀତରେ ଏଠାକୁ ବହୁ ବିଶିଷ୍ଟ ସାଧୁସନ୍ଥ ଧର୍ମପ୍ରଚାରକ ଆସି ଏହି କ୍ଷେତ୍ରର ଗୌରବ ବର୍ଦ୍ଧନ କରିଛନ୍ତି । ଏମାନଙ୍କ ମଧ୍ୟରୁ ଆଚାର୍ଯ୍ୟଶଙ୍କର, ରାମାନୁଜ, ମାଧ୍ୱାଚାର୍ଯ୍ୟ କବୀର, ନାନକ, ଶ୍ରୀଚୈତନ୍ୟ, ଉତ୍କଳୀୟ ପଞ୍ଚସଖାଗଣ ପ୍ରସିଦ୍ଧ ଅଟନ୍ତି ।

ଭାରତ ନାମକ ପୁଷ୍କରିଣୀରେ ପ୍ରସ୍ଫୁଟିତ ଉତ୍କଳ କମଳର କେଶର ଭାବେ ଏହି ଶ୍ରୀଜଗନ୍ନାଥଙ୍କ

ଶ୍ରୀକ୍ଷେତ୍ର(ନୀଳାଚଳ) ପ୍ରସିଦ୍ଧ ଅଟେ । ଏହି କ୍ଷେତ୍ର କେବଳ ଆଧ୍ୟାତ୍ମିକବାଦୀଙ୍କୁ ଆକୃଷ୍ଟ କରେ ନାହିଁ । ମହୋଦଧି ଭାବେ ଖ୍ୟାତ, ଏହାର ସୁଦୀର୍ଘ ବେଳାଭୂମି ଯାହା ପର୍ଯ୍ୟଟକମାନଙ୍କ ପାଇଁ ମଧ୍ୟ ଯଥେଷ୍ଟ ଖୋରାକ୍ ଯୋଗାଇଥାଏ । ପର୍ଯ୍ୟଟକଗଣ ଏହି ବେଳାଭୂମିରେ ବସି, ସମୁଦ୍ରରେ ସ୍ନାନ କରି, ଲହଡ଼ିଭାଙ୍ଗି ପରମାନନ୍ଦ ଲାଭ କରିଥାନ୍ତି । ଭାବୁକଗଣ ଭାବରାଜ୍ୟରେ ବିଚରଣ କରୁଥିବା ବେଳେ, ସାଧକମାନେ ବ୍ରହ୍ମାନନ୍ଦ ଲଭିଥାନ୍ତି । ସବୁ ଶ୍ରେଣୀର ପର୍ଯ୍ୟଟକମାନଙ୍କୁ ଏହି କ୍ଷେତ୍ର ଆକର୍ଷିତ କରିଥାଏ ।

ବାରମାସରେ ତେରଯାତ୍ରା ହେଉଥିବା ଶ୍ରୀକ୍ଷେତ୍ରର ରଥଯାତ୍ରା ବିଶ୍ୱପ୍ରସିଦ୍ଧ । ଜାତି, ଧର୍ମ, ବର୍ଣ୍ଣ, ସମ୍ପ୍ରଦାୟ ନିର୍ବିଶେଷରେ ସମସ୍ତେ ଏଥିରେ ସାମିଲ ହୋଇଥାନ୍ତି । ବାସ୍ତବରେ ଶ୍ରୀକ୍ଷେତ୍ର ଯୋଗୁଁ ଉତ୍କଳ ସମଗ୍ର ବିଶ୍ୱରେ ପରିଚିତ । ଏହାର ଦକ୍ଷିଣକୁ କିଛି ଦୂରରେ ରହିଛି ବ୍ରହ୍ମଗିରିର ଅଲାରନାଥ ଓ ବାଲି ହରଚଣ୍ଡୀ । ବ୍ରହ୍ମଗିରିଠାରୁ କିଛି ଦୂରରେ ରହିଛି ସାତପଡ଼ା, ଚିଲିକା ତଟର ଏହି ସାତପଡ଼ା ପର୍ଯ୍ୟଟକମାନଙ୍କ ପାଇଁ ଏକ ଅନନ୍ୟ ପର୍ଯ୍ୟଟନ ସ୍ଥଳୀ । ଏଠାରେ ବହୁ ପରିମାଣରେ ଡଲ୍‌ଫିନ୍‌ମାନଙ୍କୁ ଦେଖିବାକୁ ମିଳେ । ତା'ଛଡ଼ା ଚିଲିକା ହ୍ରଦରେ ନୌକାବିହାର ପର୍ଯ୍ୟଟକମାନଙ୍କୁ ବିଶେଷ ଭାବେ ଆକର୍ଷିତ କରିଥାଏ । ସେହିପରି ଉତ୍ତରରେ ପ୍ରାୟ ୩୫କି.ମି. ଦୂରରେ ରହିଛି ଉତ୍କଳୀୟ କଳାକୌଶଳର ମୂକସାକ୍ଷୀ କୋଣାର୍କ ମନ୍ଦିର । ଲାଙ୍ଗୁଡ଼ା ନରସିଂହ ଦେବଙ୍କ ଦ୍ୱାରା ଚନ୍ଦ୍ରଭାଗା ନଦୀ ମୁହାଣରେ ନିର୍ମିତ ଏହି ଭବ୍ୟ ମନ୍ଦିର ବାରଶହ ବଢ଼େଇଙ୍କ ୧୨ ବର୍ଷ ଶ୍ରମର ଉତ୍କୃଷ୍ଟ ନିଦର୍ଶନ । ଯାହା ଆଜି ବି ପର୍ଯ୍ୟଟକମାନଙ୍କ ମନରେ ବିଶୁ ମହାରଣାର ପୁତ୍ର ଧର୍ମପଦର ସ୍ମୃତିକୁ ଉଜ୍ଜୀବିତ କରିଥାଏ । ମନ୍ଦିର ଗାତ୍ରରେ ଖୋଦିତ ବିଭିନ୍ନ ମୂର୍ତ୍ତି, ରଥର ଚକ୍ର ନାନା ପ୍ରକାର ସୂକ୍ଷ୍ମ କାରୁକାର୍ଯ୍ୟ ନିର୍ଜୀବ ପଥରକୁ ଯେପରି ଜୀବନ୍ତ କରି ତୋଳିଛି । ଏହା ପର୍ଯ୍ୟଟକମାନଙ୍କ ମନୋହରଣ କରିଥାଏ । ଏଥିପାଇଁ ଉତ୍କଳୀୟମାନେ ନିଜକୁ ଗୌରବାନ୍ୱିତ ମନେ କରିଥାନ୍ତି । ଏଠାକାର ସମୁଦ୍ର ଉପକୂଳ ଚନ୍ଦ୍ରଭାଗା ନାମରେ ପ୍ରସିଦ୍ଧ । ପୁରୀ ଭୁବନେଶ୍ୱର ମୁଖ୍ୟ ରାସ୍ତାର ଉତ୍ତର ପଟକୁ ଅଛି ସାକ୍ଷୀଗୋପାଳ ମନ୍ଦିର ଓ ସତ୍ୟବାଦୀ ବନବିଦ୍ୟାଳୟ, ଯାହା ପର୍ଯ୍ୟଟକମାନଙ୍କୁ ଅପାର ଆନନ୍ଦ ପ୍ରଦାନ କରିଥାଏ । ଅବିଭକ୍ତ ପୁରୀ- ଜିଲ୍ଲା ଅନ୍ତର୍ଗତ ଭୁବନେଶ୍ୱର ଆଜି ଓଡ଼ିଶାର ରାଜଧାନୀ ରୂପେ ପ୍ରସିଦ୍ଧ । ଏହାକୁ ମନ୍ଦିରମାଳିନୀ ନଗରୀର ମର୍ଯ୍ୟାଦା ମିଳିଛି । ଏଠାରେ ଏକାଦଶ ଶତାବ୍ଦୀର ସୋମବଂଶୀ ରାଜା ପରମ ଶିବ ଉପାସକ ଯଯାତିକେଶରୀଙ୍କ ଦ୍ୱାରା ପ୍ରତିଷ୍ଠିତ ୧୮୦ଫୁଟ ଉଚ୍ଚତା ବିଶିଷ୍ଟ ଲିଙ୍ଗରାଜ ମନ୍ଦିର ପର୍ଯ୍ୟଟକମାନଙ୍କ ପାଇଁ ମୁଖ୍ୟ ଆକର୍ଷଣ । ତା'ଛଡ଼ା ରାଜାରାଣୀ ମନ୍ଦିରର ସୂକ୍ଷ୍ମ କାରୁକାର୍ଯ୍ୟ ଉନ୍ନତ କଳାକୌଶଳ ତତ୍‌କାଳୀନ ଭାସ୍କର୍ଯ୍ୟ କଳାର ଏକ ଅପୂର୍ବ ଉଦାହରଣ । ମୁକ୍ତେଶ୍ୱର ମନ୍ଦିର, ବ୍ରହ୍ମେଶ୍ୱର ମନ୍ଦିର, କପିଳେଶ୍ୱର ମନ୍ଦିର, କେଦାରଗୌରୀ ମନ୍ଦିର, ଅନନ୍ତ ବାସୁଦେବ ମନ୍ଦିର ପ୍ରଭୃତି ଅତୀତର ଐତିହ୍ୟକୁ ସ୍ମରଣ କରାଇଦେଇଥାଏ । କୁରୁକ୍ଷେତ୍ରର ବ୍ରହ୍ମ ସରୋବର ପରି ବିନ୍ଦୁସାଗର ନାମରେ ଏକ ଦର୍ଶନୀୟ ସରୋବର ଏଠାରେ ରହିଛି । ପୁରୀର ଶ୍ରୀକ୍ଷେତ୍ର, କୋଣାର୍କ ଓ ଭୁବନେଶ୍ୱରକୁ ସ୍ୱର୍ଣ୍ଣ ତ୍ରିଭୁଜ ନାମରେ ନାମିତ କରାଯାଇଛି । ଅବିଭକ୍ତ କଟକ ଜିଲ୍ଲା ଆଜି ଚାରିଟି ଜିଲ୍ଲାରେ ପରିଣତ ହୋଇଛି । ଓଡ଼ିଶାର ବଡ଼ ନଦୀ ମହାନଦୀ ପାରାଦ୍ୱୀପ ନିକଟରେ ବଙ୍ଗୋପ ସାଗରରେ ପଡ଼ିଛି । ଏହି ନଦୀର ଦୁଇ ପାର୍ଶ୍ୱରେ ଅନେକ ପ୍ରସିଦ୍ଧ ମନ୍ଦିର ରହିଥିବା ବେଳେ ଅଂଶୁପା ନାମକ ଏକ ମଧୁର ଜଳର ହ୍ରଦ ରହିଛି । କଟକ ସହରଠାରୁ ପଶ୍ଚିମକୁ ପ୍ରାୟ ୫୦-୬୦କି.ମି. ଦୂରରେ ଅବସ୍ଥିତ ଏହି ହ୍ରଦର ଚାରିପଟେ ସରଣ୍ଡା ପାହାଡ଼, ବାଉଁଶ ବଣ ଓ ଆମ୍ବତୋଟା ରହିଛି । ମହାନଦୀ ତଟର ଉତ୍ତର ପାର୍ଶ୍ୱରେ ଅବସ୍ଥିତ ଏହି ହ୍ରଦ ଆଠଗଡ଼ ଉପଖଣ୍ଡରେ ଅବସ୍ଥିତ । ଶୀତଋତୁରେ ଏହି ହ୍ରଦକୁ ବହୁ ସଂଖ୍ୟାରେ ବିଦେଶାଗତ ପକ୍ଷୀମାନେ ଆସିଥାନ୍ତି । ରକ୍ଷଣାବେକ୍ଷଣ ଅଭାବରୁ ପ୍ରକୃତି ରାଣୀର ଏହି ଅମୂଲ୍ୟ ସମ୍ପଦ ଅଂଶୁପା ଧୀରେ ଧୀରେ ପୋତି ହେବାରେ ଲାଗିଛି । ଏହାର ପଶ୍ଚିମ ଦିଗକୁ ଅନତି ଦୂରରେ ରହିଛି ବଡ଼ମ୍ବାର ପ୍ରସିଦ୍ଧ ଶକ୍ତିପୀଠ ଭଟ୍ଟାରିକା । ମହାନଦୀର ଉତ୍ତର ତଟରେ ରତ୍ନଗିରି ପର୍ବତର ପାଦଦେଶରେ ଅବସ୍ଥିତ ଏହି ପୀଠ ତତ୍‌କାଳୀନ ବଡ଼ମ୍ବା ରାଜ୍ୟର ଇଷ୍ଟଦେବୀ ରୂପେ ପୂଜିତା । ଭଟ୍ଟାରିକା ଅର୍ଥ

ରକ୍ଷାକାରିଣୀ । ଅତୀତରେ ନାଉରିଆମାନେ ମହାନଦୀରେ ଡଙ୍ଗା ନେଇ ଗଲାବେଳେ ସୁରକ୍ଷିତ ଯାତ୍ରା ପାଇଁ ମା'ଙ୍କୁ ଡାକିଥାନ୍ତି ।

କଟକ ଜିଲ୍ଲାର ଅନ୍ୟ ଏକ ଉପଖଣ୍ଡ ବାଙ୍କୀ । କଟକରୁ ପ୍ରାୟ ୫୦କି.ମି. ଦୂର ମହାନଦୀର ଦକ୍ଷିଣ ପାର୍ଶ୍ୱରେ ରେଣୁକା ନଦୀ ତଟରେ ଅବସ୍ଥିତ ମା'ଚର୍ଚ୍ଚିକାଙ୍କ ପ୍ରସିଦ୍ଧ ଶକ୍ତିପୀଠ । ଭଗବାନ ପର୍ଶୁରାମଙ୍କ ତପସ୍ୟାସ୍ଥଳୀ ଏହି ରୁଚିକା ପାହାଡ଼ ଉପରେ ଅବସ୍ଥିତ ମା' ଚର୍ଚ୍ଚିକାଙ୍କ ପୀଠ ଦର୍ଶକମାନଙ୍କ ମନରେ ଆଧ୍ୟାତ୍ମିକ ଭାବ ଜାଗ୍ରତ କରିଥାଏ । ଉତ୍କଳରେ ପୂଜା ପାଉଥିବା ଅଷ୍ଟଚଣ୍ଡୀଙ୍କ ମଧ୍ୟରୁ ବାଙ୍କୀଗଡ଼ର ଚର୍ଚ୍ଚିକା ଅନ୍ୟତମ । କଟକରୁ ଫୁଲନଖରା, ଅଡ଼ଶପୁର, ନିଆଳୀ, କାକଟପୁର ଦେଇ ଗଲେ ପଡ଼େ ଅସ୍ତରଙ୍ଗ । ଏହି ରାଜ୍ୟ ରାଜପଥର ଦକ୍ଷିଣପଟେ ପ୍ରବାହିତା ପ୍ରାଚୀ ନଦୀ ପୁରାଣ ପ୍ରସିଦ୍ଧା ଅଟେ ।

ଓଡ଼ିଶାର ସରସ୍ୱତୀ ନଦୀ ଭାବେ ପରିଚିତା ଏହି ପ୍ରାଚୀ ନଦୀର ଉଭୟ ପାର୍ଶ୍ୱରେ ଅନେକ ମଠ ମନ୍ଦିର ରହିଛି । ତନ୍ମଧ୍ୟରୁ ନିଆଳୀ ମାଧବଙ୍କ ପୀଠ ଅନ୍ୟତମ । ବନବାସ ସମୟରେ ପଞ୍ଚୁପାଣ୍ଡବମାନେ ଏଠାରେ ଅବସ୍ଥାନ ପୂର୍ବକ ମାଧବଙ୍କ ଦର୍ଶନ କରିଥିବାର ଜଣାଯାଏ । ଏହି ନଦୀ ତଟରେ ଦ୍ୱାଦଶ ଶମ୍ଭୁଙ୍କ ପବିତ୍ର ପୀଠ ଥିବା ବେଳେ 'ଗୀତଗୋବିନ୍ଦ'ର ରଚୟିତା ଭକ୍ତକବି ଜୟଦେବଙ୍କ ଜନ୍ମପୀଠ କେନ୍ଦୁବିଲ୍ୱ ରହିଛି ।

କଟକରୁ ଜଗତ୍‌ସିଂହପୁରକୁ ୫୫ନମ୍ବର ରାଜପଥରେ ୨୦କି.ମି. ଆସିଲେ ଦକ୍ଷିଣ ପଟେ ରହିଛି ଧ୍ୟାନକୁଦ ପୀଠ । ଅନନ୍ତ, ଅଚ୍ୟୁତ, ଯଶୋବନ୍ତ, ବଳରାମ ଓ ଜଗନ୍ନାଥ ପ୍ରଭୃତି ପଞ୍ଚସଖା ଷୋଡ଼ଶ ଶତାବ୍ଦୀରେ ଉତ୍କଳରେ ଜ୍ଞାନମିଶ୍ରା ଭକ୍ତିବାଦର ପ୍ରଚଳନ କରିଥିଲେ । ସେମାନେ ଏଠାରେ ମିଳିତ ହୋଇ ଧ୍ୟାନ କରିଥିବାର ଜଣାଯାଏ । ଜିଲ୍ଲାର ଏକ ପ୍ରମୁଖ ପର୍ଯ୍ୟଟନସ୍ଥଳୀ ଭାବେ ଖ୍ୟାତ ବିଲୁଆଖାଇ ନଦୀର ଉତ୍ତର ତଟରେ ଅବସ୍ଥିତ ଏହି ପୀଠରେ ଏକ ଭବ୍ୟ ଜଗନ୍ନାଥ ମନ୍ଦିର ଓ ସିଦ୍ଧସାଧକ ଅରକ୍ଷିତ ଦାସଙ୍କ ସାଧନା ପୀଠ ରହିଛି । ଏଠାରୁ କିଛି ବାଟ ଜଗତ୍‌ସିଂହପୁର ଆଡ଼କୁ ଗଲେ ରାଜରାସ୍ତାର ବାମପାର୍ଶ୍ୱରେ ଅଢଙ୍ଗଗଡ଼ରେ ପଡ଼େ ପଞ୍ଚସଖାଙ୍କ ମଧ୍ୟରୁ ଅନ୍ୟତମ ସିଦ୍ଧସାଧକ ଶ୍ରୀ ଯଶୋବନ୍ତ ଗୋସ୍ୱାମୀଙ୍କ ସାଧନା ପୀଠ । ଏଠାରେ ମାର୍ଗଶିର ମାସ ଓଡ଼ଣଷଷ୍ଠୀରେ ଶ୍ରୀକ୍ଷେତ୍ର ଉତ୍ସବ ମହାସମାରୋହରେ ପାଳିତ ହୋଇଥାଏ । ଏହା ପରେ ଜଗତ୍‌ସିଂହପୁର ସହରରୁ ଜଇପୁର ରାସ୍ତାରେ ୧୩କି.ମି. ଗଲେ କେରେକେରାଠାରେ ରହିଛି ପ୍ରସିଦ୍ଧ ଗୋରେଖନାଥଙ୍କ ସାଧନା ପୀଠ, ଏଠାରୁ ପ୍ରାୟ ୫କି.ମି ଦୂରରେ ପଡ଼େ ବାକ୍‌ବାଦିନୀ ମା'ଶାରଳାଙ୍କ ପୀଠ । ଶୁଣିବାକୁ ମିଳେ, ମାତୃହତ୍ୟା ପାପରୁ ମୁକ୍ତି ପାଇବା ପାଇଁ ଶକ୍ତିପୀଠ ଭ୍ରମଣ କରୁଥିବା ଭଗବାନ ପର୍ଶୁରାମ ତାଙ୍କୁ ମାଟିତଳୁ ଉଦ୍ଧାର କରି ଏଠାରେ ପ୍ରତିଷ୍ଠା କରିଥିଲେ । ମା'ଶାରଳାଙ୍କ କୃପାରୁ ଦିନେ ସିଦ୍ଧେଶ୍ୱର ପରିଡ଼ା ଶୂଦ୍ରମୁନି ସାରଳା ଦାସ ନାମରେ ଓଡ଼ିଆ ଭାଷାର 'ଆଦିକବି' ଭାବେ ପ୍ରସିଦ୍ଧି ଲାଭ କରିଥିଲେ । ତାଙ୍କର ସାଧନାପୀଠ ମଧ୍ୟ ଅନତି ଦୂରରେ ଅବସ୍ଥିତ । ଏଠାରୁ ପ୍ରାୟ ୫୦କି.ମି ଦୂରରେ ରହିଛି ପାରାଦୀପ ବନ୍ଦର । ପୂର୍ବ ଉପକୂଳରେ ଥିବା ଏକ ଗଭୀର ପୋତାଶ୍ରୟ ଭାବରେ ଏହାର ଖ୍ୟାତି ରହିଛି । ପ୍ରବାଦପୁରୁଷ ବିଜୁ ପଟ୍ଟନାୟକଙ୍କ ପ୍ରଚେଷ୍ଟାରେ ସେତେବେଳେ ଏହି ବନ୍ଦର ପ୍ରତିଷ୍ଠା ହୋଇଥିଲା । ବର୍ତ୍ତମାନର ଜଗତ୍‌ସିଂହପୁର ଜିଲ୍ଲାରେ ଏତଦ୍‌ବ୍ୟତୀତ ଆହୁରି ଅନେକ ପର୍ଯ୍ୟଟନସ୍ଥଳୀ ଯଥା- ଧ୍ରୁବଙ୍କ ତପସ୍ୟାସ୍ଥଳୀ ଧର୍ତ୍ତଙ୍ଗଗଡ଼, ଶିଆଳି ବେଳାଭୂମି, ବଟଶ୍ରୀକ୍ଷେତ୍ର, ଗଡ଼କୁଜଙ୍ଗର ସୁଭଦ୍ରାପୀଠ ପର୍ଯ୍ୟଟକମାନଙ୍କ ପାଇଁ ମନୋରଞ୍ଜନର ଖୋରାକ୍ ଯୋଗାଇଥାଏ । ଇତିହାସ କହେ ୧୫୬୮ ମସିହାରେ କଳାପାହାଡ଼ ଯେତେବେଳେ ଓଡ଼ିଶା ଆକ୍ରମଣ କରି ଚତୁର୍ଦ୍ଧାମୂର୍ତ୍ତିଙ୍କୁ ନେଇଯାଇ ଗଙ୍ଗାନଦୀ ତଟରେ ପୋଡ଼ିଦେବାକୁ ଚେଷ୍ଟା କରିଥିଲା, ସେତେବେଳେ ସେ ଏଥିରେ ଅସଫଳ ହୋଇ ଦରପୋଡ଼ା ମୂର୍ତ୍ତିଗୁଡ଼ିକୁ ଗଙ୍ଗାନଦୀରେ ପକାଇ ଦେଲା । କଳାପାହାଡ଼କୁ ଅନୁସରଣ କରି ଗୁପ୍ତରେ ସେଠାକୁ ଯାଇଥିବା ପରମ ବୈଷ୍ଣବ ବିଶର ମହାନ୍ତି ଏହି ମୂର୍ତ୍ତିଗୁଡ଼ିକରୁ ବ୍ରହ୍ମ ଉଦ୍ଧାର କରି ମୃଦଙ୍ଗ ଭିତରେ ପୂରାଇ ଆଣି ଗଡ଼କୁଜଙ୍ଗର ଆଖିଫୁଟା ନଦୀ କୂଳରେ ପୂଜାର୍ଚ୍ଚନା କରୁଥିଲା । ପରବର୍ତ୍ତୀ ସମୟରେ ଗଜପତି ପ୍ରଥମ

ରାମଚନ୍ଦ୍ର ଦେବ ଦୂତଠାରୁ ସନ୍ଧାନ ପାଇ ଏଠାରୁ ବ୍ରହ୍ମ ଉଦ୍ଧାର କରିଥିଲେ । ହେଲେ ତତ୍‌କାଳୀନ ଷଣ୍ଢରାଜାଙ୍କ ପ୍ରଚେଷ୍ଟାରେ ଏଠାରେ ସୁଭଦ୍ରାଙ୍କ ବ୍ରହ୍ମ ରଖାଯାଇଥିଲା । ଏଣୁ ଏହାକୁ ସୁଭଦ୍ରା ପୀଠ କୁହାଯାଇଥାଏ ।

ଅବିଭକ୍ତ କଟକ ଜିଲ୍ଲାର କେନ୍ଦ୍ରାପଡ଼ା ଉପଖଣ୍ଡ ଆଜି ଜିଲ୍ଲାର ମାନ୍ୟତା ଲାଭ କରିଛି । କଟକଠାରୁ ପ୍ରାୟ ୭୦କି.ମି. ଦୂର କେନ୍ଦ୍ରାପଡ଼ା ସହରର ଅନତି ଦୂରରେ ଅବସ୍ଥିତ ପ୍ରସିଦ୍ଧ ବଳଦେବ ଜୀଉଙ୍କ ପୀଠ ପର୍ଯ୍ୟଟକମାନଙ୍କୁ ବିଶେଷ ଭାବେ ଆକୃଷ୍ଟ କରିଥାଏ । କୁହାଯାଏ କନ୍ଦରାସୁରକୁ ମାରି ଓ ତୁଳସୀ ଦେବୀଙ୍କୁ ବିବାହ କରି ପ୍ରଭୁ ବଳଦେବ ଜୀଉ ମଧୁସାଗର ତଟସ୍ଥ ଇଚ୍ଛାପୁରଠାରେ ନିଜ ଇଚ୍ଛାରେ ଅବସ୍ଥାନ କରୁଛନ୍ତି । ଏଠାରେ ଲାଗି ହେଉଥିବା ମହାପ୍ରଭୁଙ୍କର ପ୍ରିୟ ଭୋଗ ରସାବଳୀ ଓ ପୋଟଳି ପିଠା ଓଡ଼ିଶା ପ୍ରସିଦ୍ଧ ଅଟେ । ଏହି କେନ୍ଦ୍ରାପଡ଼ା ଜିଲ୍ଲାର ରାଜନଗରଠାରୁ ଅନତି ଦୂରରେ ଅର୍ଥାତ୍ କେନ୍ଦ୍ରାପଡ଼ା ସହରଠାରୁ ପ୍ରାୟ ୭୦କି.ମି. ଦୂରରେ ରହିଛି ଗୁପ୍ତି । ଏଠାରୁ ନଦୀ ପଥରେ ଡାହାଣ ପଟକୁ ଗଲେ ପଡ଼େ ଗହୀରମଥା । ଏଠାରେ ଦୁର୍ଲଭ ଅଲିଭ୍‌ରିଡ୍‌ଲେ କଇଁଚଙ୍କ ପ୍ରଜନନସ୍ଥଳୀ ରହିଛି । ସରକାରଙ୍କ ତରଫରୁ ଏହାକୁ ଅଭୟାରଣ୍ୟ ଭାବେ ଘୋଷଣା କରାଯାଇଛି । ପ୍ରତିବର୍ଷ କଇଁଚମାନେ ପ୍ରଶାନ୍ତ ମହାସାଗରୀୟ ଅଞ୍ଚଳରୁ ବହୁଳ ଭାବେ ଆସି ଏଠାରେ ଅଣ୍ଡାଦାନ କରିଥାନ୍ତି । ଅଣ୍ଡାଫୁଟି ଛୁଆ ବାହାରିଲା ପରେ ସେମାନେ ପୁନଶ୍ଚ ସମୁଦ୍ର ଭିତରକୁ ଚାଲିଯାନ୍ତି । ଏହା ପ୍ରତିବର୍ଷ ଏହିପରି ଭାବେ ଚାଲିଛି । ତତ୍କାଳୀନ ରାଜାଙ୍କ ଦ୍ୱାରା ଖୋଳାନଦୀ ପଥରେ ବାମପଟକୁ ଅର୍ଥାତ୍ କନିକା ଆଡ଼କୁ ଗଲେ ପଡ଼େ ପ୍ରାକୃତିକ ସୌନ୍ଦର୍ଯ୍ୟର ଗନ୍ତାଘର ଡାଙ୍ଗମାଳ ନିକଟସ୍ଥ ଭିତରକନିକା ଲୁଣିପାଣି ବଉଳାଜାତୀୟ କୁମ୍ଭୀର ଗବେଷଣା କେନ୍ଦ୍ର । ଏଠାକୁ ନଦୀପଥରେ ବୋଟ୍‌ରେ ଗଲାବେଳେ ଦୁଇ କୂଳରେ ଅସଂଖ୍ୟ କୁମ୍ଭୀର ଓ ସରୀସୃପ ଦେଖିବାକୁ ମିଳନ୍ତି । ଏହି ଯାତ୍ରା ଅତ୍ୟନ୍ତ ଭୀତିପ୍ରଦ ଓ ରୋମାଞ୍ଚକର ହେଲେ ବି ପ୍ରକୃତିର ଅନୁପମ ଶୋଭା ମନମୁଗ୍ଧ କରିଦିଏ । ଜାତୀୟ ଅଭୟାରଣ୍ୟ ଭାବେ ଆଜି ଏହା ସଂରକ୍ଷିତ । ଅକ୍ଟୋବରରୁ ଫେବୃଆରୀ ପର୍ଯ୍ୟନ୍ତ ଏଠାକୁ ବୁଲି ଯିବା ପର୍ଯ୍ୟଟକମାନଙ୍କ ପାଇଁ ଅଧିକ ଆମୋଦଦାୟକ ହୋଇଥାଏ । ଏହାଛଡ଼ା ଆଳି ରାଜବାଟୀ, କନିକା ରାଜବାଟୀ ଇତିହାସର ମୂକସାକ୍ଷୀଭାବେ ଆଜି ବି ଦଣ୍ଡାୟମାନ । ଆଜି ବ୍ରାହ୍ମଣୀ, ଖରସ୍ରୋତା ଓ ଜିଲ୍ଲାର ଦକ୍ଷିଣ ପଟେ ଲୁଣା, ଚିତ୍ରୋତ୍ପଳା, କରାଣ୍ଡିଆ ଆଦି ନଦୀରେ ଏକାଧିକ ସେତୁ ନିର୍ମାଣ କରାଯାଇ କେନ୍ଦ୍ରାପଡ଼ାର ବିଚ୍ଛିନ୍ନାଞ୍ଚଳକୁ ସଦର ମହକୁମା ସହ ସଂଯୋଗ କରାଯାଇପାରିଛି ।

ଅବିଭକ୍ତ କଟକ ଜିଲ୍ଲାର ଯାଜପୁର ଆଜି ଜିଲ୍ଲାର ମାନ୍ୟତା ଲାଭ କରିଛି । କଟକ ସହରଠାରୁ ପ୍ରାୟ ୯୦କି.ମି. ଉତ୍ତରରେ ଅବସ୍ଥିତ ଏହି ସହର ଇତିହାସ ପ୍ରସିଦ୍ଧ ଅଟେ । ଏଠାରେ ସୋମବଂଶୀ ରାଜା ଯଯାତି କେଶରୀ ରାଜଧାନୀ ସ୍ଥାପନ କରିଥିଲେ । ଏହି ଜିଲ୍ଲା ମଧ ଦେଇ ପବିତ୍ର ବୈତରଣୀ ନଦୀ ପ୍ରବାହିତ ହେଉଅଛି । ଏହାର ତଟ ଦେଶରେ ଯଯାତି କେଶରୀ ଦଶଟି ଅଶ୍ୱମେଧ ଯଜ୍ଞାନୁଷ୍ଠାନ କରାଇଥିଲେ । ଏଣୁ ଏହି ସ୍ଥାନକୁ ଦଶାଶ୍ୱମେଧ ଘାଟ କୁହାଯାଏ । ଏଠାରେ ପିତୃପୁରୁଷମାନଙ୍କ ଅସ୍ଥି ବିସର୍ଜନ କରାଯାଇ ଶ୍ରାଦ୍ଧ ଦିଆଯାଇଥାଏ । କୁହାଯାଏ ଭକ୍ତ ଗୟାସୁରର ପବିତ୍ର ନାଭିଦେଶ ଏହିଠାରେ ହିଁ ଅଛି । ଯେଉଁମାନେ ଗୟାରେ ପିଣ୍ଡଦାନ କରିନପାରନ୍ତି, ସେମାନେ ଏଠାରେ ପିଣ୍ଡ ଦାନ କରନ୍ତି, କିନ୍ତୁ କୁହାଯାଏ, ଗୟାରେ ପିଣ୍ଡଦାନ କରି ଏଠାରେ ପିଣ୍ଡଦାନ ନ କଲେ ପିତୃପୁରୁଷ ତୃପ୍ତ ହୋଇନଥାନ୍ତି । ଏହି ନଦୀର ଦୁଇ ପାର୍ଶ୍ୱରେ ଅର୍ଥାତ୍ ଦକ୍ଷିଣ ପଟରେ ଜଗନ୍ନାଥଙ୍କ ମନ୍ଦିର ଓ ସପ୍ତମାତୃକା ରହିଥିବା ବେଳେ ଉତ୍ତର ପଟରେ ବରାହ ଭଗବାନଙ୍କ ମନ୍ଦିର ରହିଛି । ଏଠାରୁ ପ୍ରାୟ ୩କି.ମି. ଦୂରରେ ରହିଛି ଅଷ୍ଟଚଣ୍ଡୀଙ୍କ ମଧ୍ୟରୁ ଅନ୍ୟତମା ମା' ବିରଜାଙ୍କ ମନ୍ଦିର । ଏହି ମନ୍ଦିର ପରିସରରେ ପିତୃପୁରୁଷଙ୍କୁ ପିଣ୍ଡଦାନ କରାଗଲେ ସେମାନେ ତୃପ୍ତିଲାଭ କରନ୍ତି ବୋଲି କଥିତ ଅଛି । ଏଠାରେ ଅନେକ ପ୍ରାଚୀନ ଶିବଲିଙ୍ଗ ରହିଛି । ନିକଟରେ ରହିଛି ଶୁଭସ୍ତମ୍ଭ । ଏହି ଜିଲ୍ଲାର ଅନ୍ୟତମ ଆକର୍ଷଣୀୟ ପର୍ଯ୍ୟଟନ ସ୍ଥଳୀ ହେଉଛି ହୀରକ ତ୍ରିଭୁଜ ଭାବେ ଖ୍ୟାତ ରତ୍ନଗିରି, ଉଦୟଗିରି ଓ ଲଳିତଗିରି । ବୌଦ୍ଧଧର୍ମର ଏକ ପ୍ରସିଦ୍ଧ କେନ୍ଦ୍ର ଭାବେ ଏହା ପରିଗୃହୀତ । ଧ୍ୱଂସାବଶେଷରୁ ପ୍ରାଚୀନ ବୌଦ୍ଧବିହାର, ବୁଦ୍ଧଦେବଙ୍କ ମୂର୍ତ୍ତି,

ତତ୍‌କାଳୀନ ମୁଦ୍ରା ଓ ବ୍ୟବହାର୍ଯ୍ୟ ବିଭିନ୍ନ ବସ୍ତୁ ଏଠାରୁ ମିଳିଛି । ଯାହା ରତ୍ନଗିରି ଓ ଲଳିତଗିରି ସ୍ଥିତ ସଂଗ୍ରହାଳୟରେ ସଂରକ୍ଷିତ । ଐତିହାସିକ ଓ ଗବେଷକମାନଙ୍କ ପାଇଁ ଏହା ଗୋଟିଏ ଗୋଟିଏ ଗବେଷଣାର କେନ୍ଦ୍ର । ଏଠାକୁ ଦେଶ ବିଦେଶରୁ ବହୁ ପର୍ଯ୍ୟଟକ ବର୍ଷସାରା ଆସିଥାନ୍ତି । କଟକରୁ ଚଣ୍ଡୀଖୋଲ ଦେଇ ଏଠାରେ ପହଞ୍ଚିବାକୁ ୭୦କି.ମି. ହୋଇଥାଏ । ନିକଟରେ ଓଳାଶୁଣି ପାହାଡ଼ ପର୍ଯ୍ୟଟକମାନଙ୍କୁ ବିଶେଷ ଭାବେ ଆକର୍ଷିତ କରିଥାଏ । ଅରକ୍ଷିତ ଦାସ ନାମରେ ପ୍ରସିଦ୍ଧ ବଡ଼ ଖେମୁଣ୍ଡି ରାଜ୍ୟର ରାଜପୁତ୍ର ଏଠାରେ ସାଧନା କରି ସିଦ୍ଧି ପ୍ରାପ୍ତ ହୋଇଥିଲେ । ମାଘମାସ କୃଷ୍ଣ ପକ୍ଷ ଏକାଦଶୀରେ ଏଠାରେ ଏକ ବିରାଟ ମେଳା ଅନୁଷ୍ଠିତ ହୁଏ । ଚଣ୍ଡିଖୋଲ ଯାଜପୁର ଜିଲ୍ଲାର ଅନ୍ୟତମ ପର୍ଯ୍ୟଟନସ୍ଥଳୀ । ଏଠାରେ ପାହାଡ଼ ଗୁମ୍ଫାରେ ଚଣ୍ଡୀ ଦେବୀ ଓ ଅଦୂରରେ ପଞ୍ଚଦେବତାଙ୍କର ପ୍ରତୀକ ମହାବିନାୟକ ପୀଠ ରହିଛି । କଟକରୁ ପ୍ରାୟ ୩୦କି.ମି. ଦୂରରେ ଯାଜପୁର ଜିଲ୍ଲାର ଛତିଆବଟ ମଧ୍ୟ ଏକ ପ୍ରମୁଖ ପର୍ଯ୍ୟଟନ ସ୍ଥଳୀ । ଏଠାରେ ହାଡ଼ିଦାସଙ୍କ ସମାଧି ପୀଠ ଓ ଜଗନ୍ନାଥ ମନ୍ଦିର ରହିଛି । ନିକଟରେ ଅଛି ଯମୁନା ଦାସ ବାବାଜୀଙ୍କ ଉଦାସ ଆଶ୍ରମ ।

ବର୍ତ୍ତମାନ ଜନସାଧାରଣ ତଥା ସରକାର ସଚେତନ ହେବା ପାଇଁ ବେଳ ଆସିଛି । ଯଦିଓ ସରକାର ବିଭିନ୍ନ ପର୍ଯ୍ୟଟନ ସ୍ଥଳୀର ବିକାଶ ସାଧନ କରିଛନ୍ତି ଓ ରାଜ୍ୟରେ ଏକ ପର୍ଯ୍ୟଟନ ବିଭାଗ ଅଛି । ଏହାର ଅଧୀନରେ ସରକାର ଓ.ଟି.ଡି.ସି. ନାମରେ ଅର୍ଥାତ୍ ଓଡ଼ିଶା ପର୍ଯ୍ୟଟନ ଉନ୍ନୟନ ନିଗମ ନାମରେ ଏକ ସଂସ୍ଥା ଗଠନ କରି ପର୍ଯ୍ୟଟନସ୍ଥଳୀକୁ ଆହୁରି ସରସ ସୁନ୍ଦର ଓ ଆକର୍ଷଣୀୟ କରିବାକୁ ପଦକ୍ଷେପ ନେଇଛନ୍ତି, ତଥାପି ଆହୁରି ଅଧିକ ଏଥିପ୍ରତି ଧ୍ୟାନଦେବା ବାଞ୍ଛନୀୟ । ପର୍ଯ୍ୟଟନସ୍ଥଳୀଗୁଡ଼ିକୁ ସଂଯୋଗ କରୁଥିବା ରାସ୍ତାର ପୁନର୍ଗଠନ ଓ ମରାମତି, ସେଠାକୁ ଗମନାଗମନର ସୁବ୍ୟବସ୍ଥା, ପର୍ଯ୍ୟଟନସ୍ଥଳୀରେ ପର୍ଯ୍ୟଟକମାନଙ୍କ ପାଇଁ ଆନୁଷଙ୍ଗିକ ସୁବିଧା ଥିବା ଅଧିକରୁ ଅଧିକ ବିଶ୍ରାମାଗାର, ହୋଟେଲ ଓ ସାଧାରଣ ପର୍ଯ୍ୟଟକମାନଙ୍କ ପାଇଁ ସୁଲଭ ଶୌଚାଳୟ ଏବଂ ପ୍ରତ୍ୟେକ ପର୍ଯ୍ୟଟନସ୍ଥଳୀରେ ନିକଟସ୍ଥ ପର୍ଯ୍ୟଟନସ୍ଥଳୀର ବିଶେଷତ୍ୱ ସଂପର୍କରେ ସୂଚନା ରହିଲେ ଏହା ପର୍ଯ୍ୟଟକମାନଙ୍କୁ ଆହୁରି ଆକର୍ଷିତ କରିବ । 'ଅତିଥି ଦେବୋଭବ', ଅତିଥି ଆମମାନଙ୍କ ପାଇଁ ଦେବତା । ସେମାନଙ୍କୁ ଉପଯୁକ୍ତ ଆତିଥ୍ୟ ପ୍ରଦାନ କଲେ ସେମାନେ ଆମ ରାଜ୍ୟକୁ ବାରମ୍ବାର ଆସିବାକୁ ମନ ବଳେଇବେ ଓ ଅନ୍ୟମାନଙ୍କୁ ଉତ୍ସାହିତ କରିବେ । ସେଥିପାଇଁ ସମସ୍ତେ ସଚେତନ ହେବାକୁ ଅନୁରୋଧ । ବହୁ ସଂଖ୍ୟାରେ ପର୍ଯ୍ୟଟକମାନଙ୍କ ଆଗମନ ଆମର ଅର୍ଥନୈତିକ ବିକାଶରେ ନିଶ୍ଚୟ ସହାୟକ ହେବ । ପର୍ଯ୍ୟଟକମାନେ ଆମ ରାଜ୍ୟକୁ ଆସିଲେ ତାଙ୍କର ଖାଦ୍ୟପେୟ, ରହିବା, ଗମନାଗମନ ଓ ଅନ୍ୟାନ୍ୟ କାର୍ଯ୍ୟ ପାଇଁ ଅନେକ ବ୍ୟକ୍ତି ନିୟୋଜିତ ହୋଇ ଅର୍ଥନୈତିକ ସ୍ୱାବଲମ୍ବନଶୀଳ ହୋଇପାରିବେ, ଏହା ନିଃସନ୍ଦେହ । ପର୍ଯ୍ୟଟନସ୍ଥଳୀକୁ ସଫାସୁତୁରା ରଖିବା ଆମମାନଙ୍କ ପ୍ରମୁଖ କର୍ତ୍ତବ୍ୟ । ଏଥିପ୍ରତି ସଚେତନ ହେଲେ ପର୍ଯ୍ୟଟକମାନେ ଖୁସି ହେବା ସହ ଆମର ମଧ୍ୟ ମଙ୍ଗଳ ସାଧନ ହେବ ।

ସମସ୍ତେ ସୁଖରେ ରୁହନ୍ତୁ, ନୀରୋଗ ରୁହନ୍ତୁ, ଖୁସିରେ ରୁହନ୍ତୁ, କେହି ଦୁଃଖଗ୍ରସ୍ତ ହୁଅନ୍ତୁ ନାହିଁ । ଫଳରେ ଆମ ରାଜ୍ୟର ଓ ଦେଶର ସମୃଦ୍ଧି ସାଧିତ ହେବ ।

---

ସଭାପତି, ବଟଶ୍ରୀକ୍ଷେତ୍ର
ପାଟେଣୀଗାଁ, ଜଗତ୍‌ସିଂହପୁର



# କର୍ମଯୋଗୀ ଓ ସାହିତ୍ୟିକ ଡକ୍ଟର ହରେକୃଷ୍ଣ ମହତାବ

ଡକ୍ଟର ଶ୍ରୀଚରଣ ଦାସ

ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବ ଓଡିଶାର ବରପୁତ୍ରମାନଙ୍କ ମଧ୍ୟରେ ଥିଲେ ଅନ୍ୟତମ । ଅନେକ ତାଙ୍କୁ ଆଧୁନିକ ଓଡିଶାର ନିର୍ମାତା ଭାବରେ ଆଖ୍ୟାୟିତ କରନ୍ତି । ପ୍ରକୃତରେ ସେ ଥିଲେ ନିରଳସ କର୍ମଯୋଗୀ ଏବଂ ନିଷ୍ଠାପର ସାରସ୍ୱତ ସାଧକ । ଏକାଧାରରେ ତାଙ୍କୁ ଜଣେ ସ୍ୱାଧୀନତା ସଂଗ୍ରାମୀ, ରାଜନୀତିଜ୍ଞ, ସାହିତ୍ୟିକ, ସାମ୍ବାଦିକ, ଐତିହାସିକ, ଗାଳ୍ପିକ, କବି, ଶିଶୁ ସାହିତ୍ୟିକ, ପ୍ରାବନ୍ଧିକ, ଔପନ୍ୟାସିକ, କୂଟନୀତି ବିଶାରଦ, ସାମ୍ବଦିକ, ସ୍ତମ୍ଭକାର, ନାଟ୍ୟକାର ଏବଂ ଲୋକପ୍ରିୟ ରାଜନେତା ଭାବରେ ବିବେଚନା କରାଯାଏ । ସେ ସଫଳ ଓ ପୂର୍ଣ୍ଣାଙ୍ଗ ଜୀବନ ଉପଭୋଗ କରିଥିଲେ । ଜୀବନରେ ବହୁ ଉତ୍‌ଥାନ ପତନର ସମ୍ମୁଖୀନ ହୋଇଥିଲେ ମଧ୍ୟ ସେ କେବେ ହାରିଯାଇ ନାହାନ୍ତି ।

ଡକ୍ଟର ହରେକୃଷ୍ଣ ମହତାବ ୧୮୯୯ ମସିହା ନଭେମ୍ବର ମାସ ୨୧ ତାରଖରେ ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ଅଗରପଡାରେ ଜନ୍ମ ହୋଇଥିଲେ । ତାଙ୍କ ମାତାଙ୍କ ନାମ ତୋହଫା ବିବି ଏବଂ ବାପା କୃଷ୍ଣ ଚରଣ ଦାସ । ଡଃ ମହତାବ ଭଦ୍ରକ ହାଇସ୍କୁଲରୁ ପ୍ରଥମ ଶ୍ରେଣୀରେ ମାଟ୍ରିକ୍ ପାଶ୍ କରି ୧୯୧୭ ମସିହାରେ ରେଭେନ୍ସା କଲେଜରେ ବିଜ୍ଞାନ ଶ୍ରେଣୀରେ ନାମ ଲେଖାଇଲେ । ପାଠ ମନକୁ ନ ମାନିବାରୁ ସେ ବିଜ୍ଞାନକୁ ପରିବର୍ତ୍ତନ କରି କଳାରେ ଅଧ୍ୟୟନ କଲେ । ବି.ଏ ପଢୁଥିବା ସମୟରେ ମହାତ୍ମା ଗାନ୍ଧୀଙ୍କ ରାଜନୀତିକ ଦର୍ଶନରେ ପ୍ରଭାବିତ ହୋଇ ମହତାବ ମାତ୍ର ୨୧ ବର୍ଷ ବୟସରେ ଭାରତର ରାଜନୀତିକ ସଂଗ୍ରାମରେ ନିଜକୁ ଉତ୍ସର୍ଗ କରିବା ପାଇଁ ସଂକଳ୍ପବଦ୍ଧ ହେଲେ । ଏହା ପୂର୍ବରୁ ସୁଭଦ୍ରା ମହତାବଙ୍କ ସହିତ ତାଙ୍କର ବିବାହ ହୋଇସାରିଥିଲା । ୧୯୨୦ ମସିହା ସେପ୍ଟେମ୍ବର ମାସରେ ନାଗପୁରଠାରେ ଅନୁଷ୍ଠିତ କଂଗ୍ରେସ ଅଧିବେଶନରେ ଯୋଗ ଦେଇ ସେଠାରେ ଅସହଯୋଗ ଆନ୍ଦୋଳନ ପ୍ରସ୍ତାବ ଗୃହୀତ ହେବା ପରେ ସେ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁଙ୍କ ସହିତ ମିଶି ଓଡିଶାରେ ଏହି ଆନ୍ଦୋଳନର ପ୍ରସାର ପାଇଁ ନେତୃତ୍ୱ ନେଲେ । ଏହା ପୂର୍ବରୁ ଗାନ୍ଧିଜୀଙ୍କ ରାଜନୀତିକ ଚିନ୍ତାଧାରା, ମୁକ୍ତି ସଂଗ୍ରାମର ବୀଜମନ୍ତ୍ର ଓ ଦେଶ ପ୍ରେମର ପ୍ରସାର ପାଇଁ ମହତାବ ବହୁ ଯୁବ ବନ୍ଧୁଙ୍କ ସହଯୋଗରେ କଟକର 'ବାଖରାବାଦ'ଠାରେ 'ଭାରତୀ ମନ୍ଦିର' ଗଠନ କରିଥିଲେ । ୧୯୨୧ ମସିହାରେ ମହାତ୍ମା ଗାନ୍ଧୀ ପ୍ରଥମ ଓଡିଶା ପରିଦର୍ଶନ ବେଳେ ମହତାବ ହିଁ ତାଙ୍କର ନିରବଚ୍ଛିନ୍ନ ସହଯୋଗୀ ଥିଲେ । କଟକ, ସତ୍ୟବାଦୀ, ପୁରୀ, ବ୍ରହ୍ମପୁର, ଭଦ୍ରକ ପ୍ରଭୃତି ଅଞ୍ଚଳରେ ବିଶାଳ ଜନସଭାମାନଙ୍କରେ ମହାତ୍ମା ଗାନ୍ଧୀ ଯେଉଁ ଉଦ୍‌ବୋଧନ ଦେଇଥିଲେ, ପାଖେ ପାଖେ ରହି ମହତାବ ସେହି ଉଦ୍‌ବୋଧନମୂଳକ ଅଗ୍ନିଶିଖାକୁ ଜନତାଙ୍କ ମଧ୍ୟରେ ପ୍ରଜ୍ୱଳିତ କରିଥିଲେ । ସ୍ୱରାଜ ବାର୍ତ୍ତାର ପ୍ରଚାର ପାଇଁ ସେ ବାଲେଶ୍ୱରଠାରେ ପ୍ରତିଷ୍ଠା କରିଥିଲେ 'ସ୍ୱରାଜ ମନ୍ଦିର' ଓ ପ୍ରକାଶ କରିଥିଲେ 'ଲିଥୋଛପାଇ' ସାପ୍ତାହିକ ଓଡିଆ ପତ୍ରିକା 'ସ୍ୱରାଜ ସମାଚାର' । ଆନ୍ଦୋଳନରେ ଭାଗ ନେଇ ୧୯୨୧ ମସିହା ଅଗଷ୍ଟ ମାସରେ ସେ କଟକ ଜେଲରେ ରହିଲେ । କଟକ ସ୍ୱରାଜ୍ୟ

ଆଶ୍ରମ ଥିଲା କଂଗ୍ରେସର ପେଣ୍ଠସ୍ଥଳ । କଟକରୁ ଡକ୍ଟର ମହତାବ ପ୍ରଥମେ 'ପ୍ରଜାତନ୍ତ୍ର' ନାମକ ସାପ୍ତାହିକ ପତ୍ରିକା ବାହାର କଲେ । ଗାନ୍ଧିନୀତି ଓ ଗଠନମୂଳକ କାର୍ଯ୍ୟର ପ୍ରଚାର ଏହାର ମୂଳ ଲକ୍ଷ୍ୟ ଥିଲା । ଏହା ମୁକୁର ପ୍ରେସରୁ ବାହାରୁଥିଲା, ଯାହାର ମୁଦ୍ରକ ଓ ପ୍ରକାଶକ ଥିଲେ ବୀର କିଶୋର ଦାସ । ପରେ ଏହା ବାଲେଶ୍ୱରକୁ ସ୍ଥାନାନ୍ତରିତ ହୋଇଥିଲା । ଏହା ପରଠାରୁ ମହତାବଙ୍କ ରାଜନୈତିକ କେନ୍ଦ୍ର ବାଲେଶ୍ୱର ଜିଲ୍ଲା ହୋଇଥିଲେ ମଧ୍ୟ, ସେ କଟକ ଆସୁଥିଲେ ଏବଂ ଆନ୍ଦୋଳନରେ ଯୋଗ ଦେଇ ଜେଲ ଯାଉଥିଲେ । ୧୯୩୦ ମସିହାରେ 'ପ୍ରଜାତନ୍ତ୍ର' କିଛିଦିନ ପାଇଁ ଦୈନିକ ସମ୍ବାଦପତ୍ର ଭାବରେ ପ୍ରକାଶ ପାଇ ବନ୍ଦ ହୋଇଗଲା । ପ୍ରକାଶନ ବନ୍ଦ ହୋଇଥିବା ପ୍ରଜାତନ୍ତ୍ର ୧୯୪୭ ମସିହାଠାରୁ ମହତାବଙ୍କ ମୃତ୍ୟୁ ପର୍ଯ୍ୟନ୍ତ ଦୈନିକ ସମ୍ବାଦପତ୍ର ରୂପେ କଟକରୁ ପ୍ରକାଶ ପାଇଲା । ନିଜେ ମହତାବ ଏଥିରେ ମୂଲ୍ୟବାନ ସଂପାଦକୀୟ ଲେଖୁଥିଲେ ।

ପରାଧୀନ ଗ୍ରସ୍ତ ଭାରତବର୍ଷରେ ଦେଶଭକ୍ତ ଡକ୍ଟର ହରେକୃଷ୍ଣ ମହତାବ ୧୯୨୩ ମସିହାରେ ବାଲେଶ୍ୱର ଜିଲ୍ଲା ବୋର୍ଡର ଚେୟାରମ୍ୟାନ ଭାବରେ, ୧୯୨୬ ମସିହାରେ ଓଡ଼ିଶା-ବିହାର କାଉନ୍‌ସିଲକୁ ସଭ୍ୟ ଏବଂ ୧୯୩୦ ମସିହାରେ ଉତ୍କଳ ପ୍ରାଦେଶିକ କଂଗ୍ରେସ କମିଟିର ସଭାପତି ପଦ ମଣ୍ଡନ କରିଥିଲେ । ସେହି ବର୍ଷ ଜାନୁଆରୀ ମାସ ୨୬ ତାରିଖରେ ଦେଶବ୍ୟାପୀ ଆଇନ୍ ଅମାନ୍ୟ ଆନ୍ଦୋଳନରେ ସେ ଓଡ଼ିଶାର ନେତୃତ୍ୱ ନେଇଥିଲେ । ବାଲେଶ୍ୱରର ଇଞ୍ଚୁଡ଼ିଠାରେ ଆୟୋଜିତ ଲବଣ ସତ୍ୟାଗ୍ରହରେ ଗୋପବନ୍ଧୁ ଚୌଧୁରୀ ପ୍ରମୁଖଙ୍କ ସହିତ ନେତୃତ୍ୱ ନେଇ ୧୯୩୦ ମସିହା ଅପ୍ରେଲ ୧୭ ତାରିଖରେ କାରାବରଣ କଲେ । ଦେଶର ସ୍ୱାଧିନତା ସଂଗ୍ରାମରେ ଝାସ ଦେଇଥିବାରୁ ତାଙ୍କୁ ୧୯୨୧, ୧୯୨୭, ୧୯୩୦ ଏବା ୧୯୪୨ରେ କାରାବରଣ କରିବାକୁ ପଡ଼ିଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନରେ ମଧ୍ୟ ମହତାବଙ୍କ ଭୂମିକା ଗୁରୁତ୍ୱପୂର୍ଣ୍ଣ ଥିଲା । ୧୯୩୬ ମସିହା ପୂର୍ବରୁ ସେ ଏଥିପାଇଁ ସରକାରଙ୍କୁ ବହୁବାର ଲିଖିତ ଦାବୀ ଜଣାଇଛନ୍ତି । ୧୯୪୨ ମସିହାରେ 'ଭାରତ ଛାଡ଼' ଆନ୍ଦୋଳନରେ ବନ୍ଦୀ ହୋଇ ଡକ୍ଟର ହରେକୃଷ୍ଣ ମହତାବ ଅହମ୍ମଦ ନଗର ଦୁର୍ଗରେ ପଣ୍ଡିତ ଜବାହରଲାଲ ନେହେରୁ, ସର୍ଦ୍ଦାର ବଲ୍ଲଭ ଭାଇ ପଟେଲ, ଆଚାର୍ଯ୍ୟ କୃପାଳିନୀ ଆଦି ବହୁ ବିଶିଷ୍ଟ ବ୍ୟକ୍ତିମାନଙ୍କର ସାନିଧ୍ୟ ଲାଭ କରିଥିଲେ ।

ଡଃ ମହତାବ ସ୍ୱାଧୀନତା ପୂର୍ବରୁ ୧୯୪୬ ମସିହା ଅପ୍ରେଲ ମାସ ୨୩ ତାରିଖରେ ଗଠିତ ଓଡ଼ିଶାର ମନ୍ତ୍ରିମଣ୍ଡଳର ପ୍ରଧାନମନ୍ତ୍ରୀ ଭାବରେ ନେତୃତ୍ୱ ନେଇଥିଲେ । କାରଣ ସେଥିର ନିର୍ବାଚନରେ ତାଙ୍କର ବଳିଷ୍ଠ ନେତୃତ୍ୱ ହିଁ କଂଗ୍ରେସ ପାଇଁ ବିପୁଳ ବିଜୟ ଆଣି ଦେଇଥିଲା । ତାଙ୍କ ମନ୍ତ୍ରିମଣ୍ଡଳରେ ଥିବା ନବକୃଷ୍ଣ ଚୌଧୁରୀ, ନିତ୍ୟାନନ୍ଦ କାନୁନ୍‌ଗୋ, ଲିଙ୍ଗରାଜ ମିଶ୍ର, ରାଧାକୃଷ୍ଣ ବିଶ୍ୱାସ ରାୟ ପ୍ରଭୃତି ତାଙ୍କର ପ୍ରାୟ ସମ ବୟସ୍କ ଓ ସମ ଶ୍ରେଣୀୟ ଅଭିଜ୍ଞତା ସଂପନ୍ନ ନେତା ଥିଲେ ହେଁ ମହତାବଙ୍କ ବଳିଷ୍ଠ ନେତୃତ୍ୱ ଯୋଗୁଁ ସମସ୍ତେ ତାଙ୍କୁ ପ୍ରତି କାର୍ଯ୍ୟରେ ଅକୁଣ୍ଠ ସମର୍ଥନ ଓ ସହଯୋଗ ପ୍ରଦାନ କରୁଥିଲେ । ସ୍ୱାଧୀନତା ପରେ ଓଡ଼ିଶାର ଭାଗ୍ୟ ନିର୍ମାଣରେ ମହତାବଙ୍କ ଭୂମିକା ଚିରସ୍ମରଣୀୟ । ଗଡ଼ଜାତ ମିଶ୍ରଣ ଘଟାଇବା ଦ୍ୱାରା ସେ ବିଶାଳ ଉତ୍କଳ ଗଠନର ହେଉଛନ୍ତି ମୁଖ୍ୟ ଶିଳ୍ପୀ । ୧୯୫୦ରୁ ୧୯୫୨ ମସିହା ପର୍ଯ୍ୟନ୍ତ କେନ୍ଦ୍ରରେ ଶିଳ୍ପ ଓ ବାଣିଜ୍ୟ ବିଭାଗ ମନ୍ତ୍ରୀ ରୂପେ ଦାୟିତ୍ୱ ଗ୍ରହଣ କରିଥିଲେ । ୧୯୫୨ ମସିହାରୁ ୧୯୫୪ ମସିହା ପର୍ଯ୍ୟନ୍ତ କଂଗ୍ରେସର ପାର୍ଲିଆମେଣ୍ଟାରୀ ଦଳର ସେକ୍ରେଟାରୀ, ୧୯୫୫ରୁ ୧୯୫୬ ମସିହା ପର୍ଯ୍ୟନ୍ତ ବମ୍ବେର ରାଜ୍ୟପାଳ ହୋଇଥିଲେ । ୧୯୫୬ ମସିହାରୁ ୧୯୬୧ ମସିହା ପର୍ଯ୍ୟନ୍ତ ଅଳଙ୍କୃତ କରିଛନ୍ତି ଓଡ଼ିଶାର ମୁଖ୍ୟମନ୍ତ୍ରୀ ଆସନ । ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତିତ୍ୱଙ୍କ ସେ ପରିଚିତ ଥିଲେ । ସହକର୍ମୀ ଭାବରେ ଉତ୍କଳଗୌରବ ମଧୁସୂଦନ ଦାସଙ୍କଠାରୁ ଆରମ୍ଭ କରି ବିଜୁ ପଟ୍ଟନାୟକ, ବିରେନ୍ ମିତ୍ର ଏପରିକି ନୀଳମଣି ରାଉତରାୟଙ୍କ ସହିତ କାର୍ଯ୍ୟକରିଥିଲେ । ଆତ୍ମଜୀବନରେ ଘଟଣାର ଭିଡ଼, ବିଶିଷ୍ଟ ବ୍ୟକ୍ତିଙ୍କର ବିପୁଳ ସମାରୋହ ।

ଡକ୍ଟର ହରେକୃଷ୍ଣ ମହତାବଙ୍କର ଓଡ଼ିଶା ପାଇଁ ବିପୁଳ ଅବଦାନ ତାଙ୍କୁ ଚିରସ୍ମରଣୀୟ କରି ରଖିବ । ୧୯୪୮ ମସିହାରେ ତାଙ୍କ ପ୍ରଚେଷ୍ଟାରେ କଟକରେ ରେଡ଼ିଓ

କ୍ଷେତ୍ରସନ ଆରମ୍ଭ ହେଲା, ଯାହା ଅଦ୍ୟାବଧି ସେଠାରେ ବିଦ୍ୟମାନ । ସ୍ୱାଧୀନତା ସଂଗ୍ରାମୀ ଭୈରବଚନ୍ଦ୍ର ମହାନ୍ତିଙ୍କ ନେତୃତ୍ୱରେ ଡକ୍ଟର ମହତାବଙ୍କ ସଭାପତିତ୍ୱରେ 'ଅଲିମ୍ପିକ ଆସୋସିଏସନ୍' ପକ୍ଷରୁ ନିର୍ମିତ ହେଲା ପ୍ରସିଦ୍ଧ ବାରବାଟୀ ଷ୍ଟାଡିୟମ । ତାଙ୍କର ମୁଖ୍ୟ ଅବଦାନଗୁଡିକ ମଧ୍ୟରେ ଭୁବନେଶ୍ୱରରେ ନୂତନ ରାଜଧାନୀ ନିର୍ମାଣ, ଉଚ୍ଚ ନ୍ୟାୟାଳୟ ପ୍ରତିଷ୍ଠା, ଓଡିଶା ରାଜ୍ୟ ସଂଗ୍ରହାଳୟ, ରାଜ୍ୟ ଲଳିତକଳା ଏକାଡେମୀ, ରବୀନ୍ଦ୍ର ମଣ୍ଡପାଦି ନିର୍ମାଣ, କଟକରେ ଧାନ ଗବେଷଣା କେନ୍ଦ୍ର, କଳା ବିକାଶ କେନ୍ଦ୍ର, ବ୍ରହ୍ମପୁର ସୈନ୍ୟ ସଂଗ୍ରହ କେନ୍ଦ୍ର, ଓଡିଶା ପବ୍ଲିକ ସର୍ଭିସ୍ କମିଶନ ଗଠନ, ନୂତନ ରେଲ୍‌ୱେ ପ୍ଲାଟ୍‌ଫର୍ମ ଓ ଓଭରବ୍ରିଜ୍, ଶିଳ୍ପାଞ୍ଚଳ ପ୍ରଭୃତି ପ୍ରତିଷ୍ଠା ପ୍ରଧାନ । ବିଦେଶକୁ ଅଧ୍ୟୟନ ଓ ଗବେଷଣା ପାଇଁ ଯାଉଥିବା ଛାତ୍ର ଛାତ୍ରୀମାନଙ୍କ ପାଇଁ ଋଣ ପ୍ରଦାନର ବ୍ୟବସ୍ଥା ତାଙ୍କ ସମୟରେ ଏକ ବଳିଷ୍ଠ ପଦକ୍ଷେପ । କଟକରେ ପ୍ରଜାତନ୍ତ୍ର ପ୍ରଚାର ସମିତି ଗଠନ କରି ବିଷୁବ ମିଳନର ବ୍ୟବସ୍ଥା କରିଥିଲେ ସେ । ବିଷୁବ ଆନ୍ଦୋଳନ ଓଡିଶାରୁ ବହୁ ଲବ୍ଧପ୍ରତିଷ୍ଠ ସାହିତ୍ୟିକ, କବି, ଗାଳ୍ପିକ ଓ ସମାଲୋଚକମାନଙ୍କୁ ସୃଷ୍ଟି କରିପାରିଥିଲା । ପ୍ରଜାତନ୍ତ୍ର ପ୍ରଚାର ସମିତି ଗଠନ ମାଧ୍ୟମରେ ଦୈନିକ ସମ୍ବାଦ 'ପ୍ରଜାତନ୍ତ୍ର' ମାସିକ ସାହିତ୍ୟ ପତ୍ରିକା 'ଝଙ୍କାର', ଶିଶୁ ପତ୍ରିକା ମୀନା ବଜାର ଏବଂ ଇଂରେଜ ସାପ୍ତାହିକୀ ଇଷ୍ଟର୍ଣ୍ଣ ଟାଇମ୍‌ସ ଇତ୍ୟାଦି ପ୍ରକାଶ ପାଉଥିଲା । ମହତାବଙ୍କ ସମୟରେ ବିଷୁବ ମିଳନ ତିନିଦିନ ବ୍ୟାପୀ ଅନୁଷ୍ଠିତ ହେଉଥିଲା । ଏହି ସମୟରେ ବିହାରୀବାଗ୍ ପରିସରରେ ଲେଖକ, ଗବେଷକ, ଅଧ୍ୟାପକ, ଐତିହାସିକ, ପ୍ରତ୍ନତତ୍ତ୍ୱବିଦ୍, ସାମ୍ବାଦିକ ଓ ଅନ୍ୟ ଶ୍ରଦ୍ଧାଳୁ ବୁଦ୍ଧିଜୀବୀମାନେ ସମବେତ ହେଉଥିଲେ । ଦେଶ ବିଦେଶରେ ପ୍ରତିଷ୍ଠିତ ସାହିତ୍ୟିକମାନଙ୍କୁ ଏହି ମଞ୍ଚର ଅତିଥି ହେବା ପାଇଁ ସେ ନିମନ୍ତ୍ରିତ କରୁଥିଲେ । ଏହି ବିଷୁବ ମିଳନରେ ବିଶିଷ୍ଟ ସାହିତ୍ୟିକ, କବି ଓ ପ୍ରାବନ୍ଧିକମାନଙ୍କୁ ପୁରସ୍କୃତ କରାଯାଉଥିଲା ।

ରାଜନୀତି କ୍ଷେତ୍ରରେ ମହତାବ ଥିଲେ ନିର୍ଭୀକ ଓ ସ୍ୱାଭିମାନୀ । ଯେତେ ଯେତେ ଉଚ୍ଚ ଆସନ ବା ସ୍ଥାନରେ ଥାଉ, ଦୋଷ ତ୍ରୁଟି ଦର୍ଶାଇବାରେ ସେ କୁଣ୍ଠା ପ୍ରକାଶ କରିନାହାନ୍ତି । ତେଣୁ ବହୁ ଲୋକଙ୍କର ଶରବ୍ୟ ହୋଇଛନ୍ତି । ସେ ଦଳଗତ ରାଜନୀତିରୁ ଦୂରେଇ ରହିଛନ୍ତି ସତ କିନ୍ତୁ ନୀରବ ଦର୍ଶକ ହୋଇ ରହିନାହାନ୍ତି । ସେ ହୋଇଛନ୍ତି ଓଡିଶାର ଓ ଭାରତର ବହୁ ରାଜନୀତିକ ନେତାଙ୍କର ମାର୍ଗ ଦର୍ଶକ । ଜୀବନରେ ସେ ଅନେକ ରାଜନୀତିଜ୍ଞ ସୃଷ୍ଟି କରିଛନ୍ତି । ତେଣୁ ଅନେକ ତାଙ୍କୁ କହିଥାନ୍ତି 'ରାଜନୀତିର ଚାଣକ୍ୟ' । ଓଡିଶା ପାଇଁ ତାଙ୍କର ବହୁମୁଖୀ ଅବଦାନ ଯୋଗୁଁ ସେ ଉତ୍କଳ କେଶରୀ, ଜାତୀୟ ଜୀବନର ଧ୍ରୁବତାରା, ଓଡିଶାର ଗୌରବ, ଶତାବ୍ଦୀର ସୂର୍ଯ୍ୟ, ଶତାବ୍ଦୀ ପୁରୁଷ, ଯୁଗସ୍ରଷ୍ଟା ପ୍ରଭୃତି ଆଖ୍ୟାରେ ସମ୍ମାନିତ ।

ଉତ୍କଳକେଶରୀ ଡକ୍ଟର ହରେକୃଷ୍ଣ ମହତାବଙ୍କର ରାଜନୀତିକ ଜୀବନକୁ ବାଦ୍ ଦେଲେ ତାଙ୍କର ସାହିତ୍ୟିକ ଜୀବନଟି ସମୁଜ୍ଜ୍ୱଳ ଓ ଋଦ୍ଧିମନ୍ତ । ବିଗତ ଶତାବ୍ଦୀର ସାହିତ୍ୟକମାନଙ୍କ ମଧ୍ୟରେ ତାଙ୍କର ସ୍ଥାନ ବହୁ ଉଚ୍ଚରେ । ସାହିତ୍ୟକୁ ସମାଜ କଲ୍ୟାଣ ଚେତନାରେ ଏକ ମାଧ୍ୟମ ରୂପେ ଗ୍ରହଣ କରିଥିଲେ । କର୍ମମୟ ରାଜନୀତିକ ଜୀବନରେ ସାମାନ୍ୟ ଅବସର ପାଇଲେ ସେ ସାହିତ୍ୟ ସାଧନା କରନ୍ତି । ଡକ୍ଟର ମହତାବଙ୍କ ଲେଖନୀ ପ୍ରସୂତ କେତୋଟି ପୁସ୍ତକ ହେଲା- ଟାଉଟର, ଅବ୍ୟାପାର, ପ୍ରତିଭା, ତୃତୀୟ ପର୍ବ, ୧୯୭୫, ନୂତନ ଧର୍ମ, (ଉପନ୍ୟାସ), ପଲାସୀ ଅବସାନେ, ଚାରିଚକ୍ଷୁ, (କାବ୍ୟ) ସ୍ୱର୍ଗରେ ଇମରଜନ୍‌ସି (ଗଳ୍ପ ସଂକଳନ), ଆନନ୍ଦ ସନ୍ଧାନ (କବିତା ସଂକଳନ), ଯୁଗ ସଙ୍କେତ (ଏକାଙ୍କିକା ସଂକଳନ), ଓଡିଶାର ଇତିହାସ (ପ୍ରଥମ ଓ ଦ୍ୱିତୀୟ ଭାଗ) ଗାନ୍ଧିଜୀ ଓ ଓଡିଶା, ଗାଁ ମଜଲିସ୍ (୧ମ ଭାଗରୁ ୫ମ ଭାଗ ପର୍ଯ୍ୟନ୍ତ), ଶେଷଅଶ୍ରୁ, ଜୀବନ ସମସ୍ୟା ନାଟକ ଦ୍ୱୟ ଏବଂ ଆତ୍ମଜୀବନୀ ସାଧନାପଥେ । ଏତଦ୍‌ବ୍ୟତୀତ ଇଂରେଜରେ ତାଙ୍କ ଦ୍ୱାରା ରଚିତ ପୁସ୍ତକଗୁଡିକ ହେଉଛି, History of orissa (Vol. 1 and 2), The Beginning of the End, Gandhi the political leader, while serving my nation, recollections of a congress man" ଏତଦ୍‌ବ୍ୟତୀତ ସେ ଅନେକ ଗଳ୍ପ, ପ୍ରବନ୍ଧ, ସମାଲୋଚନା ଓ ଶିଶୁ ସାହିତ୍ୟ ଲେଖି ଯାଇଛନ୍ତି ।

ଡକ୍ଟର ମହତାବଙ୍କ ଗଳ୍ପର ପରିସର ସୁଦୂରପ୍ରସାରୀ । ସମକାଳୀନ ପରିସ୍ଥିତି ଓ ଲୋକଚରିତ୍ରକୁ ନେଇ ସେ ପ୍ରାୟ ତିରିଶ ପାଖାପାଖି ଗଳ୍ପ ରଚନା କରିଛନ୍ତି । ପରିବର୍ତ୍ତିତ ପରିସ୍ଥିତିରେ ବ୍ୟକ୍ତି ଆକାଂକ୍ଷା ସହିତ ସାମାଜିକ ଆକାଂକ୍ଷାର ଦ୍ୱନ୍ଦ୍ୱ ଓ ସଂଘର୍ଷ ହିଁ ହେଲା ତାଙ୍କ କ୍ଷୁଦ୍ର ଗଳ୍ପର ସ୍ୱର ଓ ସେଥିରୁ ନୂତନ ସାମାଜିକ ଚେତନା ସୃଷ୍ଟି ହିଁ ହେଲା ସ୍ରଷ୍ଟା ମାନସର ସଂକଳ୍ପ । ତେଣୁ ତାଙ୍କ ଗଳ୍ପରେ ତାରୁଣ୍ୟର ରୋମାଣ୍ଟିକ ବିଳାସ ନାହିଁ, ପ୍ରେମର ଉଦ୍ଦାମ ଆବେଗ ନାହିଁ । ତଥାକଥିତ ଅଭିଜାତ ମାନସର ଯୌନ ଜିଜ୍ଞାସା ନାହିଁ । ଅଛି ସାମାଜିକ ରୂପାନ୍ତରୀକରଣର ପୌଢ଼ ବିଚାର ଓ ରାଜନୀତି ନିର୍ମଳତା ପାଇଁ ମନୀଷୀ ସୁନ୍ଦର ନିଷ୍ପକ୍ଷଚିନ୍ତନ ଓ ଦିଗ୍‌ଦର୍ଶନ । ଗୋଟିଏ ବାକ୍ୟରେ କହିଲେ ଡକ୍ଟର ମହତାବଙ୍କ ଗଳ୍ପଗୁଡିକ ଚଳନ୍ତି ସମୟର ଗୋଟିଏ ଗୋଟିଏ ମାର୍ମିକ ଆଲେଖ୍ୟ ଓ ସାମାଜିକ ତଥା ରାଜନୀତିକ ଦାୟିତ୍ୱବୋଧର ସାର୍ଥକ ପ୍ରତିଲିପି ।

'ଚାରିଚକ୍ଷୁ' ଓ 'ପଲାସୀ ଅବସାନେ' କାବ୍ୟଦ୍ୱୟ ତାଙ୍କର ଦୁଇଟି ମୂଲ୍ୟବାନ କୃତି । 'ଚାରିଚକ୍ଷୁ'ରେ ତିନୋଟି କାହାଣୀ ସନ୍ନବେଶିତ । ତାହା ହେଲା ନନ୍ଦିକା, ଲଳିତା, ରାଜାରାଣୀ । ତାଙ୍କ ମନରେ ଘୂର୍ଣ୍ଣି ସୃଷ୍ଟି କରିଥିବା ଐତିହାସିକ ବେଦନା ବୋଧକୁ ସେ କାବ୍ୟ ରୂପେ ପ୍ରକାଶ କରିଛନ୍ତି, ଯାହା ତାଙ୍କ ତୃତୀୟ ଚେତନାର ସାର୍ଥକ ବାର୍ତ୍ତାବହ । ପଲାସୀ ଯୁଦ୍ଧରେ ସଂପୃକ୍ତ ବ୍ୟକ୍ତିମାନଙ୍କର ଚରିତ୍ର ବର୍ଣ୍ଣନା କରିଛନ୍ତି ସେ 'ପଲାସୀ ଅବସାନେ' କାବ୍ୟରେ । ସେ ଲେଖିଥିବା କବିତାଗୁଡିକ ସଂକଳିତ ହୋଇଛି 'ଆନନ୍ଦ ସଂଧାନ' ଗ୍ରନ୍ଥରେ । ତତ୍‌କାଳୀନ ଓଡ଼ିଶାର ରାଜନୀତିକ ସାମାଜିକ ଆଦି ଅବସ୍ଥା ଜାଣିବାକୁ ହେଲେ ପୂର୍ବରୁ ଉଲ୍ଲିଖିତ ଛଅଟି ଉପନ୍ୟାସକୁ ରସାଳ ଇତିହାସ ଭାବରେ ପଢାଯାଇପାରେ । କିପରି ବିପ୍ଳବ କରିବାକୁ ହେବ, ଚଳାଇବାକୁ ହେବ, ସମାଜର ସେବା କରିବାକୁ ଓ କରାଇବାକୁ ହେବ, ସେ ଦିଗରେ ମହତାବ ସଚେତନ ଥିବାରୁ ତାଙ୍କର ମର୍ମବାଣୀ ଓ ଦର୍ଶନ ଏହି ଛଅଟି ଉପନ୍ୟାସରେ ବର୍ଣ୍ଣନା କରିଯାଇଛନ୍ତି । ଓଡ଼ିଶାର ରାଜନୀତିକ ଦିଗ୍‌ବଳୟକୁ ଲକ୍ଷ୍ୟ କରି ସେ ଇଂରେଜ ଇଂରାଜୀରେ "History of Orissa" ଓ ଓଡ଼ିଆ ଭାଷାରେ ରଚନା କରିଛନ୍ତି 'ଓଡ଼ିଶାର ଇତିହାସ' । ତାଙ୍କର ସାମଗ୍ରିକ ସାହିତ୍ୟିକ କୃତିକୁ ଆକଳନ କରିବା ଏ କ୍ଷୁଦ୍ର ପ୍ରବନ୍ଧରେ ସମ୍ଭବ ନୁହେଁ । ତଥାପି ତାଙ୍କର 'ଗାଁ ମଜଲିସ୍'କୁ କୋଣଠେସା କଲେ ଚଳିବ ନାହିଁ । ଏହା ପାଞ୍ଚଖଣ୍ଡ ପୁସ୍ତକରେ ବିଭାଜିତ । ସେତେବେଳେ ପ୍ରଜାତନ୍ତ୍ରରେ ପ୍ରକାଶିତ ତାଙ୍କର ଧାରାବାହିକ ପାଣ୍ଡିତ୍ୟପୂର୍ଣ୍ଣ ଆଲୋଚନା 'ଗାଁ ମଜଲିସ୍' ସମକାଳୀନ ରାଜନୀତିକ, ସାମାଜିକ ଓ ସାଂସ୍କୃତିକ ସମସ୍ୟାବଳୀ ଆଧାରରେ ରଚିତ ହୋଇଥିବାରୁ ପାଠକ ମହଲରେ ବେଶ୍ ଆଲୋଡନ ସୃଷ୍ଟି କରିଥିଲା । ଗ୍ରାମ୍ୟ ଜୀବନର ବହୁ ସମସ୍ୟାକୁ ସେ 'ଗାଁ ମଜଲିସ୍'ରେ ସ୍ଥାନ ଦେଇ ଅଧିକ ଲୋକପ୍ରିୟ ହୋଇପାରିଥିଲେ । କଟକର ପ୍ରଜାତନ୍ତ୍ର ପରିସର ତାଙ୍କର କର୍ମଭୂମି ଭାବରେ ପରିଚିତ ଥିଲା । 'ଗାଁ' ମଜଲିସ୍' ପାଇଁ ସେ ୧୯୮୩ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡେମୀ ପୁରସ୍କାର ପାଇଥିଲେ । ଡକ୍ଟର ମହତାବ ଜଣେ ବ୍ୟକ୍ତିବିଶେଷ ନଥିଲେ ସେ ଥିଲେ ଓଡ଼ିଶାର ଏକ ବହୁମୁଖୀ ସ୍ୱୟଂ ସଂପୂର୍ଣ୍ଣ ଅନୁଷ୍ଠାନ । ସେପରି ତ୍ୟାଗନିଷ୍ଠ, କର୍ମୀ, ରାଜନେତା ଓ ସାହିତ୍ୟିକଙ୍କୁ ଓଡ଼ିଶା ଚିରଦିନ ପାଇଁ ମନେ ରଖିଥିବ ।

ବମ୍ଫିଲୋ, ବାସନ୍ଦରା
ଜଗତ୍‌ସିଂହପୁର



# ସଫଳ ଔପନ୍ୟାସିକ – ଗୋପୀନାଥ ମହାନ୍ତି

ବିମଳା ସିଂହ

ସାହିତ୍ୟରେ ସବୁଠାରୁ ପ୍ରଭାବଶାଳୀ ହେଉଛି ଉପନ୍ୟାସ । ଅନେକ ଆଲୋଚନା ଓ ପର୍ଯ୍ୟାଲୋଚନାରୁ ଜଣାଯାଇଛି ଯେ, ଏକ ଶକ୍ତିଶାଳୀ ଉପନ୍ୟାସ ସମାଜ ଏବଂ ଦେଶରେ ଆଭିମୁଖ୍ୟ ବଦଳାଇବାରେ ସାହାଯ୍ୟ କରିଥାଏ । ସାମାଜିକ ସଂସ୍କାର ଆଣିବା କ୍ଷେତ୍ରରେ ଉପନ୍ୟାସର ଅବଦାନ ଅନସ୍ୱୀକାର୍ଯ୍ୟ । ଓଡ଼ିଆ ସାହିତ୍ୟ ଜଗତରେ ସ୍ୱାଧୀନତା ପୂର୍ବରୁ ଏବଂ ପରେ ଅନେକ ଔପନ୍ୟାସିକ ତାଙ୍କର କାଳଜୟୀ ସୃଷ୍ଟି ମାଧ୍ୟମରେ ସମାଜରେ ଘଟୁଥିବା ବିଭିନ୍ନ ଘଟଣା, ଦୁର୍ଘଟଣାକୁ ସାମ୍ନା କରି ନିଜର ସ୍ୱାତନ୍ତ୍ର୍ୟତା ଏବଂ ବ୍ୟକ୍ତିତ୍ୱ ପ୍ରତିଷ୍ଠା କରିବାରେ ସକ୍ଷମ ହୋଇଛନ୍ତି । ଏହି ଔପନ୍ୟାସିକମାନଙ୍କ ମଧ୍ୟରେ ସୁରେନ୍ଦ୍ର ମହାନ୍ତି, କାହ୍ନୁଚରଣ ମହାନ୍ତି, ରାଜକିଶୋର ପଟ୍ଟନାୟକ, ବସନ୍ତ କୁମାରୀ ପଟ୍ଟନାୟକ ଏବଂ ଗୋପୀନାଥ ମହାନ୍ତି ବେଶ୍ ସୁଖ୍ୟାତି ଆଣିପାରିଛନ୍ତି ଓଡ଼ିଆ ସାହିତ୍ୟ ଜଗତ ପାଇଁ । ଏହି କ୍ରମରେ ସେମାନେ ଉପନ୍ୟାସରେ କେବଳ ପ୍ରେମ, ବିରହ ବା ସାମାଜିକ ଓ ଅର୍ଥନୈତିକ ସଂସ୍କାର ସହ ସଂଘର୍ଷ ସହ ମାନବ ମନର ବୈଜ୍ଞାନିକ ବିଶ୍ଳେଷଣ ମଧ୍ୟ କରିଛନ୍ତି । ଏହି କ୍ରମରେ କଥା-ସାହିତ୍ୟର ସମ୍ରାଟ୍ ଗୋପୀନାଥ ମହାନ୍ତି, ଯିଏ ଜଣେ ଅସାମାନ୍ୟ ସ୍ରଷ୍ଟା ଥିଲେ, ତାଙ୍କର ଜୀବନ କ୍ରମରେ ଭେଟିବା ତାଙ୍କର କାଳଜୟୀ ଉପନ୍ୟାସଗୁଡ଼ିକୁ ।

ତାଙ୍କର ପ୍ରଥମ ଉପନ୍ୟାସ ଥିଲା 'ଦାଦି ବୁଢ଼ା' । ଏହି ଉପନ୍ୟାସରେ ଗୋପୀନାଥ ଆଦିବାସୀମାନଙ୍କର ଉତ୍‌ଥାନ, ପତନ, ଗତି ଓ ପରିବର୍ତ୍ତନ, ସଂସ୍କୃତି, ବିଶ୍ୱାସ ଓ ବିଚାରବୋଧକୁ ଉପସ୍ଥାପିତ କରିଛନ୍ତି ।

ଦ୍ୱିତୀୟ ଉପନ୍ୟାସ ହେଉଛି 'ପରଜା' । ଏହା ଆଦିବାସୀମାନଙ୍କର ସାମାଜିକ ତଥା ସାଂସ୍କୃତିକ ଦସ୍ତାବିଜ୍ ଭାବରେ ଏକ ସ୍ୱତନ୍ତ୍ର ସ୍ଥାନର ଅଧିକାରୀ ହୋଇପାରିଛି । ସତ୍ୟ କାହାଣୀ ଉପରେ ଆଧାରିତ ଏଇ ଉପନ୍ୟାସର ମୁଖ୍ୟ ଚରିତ୍ର ଶୁକ୍ରଜାନି ଓ ତା'ର ପରିବାରର ବୁକୁଫଟା ବିକଳ ବିଳାପ କରୁଣ ଗୀତିକା ଏଥିରେ ରୂପାୟିତ ହୋଇଛି । ଦ୍ୱିତୀୟ ବିଶ୍ୱଯୁଦ୍ଧ ପରେ ପରେ ଏହି ଉପନ୍ୟାସଟି ରଚିତ ଏବଂ ଏଥିରେ ଗୋପୀନାଥଙ୍କ କାବ୍ୟିକ ଭାବ ଓ କବିତ୍ୱପୂର୍ଣ୍ଣ ଅଭିବ୍ୟକ୍ତି ଏହି ଉପନ୍ୟାସର ବୈଶିଷ୍ଟ୍ୟ ବହନ କରେ ।

ତୃତୀୟ ଉପନ୍ୟାସଟି ହେଉଛି 'ହରିଜନ' । ସହରତଳି ଅଞ୍ଚଳରେ ବାସ କରୁଥିବା ଅଚ୍ଛବ ହରିଜନମାନଙ୍କୁ ନେଇ ଗୋପୀନାଥଙ୍କର ଏହି ଉପନ୍ୟାସଟି ସୃଷ୍ଟି । ସମାଜ ଦୃଷ୍ଟିରେ ସହରତଳି ଅଞ୍ଚଳରେ ଏହି ମଣିଷମାନେ ପ୍ରଗତିଶୀଳ ସମାଜରେ ବିଷବ୍ରଣ ସଦୃଶ । ସହରର ଆଭିଜାତ୍ୟ ଶ୍ରେଣୀର ଲୋକଙ୍କର ମେହେନ୍ତରମାନଙ୍କ ପ୍ରତି ଚାଲିଥିବା ଶୋଷଣ ଓ ଉପଭୋଗ ଲାଳସା ହିଁ ଉପନ୍ୟାସର ମୁଖ୍ୟ କଥାବସ୍ତୁ ।

ଚତୁର୍ଥ ଉପନ୍ୟାସଟି ହେଲା 'ଅମୃତର ସନ୍ତାନ' । ଗୋପୀନାଥଙ୍କୁ ଏହା ଉତ୍ତୁଙ୍ଗ ଶିଖରରେ ନେଇ ଛିଡ଼ା କରାଇପାରିଛି । ଏଥିରେ ଆଦିବାସୀମାନଙ୍କର ଜୀବନ ସଂଗ୍ରାମ ନାହିଁ ବା ଜୀବନ ଯନ୍ତ୍ରଣାର ତୀବ୍ର ସ୍ୱର ନାହିଁ,

ଅଛି ଜୀବନବୋଧର ବିପୁଳ ସମ୍ଭାବନା । ଏଠି ଆଦିବାସୀ ମଣିଷ ଜୀବନର ସବୁ ଦୁଃଖ-ଯନ୍ତ୍ରଣାକୁ ଫାଙ୍କି ଦେଇ ନୂତନ ପୃଥିବୀର ସ୍ୱପ୍ନ ଦେଖିଛି । ଏହି ଉପନ୍ୟାସଟି ପାଇଁ ୧୯୫୫ ମସିହାରେ ଗୋପୀନାଥ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ପାଇବା ସହ ୧୯୮୯ ମସିହାରେ କେନ୍ଦ୍ର ସାହିତ୍ୟ ଏକାଡ଼େମୀର ଏକ ସାକ୍ଷାତ୍‌କାର କାର୍ଯ୍ୟକ୍ରମରେ ଗୋପୀନାଥଙ୍କୁ ଅଭିନନ୍ଦିତ କରି ଯେଉଁ ଫୋଲ୍‌ଡରଟି ଛାପିଥିଲେ, ସେଥିରେ 'ଅମୃତର ସନ୍ତାନ'କୁ ସ୍ୱାଧୀନତା ପରବର୍ତ୍ତୀ ଓଡ଼ିଶାର ସର୍ବଶ୍ରେଷ୍ଠ କୃତୀ ବୋଲି ଉଲ୍ଲେଖ କରିଥିଲେ । ଅନେକ ଘାତ ପ୍ରତିଘାତ, ଆର୍ଥିକ ସ୍ୱଚ୍ଛଳତା ଜୀବନ ନିର୍ବାହ କରି ଗୋପୀନାଥ ପାଠ ପଢ଼ି ଚାକିରି କରିବା ଜୀବନ ଭିତରେ ଯେଉଁ ସଂଘର୍ଷ କରିଥିଲେ ଏବଂ ଏକ ଶୋଷିତ ଅବହେଳିତ ଜାତିକୁ ଅତି ନିକଟରେ ପାଇ ତାଙ୍କ ହୃଦୟରେ ଯେଉଁ ମାନବବାଦର ସ୍ୱର ବିଗଳିତ ହୋଇଥିଲା, ତାହା ଗୋପୀନାଥଙ୍କୁ ତାଙ୍କ ଉପନ୍ୟାସମାନଙ୍କର ଉପଜୀବ୍ୟ ହୋଇ ଏତେବଡ଼ ଆସନରେ ଅଧିଷ୍ଠିତ କରାଇ ପାରିଥିଲା । ଏହି 'ଅମୃତର ସନ୍ତାନ' ଉପରେ ଇଣ୍ଡିଆନ୍ ଲିଟେରାରି ରିଭ୍ୟୁରେ ଡକ୍ଟର ସୀତାକାନ୍ତ ମହାପାତ୍ର ଏକ ଛୋଟ ନିବନ୍ଧରେ କହିଛନ୍ତି ଯେ 'ଅମୃତର ସନ୍ତାନ' ହେଉଛି ଗୋଟିଏ ଏପିକ୍ ବା ମହାକାବ୍ୟ । ଏଥିରେ ପାଠକ ଲୁହର ଝରଣା ଭିତରେ ପାଠ ଆନନ୍ଦର ସ୍ୱାଦ । ଉପନ୍ୟାସଟିକୁ ଗଦ୍ୟକାବ୍ୟ କହିବା ସଙ୍ଗତ । ଲେଖକ ଏଇଠି ଶବ୍ଦରେ ଶବ୍ଦରେ ଛବିଗୁଡ଼ିଏ ଆଙ୍କିଛନ୍ତି । ତା' ସଙ୍ଗରେ ଭରିରହିଛି ବିପୁଳ ନାନ୍ଦନିକତା । ପ୍ରକୃତରେ କହିବାକୁ ଗଲେ 'ଅମୃତର ସନ୍ତାନ'ର ଅମୃତ ଅନୁଭବ ଆବେଦନ ଓ ଜୀବନର ଚିରନ୍ତନତା ଅଧିକ ମନଛୁଆଁ ।

ପଞ୍ଚମ ଉପନ୍ୟାସଟି ହେଲା, 'ଶରତ ବାବୁଙ୍କ ଗଳି' । ଏହି ଉପନ୍ୟାସଟି ଗୋପୀନାଥ ବାବୁ ଆସ୍କାରେ ଥିବା ସମୟରେ ୧୯୪୯ ମସିହାରେ ରଚିତ । ଏହା ଏକ କ୍ଷୁଦ୍ର ଉପନ୍ୟାସ ହେଲେ ହେଁ ଏଥିରେ ଔପନ୍ୟାସିକ ସହର ଜୀବନ ଉପରେ ଦୃଷ୍ଟି ପକାଇଛନ୍ତି । ଏହା ଏକ ପ୍ରକାର ହାସ୍ୟରସରେ ପରିପୂର୍ଣ୍ଣ ଉପନ୍ୟାସ କହିଲେ ଚଳେ । କାରଣ ସହର ଭିତରେ ଅନେକ ଗଳି ଏବଂ ବିଭିନ୍ନ ଗଳିରେ ବେଳେବେଳେ ବିଭିନ୍ନ ଘଟଣା ଘଟିଥାଏ । ତାକୁ କିଏ କେମିତି ମାନସିକତାରେ ଗ୍ରହଣ କରେ ଏବଂ ଶେଷରେ ହାସ୍ୟାସ୍ପଦ ହେବାକୁ ପଡ଼େ, ତାହା ଔପନ୍ୟାସିକ ଏଠାରେ ପ୍ରକାଶ କରିଛନ୍ତି ।

ଷଷ୍ଠ ଉପନ୍ୟାସଟି ଗୋପୀନାଥଙ୍କର ହେଉଛି 'ରାହୁର ଛାୟା' । ଏହା ଏକ ଅନ୍ତଃସଂଳାପଧର୍ମୀ ଉପନ୍ୟାସ । ଏହି ଉପନ୍ୟାସର ଚରିତ୍ରଗୁଡ଼ିକୁ ଔପନ୍ୟାସିକ ନିଜ ଅନୁଭୂତିରେ ଏବଂ କିଛି ବିଭିନ୍ନ କ୍ଷେତ୍ରରୁ ସଂଗ୍ରହ କରିଛନ୍ତି । ମନନଶୀଳତା, ଅନ୍ତର୍ଦ୍ୱନ୍ଦ୍ୱ ଓ ଚେତନା ପ୍ରଭାବର ପ୍ରାଚୁର୍ଯ୍ୟତା ଏହି ଉପନ୍ୟାସରୁ ମିଳେ । ଏହା ଏକ ପ୍ରକାର ଆତ୍ମଜୀବନୀ ବା ଡାଏରୀ କୁହାଯାଇପାରେ ।

ସପ୍ତମ ଉପନ୍ୟାସଟି ଏକ କ୍ଷୁଦ୍ର ଉପନ୍ୟାସ । ଉପନ୍ୟାସଟି ହେଲା 'ଦୁଇ ପତ୍ର' । ଏଥିରେ କେଉଟମାନଙ୍କର ଅଭୂତପୂର୍ବ ତ୍ୟାଗ ଏବଂ ସମ୍ବାଦପତ୍ରର ସମ୍ପାଦକ ଅଜିତ ବାବୁଙ୍କ ସମ୍ପାଦକୀୟରୁ ଉପନ୍ୟାସଟି ଗତିଶୀଳ । କହିବାକୁ ଗଲେ- 'ଦୁଇ ପତ୍ର' ଉପନ୍ୟାସର ପ୍ରଥମ ପତ୍ରଟି କ୍ରମଶଃ ସବୁଜିମା ହଜେଇ ନିଷ୍ପ୍ରଭ ହୋଇ ଝଡ଼ିପଡ଼ିଛି । ଦ୍ୱିତୀୟ ପତ୍ରଟି ବୃନ୍ତଚ୍ୟୁତ ନ ହୋଇ ମାନବୀୟ ସବୁଜିମାରେ ଚିରହରିତ୍ ଓ ପ୍ରାଣ ସ୍ପନ୍ଦନରେ ହିଲ୍ଲୋଳିତ ହୋଇଛି ।

ଅଷ୍ଟମ ଉପନ୍ୟାସଟି ହେଲା- 'ସପନ ମାଟି' । ଏହି ଉପନ୍ୟାସଟି ଆସ୍କାରେ ଥିବା ବେଳେ ୧୯୪୮ ମସିହାରେ ଗୋପୀନାଥ ବାବୁ ଲେଖିଥିଲେ । ସମାଜରେ ଶ୍ରେଣୀ ସଂଘର୍ଷ, ଗଣତାନ୍ତ୍ରିକ ମୂଲ୍ୟବୋଧର ଅବକ୍ଷୟ, ନେତାମାନଙ୍କର ପ୍ରତାରଣା, ହିଂସାତ୍ମକ କାର୍ଯ୍ୟକଳାପ ପ୍ରଭୃତି ନେଇ ଏହି ଉପନ୍ୟାସଟି ରଚିତ । ନିଜ ଜୀବନର ସମସ୍ତ ଆଦର୍ଶକୁ ନେଇ ଔପନ୍ୟାସିକ ଉପନ୍ୟାସଟିକୁ ଗତିଶୀଳ କରାଇଛନ୍ତି ।

ତାଙ୍କର ଅନ୍ୟତମ ଉପନ୍ୟାସ ହେଉଛି 'ଦାନାପାଣି' । ଏହି ଉପନ୍ୟାସଟି ଏକ ଚର୍ଚ୍ଚିତ ଉପନ୍ୟାସ

ଏବଂ ୧୯୫୩ରେ ଏହା ପ୍ରକାଶ ପାଇଥିଲା । ଆଧୁନିକ ମଣିଷର ଜୀବନ କିପରି ସଂଘର୍ଷମୟ, ବିଶେଷ କରି ଚାକିରିଆର ଜୀବନ କିପରି ନିଜର ପଦୋନ୍ନତି ପାଇଁ ଅନ୍ୟ ନିକଟରେ ନିଜର ସର୍ବସ୍ୱ ସମର୍ପି ଦେଇଥାଏ, ତା'ର ସୁନ୍ଦର ଆଲେଖ୍ୟ ଏଥିରେ ବାଢ଼ିଛନ୍ତି ଔପନ୍ୟାସିକ ଗୋପୀନାଥ ଏଥିରେ । ଏହା ଔପନ୍ୟାସିକଙ୍କର ସମସ୍ତ ସୃଷ୍ଟି ମଧ୍ୟରେ ଏକ ସୌନ୍ଦର୍ଯ୍ୟ ମଣ୍ଡିତ ସୁରଭିତ କୁସୁମ ସଦୃଶ । ଏଥିରେ ସ୍ରଷ୍ଟାଙ୍କର ମହତ୍ତ୍ୱକୁ ଆହୁରି ସୁଦୂରପ୍ରସାରୀ କରାଇପାରିଛି । ଏହା ଏକ ସାମ୍ପ୍ରତିକ ପ୍ରୟୋଗବାଦୀ ଜୀବନ ସମ୍ପର୍କର ରୂପଚିତ୍ର ଅଙ୍କନ କରିବା ସଙ୍ଗେ ସଙ୍ଗେ ବିଂଶ ଶତକର ଉପନ୍ୟାସ ସୃଷ୍ଟି ଓ ପ୍ରଗତିର ରାଜଦାଣ୍ଡରେ ଏକ ମାଇଲଖୁଣ୍ଟ ସଦୃଶ ହୋଇ ଆଜି ବି ରହିଛି ।

ପରବର୍ତ୍ତୀ ଉପନ୍ୟାସଟି ହେଉଛି 'ଶିବ ଭାଇ' ଏବଂ ଏହା ଏକ କ୍ଷୁଦ୍ର ଉପନ୍ୟାସ ଗୋପୀନାଥ ମହାନ୍ତିଙ୍କର । କିପରି ସ୍ୱାଧୀନତା ପରେ ସମାଜର ନେତୃସ୍ଥାନୀୟ ବ୍ୟକ୍ତିମାନେ ସମାଜର ପ୍ରତ୍ୟେକ ବର୍ଗର ତଥା ଗଣ–ଜୀବନର ଉନ୍ନତି ପାଇଁ ଓ ସବୁରି ହୃଦୟରେ ସାମ୍ୟ ଓ ସହୃଦୟତାର ଭାବଧାରା ଅଣାଯାଇପାରିବ, ପ୍ରେମର ମନ୍ଦାକିନୀଟିଏ ବୁହାଯାଇପାରିବ, ସେଥିପାଇଁ ଚେଷ୍ଟା କଲେ । ଯାହାର ଫଳସ୍ୱରୂପ ଦେଶରେ ସର୍ବୋଦୟ ଆନ୍ଦୋଳନର ଜନ୍ମ ହେଲା ଏବଂ ଏହାର ନେତୃତ୍ୱ ନେଇଥିଲେ ସନ୍ଥ ବିନୋବା ଭାବେ । ରାୟଗଡ଼ଠାରୁ ୧୪ କି.ମି. ଦୂର ଉତ୍ତର ଦିଗରେ ପଡ଼େ ଡୁମଗୁଡ଼ା ଗାଁ । ଶିବ କନ୍ଧ ଏହି ଗାଁର ମୁଖିଆ ନନ୍ଦ କନ୍ଧର କ୍ୱାଇଁ । ଶିବ କନ୍ଧର ପାରିବାରିକ କାହାଣୀକୁ ନେଇ ଉପନ୍ୟାସଟି ଜୀବନ୍ତ ହୋଇ ଉଠିଛି ଏବଂ ଏକ ଦୁଃଖଦ ଘଟଣା ଶିବ କନ୍ଧ ବାଘର ଶିକାର ହୋଇ ମୃତ୍ୟୁବରଣ କରିଛି ଜାଣିବା ପରେ ପରିବାରର ସମସ୍ତ ସଦସ୍ୟ ଏକାଠି ହୋଇ କାନ୍ଦିବା ଏହି ଉପନ୍ୟାସର ଭିନ୍ନ ସ୍ୱାଦର କାହାଣୀ ଅଟେ ।

'ଶିବ ଭାଇ' ଉପନ୍ୟାସ ପରେ ଗୋପୀନାଥଙ୍କର ଅନ୍ୟତମ ଉପନ୍ୟାସ ହେଉଛି– 'ଅପହଞ୍ଚ' । ଏହି ଉପନ୍ୟାସଟିର ଜଣେ ଶିକ୍ଷିତ ଆଦିବାସୀ କନ୍ଧର ଜୀବନ ଚିତ୍ର ହିଁ କଥାବସ୍ତୁ । ମେଲକାବାଡ଼ିର ବୀମା କନ୍ଧର ପୁଅ ବୀମୀ କନ୍ଧର ଉତ୍‌ଥାନ ପତନ ଓ ତା'ର ମାନସିକ ପରିବର୍ତ୍ତନରେ ଏକ ନୂଆ ଛଳନାହୀନ ସମାଜ ଗଠନର ସୂଚନା ଦେବା ସଙ୍ଗେ ସଙ୍ଗେ ଲେଖକ ଗୋପୀନାଥ ନିଜେ ଜଣେ ସମାଜ ସଂସ୍କାରକ ଭାବେ ନିଜକୁ ଉଭା କରାଇଛନ୍ତି । ଅପହଞ୍ଚ ଅର୍ଥାତ୍ ଯାହା ସହଜରେ ସୁଲଭ ପ୍ରାପ୍ୟ ନୁହେଁ, ବୀମା କନ୍ଧ ପକ୍ଷରେ କିନ୍ତୁ ସର୍ବଶେଷରେ ପ୍ରାପ୍ତ ହୋଇଛି କିପରି, ତାହା ଔପନାସିକ ଗୋପୀନାଥ ଅତି ଚମତ୍କାର ଭାବରେ କାହାଣୀଟିକୁ ସଜାଇଛନ୍ତି ଶବ୍ଦର ଯାଦୁକରୀତାରେ ।

ଗୋପୀନାଥଙ୍କର ଅନ୍ୟତମ ସଫଳ ଉପନ୍ୟାସ ହେଉଛି 'ଲୟବିଲୟ । ଏହା ଏକ କ୍ଷୁଦ୍ର ଉପନ୍ୟାସ ହେଲେ ମଧ୍ୟ ଔପନ୍ୟାସିକ ଏଥିରେ ସମୁଦ୍ରର ବର୍ଣ୍ଣନା ଅତି ଚିତ୍ତାକର୍ଷକ ଭାବରେ କରିଛନ୍ତି । ସୂର୍ଯ୍ୟ ଉଦୟଠାରୁ ଅସ୍ତ ଏବଂ ଅସ୍ତଠାରୁ ଉଦୟ ପର୍ଯ୍ୟନ୍ତ ସମୟର କଳନା ନାହିଁ ବୋଲି ଗୋପୀନାଥ ବର୍ଣ୍ଣନା କରିଛନ୍ତି । ସମୁଦ୍ରର ଏଭଳି ବର୍ଣ୍ଣନା ନିଆରା ଯାହା ବିଶ୍ୱ ସାହିତ୍ୟରେ ବିରଳ । ଓଡ଼ିଆ ଜାତିର ସ୍ୱାଭିମାନକୁ ଏହି ଉପନ୍ୟାସଟି ମହିମାମଣ୍ଡିତ କରିଛି । କଲିକତା ଶିଳ୍ପନଗରୀରେ ପାରାଭାଡ଼ି ଭିତରେ ଅଣନିଃଶ୍ୱାସୀ ହୋଇ ଜୀବନ ବିତାଉଥିବା ତରୁଣ ରାୟ ପରିବାର ତିନିଦିନ ପାଇଁ ପୁରୀ ଆସି ଶ୍ରୀଜଗନ୍ନାଥଙ୍କୁ ଦର୍ଶନ କରିବା, ସମୁଦ୍ର କୂଳ ପରିଭ୍ରମଣ କରିବା ଭିତରେ ତରୁଣ ରାୟଙ୍କ କଣ୍ଠରେ, ତାଙ୍କ ପତ୍ନୀ କାନ୍ତିମୟୀଙ୍କ କଣ୍ଠରେ ତ କେତେବେଳେ ନିଜ କଣ୍ଠରେ ସମୁଦ୍ରର ସଂଗୀତ ଗାନ କରିଛନ୍ତି ସମୁଦ୍ରକୁ ତନ୍ମୟ ହୋଇ ଚାହିଁ ଚାହିଁ । ପାହାଡ଼ ଜଙ୍ଗଲ ବର୍ଣ୍ଣନାରେ ଔପନ୍ୟାସିକ ଗୋପୀନାଥ ଯେପରି ଚମକ ସୃଷ୍ଟି କରିଛନ୍ତି, ସମୁଦ୍ର ବର୍ଣ୍ଣନାରେ ମଧ୍ୟ ବିସ୍ମୟ ସୃଷ୍ଟି କରିଛନ୍ତି ଏହି ଉପନ୍ୟାସଟି ମାଧ୍ୟମରେ । 'ତନ୍ତ୍ରୀକାର' ହେଉଛି ଗୋପୀନାଥ ମହାନ୍ତିଙ୍କର ଅନ୍ୟତମ ଉପନ୍ୟାସ ।

ଔପନ୍ୟାସିକ ଗୋପୀନାଥଙ୍କର ଅନ୍ୟତମ ବିପୁଳକାୟ ସୃଷ୍ଟି ହେଉଛି ଉପନ୍ୟାସ 'ମାଟିମଟାଳ' । ଓଡ଼ିଆ ସାହିତ୍ୟରେ ଥିବା ବିସ୍ତୃତ ଉପନ୍ୟାସମାନଙ୍କ ମଧ୍ୟରୁ

ଏହି ଉପନ୍ୟାସଟି ବିସ୍ତୃତତମ । ମାଟିର ମୋହ ଔପନ୍ୟାସିକ ଗୋପୀନାଥଙ୍କୁ ଆଚ୍ଛାଦିତ କରି ରଖିଛି । ଏଥିରେ ମାଟିର ମଟାଳ ପଣ ଓ ମାନବଚେତନାର ଗଭୀର ଅନ୍ତଃସ୍ଥଳ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣିତ ହୋଇଛି । ଉପନ୍ୟାସର ନାୟକ ହୃଦୟରେ ମାଟି ପ୍ରତି ଜାଗ୍ରତ ହୋଇଥିବା ମୋହ, ମାଟି ପ୍ରତି ଅନୁରାଗ ଆଉ ମାଟିର ମଣିଷ ପ୍ରତି ଗଭୀର ଦରଦ । ଉପନ୍ୟାସଟିର ନାୟକ ରବି ଚରିତ୍ର ମାଧ୍ୟମରେ ଗୋପୀନାଥଙ୍କର ଗାଁ ପ୍ରତି ଥିବା ଆସକ୍ତି, ଭଲ ପାଇବାକୁ ଚିତ୍ରଣ କରିବାକୁ ଯାଇ ଗାଁ ପଲ୍ଲୀର ସୁନ୍ଦର ଚିତ୍ର ଯେପରି ବର୍ଣ୍ଣନା କରିଛନ୍ତି, ତାହା ଓଡ଼ିଆ ଉପନ୍ୟାସ ସାହିତ୍ୟରେ ବିରଳ । ଯଥାର୍ଥରେ 'ମାଟିମଟାଳ' ଏକ ଗ୍ରାମ୍ୟ ମହାକାବ୍ୟ କହିଲେ ଅତ୍ୟୁକ୍ତି ହେବ ନାହିଁ । ରବି ଚାକିରି କରିବାକୁ ସହର ଆସିଛି ଏବଂ ଦେଖିଛି ମାଳମାଳ ଜିପ୍, ଗାଡ଼ି, ମଟର, ଟ୍ରକ୍ ଏବଂ ହାଉଯାଉ ଲୋକ ସହରରେ କିନ୍ତୁ ସେ ଯେତିକି ଖୁସି ହୋଇଛି ସେ ସବୁ ଦେଖି ମନ କିନ୍ତୁ ଖୋଜିଛି ଗାଁ ତୁଠ, ମଶାଣିପଦା, ସାହାଡ଼ା ଗଛ, କ୍ଷେତ ଓ ବିଲ । ସହରର ସେ କୋଳାହଳ ତା' ଗାଁ ମାଟିର ମମତା ଓ ପରିବେଶ ପାଖରେ ତୁଚ୍ଛ ମଣିଲା ରବି । ତା'ଗାଁ ତାକୁ ଫେରି ଆସିବାକୁ ବାଧ୍ୟ କଲା । ତେଣୁ ସହରରେ ଚାକିରି ନ କରି ସେ ଫେରି ଆସିଛି ଗାଁକୁ । ଗାଁରେ ରହି ଗାଁରେ ଉନ୍ନତି ପାଇଁ କାମ କରିବ ବୋଲି ତା'ର ବାପାଙ୍କୁ କହିଛି ଏବଂ କରିଛି ମଧ୍ୟ । ମହାତ୍ମା ଗାନ୍ଧୀଙ୍କର 'ଗାଁକୁ ଫେରିଚାଲ' ପରି 'ମାଟିମଟାଳ'ରେ ରହିଛି ଗାଁକୁ ଫେରିଯିବାର ମହତ୍ ବାର୍ତ୍ତା ।

ଗୋପୀନାଥଙ୍କର ଅନ୍ୟ ଏକ ଉପନ୍ୟାସ ହେଲା 'ପାହାନ୍ତା', ଯାହା ପାକିସ୍ଥାନୀ ସୈନ୍ୟମାନଙ୍କର ବଙ୍ଗଳାଦେଶରେ ଚଳାଇଥିବା ଗଣହତ୍ୟା ଏବଂ ସେଥିରୁ ବଞ୍ଚିଯାଇଥିବା ଅମିନ୍ ଖାଁ, ଯିଏକି ଢାକାର ଏକ ଛାତ୍ରାବାସର ଗ୍ରନ୍ଥାଗାରିକ ଭାବରେ ଚାକିରି କରୁଥିବା ଅବସ୍ଥାରେ ନିଜ ଆଖିରେ ସ୍ତ୍ରୀ ଓ ଏକମାତ୍ର ପୁତ୍ରର ମୃତ୍ୟୁକୁ ସାମ୍ନା କରି ନିଜ ଜୀବନ ସହ ଏକ ଶିମୁଳି ଗଛର କୋରଡ଼ରେ ଦୁଇଦିନ ରହିଛି ଏବଂ ଭେଟିଛି ବନ୍ଧୁ ଭାବରେ ବୁଢ଼ିଆଣୀ, ସାପ, ଗୋଧି, ଓଧ ପ୍ରଭୃତିଙ୍କୁ, ସେହି ବିଷୟବସ୍ତୁ ଉପରେ ଆଧାରିତ ଏହି ଉପନ୍ୟାସ । ଔପନ୍ୟାସିକ ଗୋପୀନାଥ ଏଥିରେ ବିବର୍ତ୍ତନବାଦର ଏକ ସ୍ପଷ୍ଟ ଚିତ୍ର ଦେଇଛନ୍ତି । ଶେଷରେ ନାଲି ମୁରୁଜ ବୁଣିଦେଇ ଚହଟି ଆସୁଥିବା ନୂଆ ପାହାନ୍ତାରେ ସେ ନିଜର ସ୍ଥିତି ଜାଣିପାରିଛନ୍ତି । ନାୟକ ଅମିନ୍ ଖାଁ କିପରି ବଞ୍ଚିବ, ନିଜ ମାଟିକୁ ସ୍ୱାଧୀନ କରିବ, ଏକ ନୂତନ ସମାଜ ଗଠନ କରିବ ଏବଂ ଦେଖିବ ନୂଆ ସୂର୍ଯ୍ୟୋଦୟର ସ୍ୱପ୍ନ ଦେଖିବାର ପଣ ନେଇଛି, ତାହା ଔପନ୍ୟାସିକ ଖୁବ୍ ସୁନ୍ଦର ଭାବରେ ବର୍ଣ୍ଣନା କରିଛନ୍ତି ।

ପ୍ରକୃତରେ କହିବାକୁ ଗଲେ ଔପନ୍ୟାସିକ ଗୋପୀନାଥ ଏହି ଉପନ୍ୟାସଟିରେ ସ୍ଥିତିବାଦରୁ ରହସ୍ୟବାଦ, ଇନ୍ଦ୍ରିୟରୁ ଅତୀନ୍ଦ୍ରିୟ ଚେତନା ଓ ଦେହରୁ ଦେହାତୀତର ଉନ୍ମେଷ ଦର୍ଶାଇଛନ୍ତି । ଯୁଦ୍ଧର ବିଭୀଷିକା ଭିତରେ ସଂଗ୍ରାମରତ ମଣିଷଟିଏ ବଞ୍ଚିବାକୁ ଚାହୁଁଛି ବହୁ ବିଚିତ୍ର ଉପଲବ୍ଧି ଭିତରେ ଓ ଜୀବନ ଚେତନାକୁ କିପରି ମୂର୍ତ୍ତିମନ୍ତ କରାଇଛନ୍ତି ଏହି ଉପନ୍ୟାସ ମାଧ୍ୟମରେ ଗୋପୀନାଥ ମହାନ୍ତି, ତାହା ତାଙ୍କର ଲେଖକୀୟ ଶୈଳୀକୁ ଆହୁରି ଦୃଢ଼ କରିପାରିଛି ।

ଔପନ୍ୟାସିକ ଗୋପୀନାଥଙ୍କର ଅନ୍ୟତମ ଉପନ୍ୟାସ ହେଲା 'ଅନଳ ନଳ' । ଏହା ମଧ୍ୟ ଏକ କ୍ଷୁଦ୍ର ଉପନ୍ୟାସ । ଉପନ୍ୟାସଟିର ନାୟିକା ସୁନ୍ଦରୀ । ଈଶ୍ୱର ବିଶ୍ୱାସୀ ସୁନ୍ଦରୀ କେବଳ ଠାକୁରଙ୍କୁ ପ୍ରାର୍ଥନା କରୁଥିଲା ସବୁଦିନ 'ଏଇ ଜୀବନ... ଏଇ ସୁନ୍ଦର ଜୀବନ ମୋର ରହିଥାଉ ସବୁଦିନ । କିନ୍ତୁ ତା'ର ପରିପୂର୍ଣ୍ଣ ଜୀବନରେ ଗୋଟାଏ ପରେ ଗୋଟାଏ ଦୁଃଖ ଆସିଛି । ସ୍ୱାମୀ ଓ ଦୁଇ ପୁତ୍ରର ମୃତ୍ୟୁ ପରେ ତା'ର ସଞ୍ଚିତ ଅର୍ଥ, ଗହଣାଗାଣ୍ଠି, ପ୍ରୋଭିଡ଼େଣ୍ଟ ଫଣ୍ଡ, ଇନ୍ସ୍ୟୁରାନ୍ସ ଟଙ୍କା ହାତେଇବାକୁ ଶାଶୁ ଘର ଲୋକଙ୍କ ଚକ୍ରାନ୍ତ କବଳରୁ ଖସିଆସି ନର୍ସିଂ ଚାକିରି ପରେ ବାପାଙ୍କ ମୃତ୍ୟୁ ପରେ ସାନପୁଅକୁ ଧରି ଏକ ଭଡ଼ା ଘରେ ରହି ଯେଉଁ ଜୀବନ ଜିଇଁଛ, ତା'ର ଅନ୍ତଃସଂଳାପ ଓ ଅସ୍ତିତ୍ୱବାଦିତାକୁ ନେଇ ଉପନ୍ୟାସଟି ଆକର୍ଷିତ କରେ ପାଠକ ହୃଦୟକୁ ।

ଗୋପୀନାଥଙ୍କର ଅନ୍ୟତମ ଉପନ୍ୟାସ ହେଲା 'ବଘେଇ' । ଏହା ମଧ୍ୟ ଏକ କ୍ଷୁଦ୍ର ଉପନ୍ୟାସ । ଏହି ଉପନ୍ୟାସଟି ଆଦିବାସୀ ଜୀବନ ସମ୍ପର୍କଭିତ୍ତିକ ଏକ ଶିକାର ଗଳ୍ପ । ଏହି ଉପନ୍ୟାସଟିରେ ଦୁଇଟି ମୁଖ୍ୟ ଚରିତ୍ର ହେଉଛନ୍ତି– ଗାଁ ମୁଣ୍ଡିଆଳ ଧ୍ରୁବ ସିଂ ଆଉ ଧନୁ ପଣ୍ଡିତ । ଉଭୟେ ପଞ୍ଚଷଠି ବୟସର ବୃଦ୍ଧ । ଉପନ୍ୟାସରେ ବର୍ଣ୍ଣିତ ଭୂମିଟି ହେଉଛି ଏକ ଉପତ୍ୟକା । ଏହାର ଠାଏ ଠାଏ ଚାଷଜମି, ଠାଏ ଠାଏ ଗୁଡ଼ା ବା ବସ୍ତି । ସବୁଯାକ ବସ୍ତି ମିଶି ଅଞ୍ଚଳଟିର ନାଁ ହେଉଛି ଲେଣ୍ଡେଗାଁ । ଲେଣ୍ଡେଗାଁର ବିଶେଷତ୍ୱ ଥିଲା ଯେ, ଏ ଗାଁକୁ କେବେ ବାଘ ଆସେନି । କିନ୍ତୁ ଦିନେ ଗାଁକୁ ବାଘ ଆସିଛି । ବାଘ କବଳରୁ ଗାଁ ଲୋକଙ୍କୁ ରକ୍ଷା କରିବା ପାଇଁ ଧନୁ ପଣ୍ଡିତଙ୍କୁ ବ୍ରାହ୍ମଣୀ ଦେବୀ ଲାଗିଲେ । ବାଘକୁ ଘଉଡ଼ାଇବା ପାଇଁ ବଣ ଭିତରେ ଗାଁ ଲୋକମାନେ ବାଟବଣା ହୋଇଛନ୍ତି । ଧ୍ରୁବ ସିଂକୁ ବାଘ ଖାଇଛି । ଧନୁ ପଣ୍ଡିତଙ୍କ ବାଘ୍ହା ଆକ୍ରମଣରେ ଗୋଡ଼ ଭାଙ୍ଗିଚି । ପରେ ପରେ ବାଘୁଣି ଓ ବାଘ୍ହା ପରସ୍ପର ସଂଘର୍ଷ କରି ଗୋଟିଏ କୂଅରେ ପଡ଼ି ମରିଛନ୍ତି ।

ଏଠାରେ ଔପନ୍ୟାସିକ ଆଦିବାସୀମାନଙ୍କର ସରଳ ବିଶ୍ୱାସପଣକୁ ଦୋହରାଇଛନ୍ତି । କାରଣ ଆଦିବାସୀମାନେ ବାଘ ମାରନ୍ତି ନାହିଁ । ସେମାନେ ମନେ ମନେ ସମ୍ବୋଧି କହନ୍ତି– 'ଆମେ ଭାଇ ଭାଇ, ଚେହେରା ସିନା ଭିନ୍ନେ – କିନ୍ତୁ ତୁମେ ବଡ଼, ତୁମଠି କେଡ଼େ ବପୁ, କେତେ ଗୁଣ, ସେଥିପାଇଁ ଆମେ ତୁମକୁ ପୂଜା କରୁ ।' ଏଥିରେ ଆଦିବାସୀମାନଙ୍କ ସରଳ ଜୀବନ ସଂଘର୍ଷ ଓ ଅସହାୟତାର ଜୀବନ୍ତ ଉଦାହରଣ ଦେଇଛନ୍ତି ଗୋପୀନାଥ 'ବଘେଇ' ଉପନ୍ୟାସ ମାଧ୍ୟମରେ ।

ଗୋପୀନାଥଙ୍କ ଅନ୍ୟ ଏକ ସୃଷ୍ଟି ହେଲା– 'ମନର ନିଆଁ'। ଏହା ମଧ୍ୟ ଏକ କ୍ଷୁଦ୍ର ଉପନ୍ୟାସ । ଏହି ଉପନ୍ୟାସର ନାୟକ ହେଉଛନ୍ତି ଜଣେ ଅବିବାହିତ ଯୁବକ । ସେ ଜଣେ ଡାକ୍ତର ଏବଂ ତାକ ନାମ ଗେଣ୍ଡୁ । ଉପନ୍ୟାସର ନାୟିକା ଝୁନି, ଯିଏକି ଅତି ସୁନ୍ଦରୀ । ଏହି ଉପନ୍ୟାସ ଏକ ପ୍ରେମକାହାଣୀକୁ ନେଇ ରଚିତ ହୋଇଥିଲେ ମଧ୍ୟ ପ୍ରେମିକ ଜୀବନରେ ତିନି ଜଣ ନାୟିକା ଆସିଛନ୍ତି । ସେମାନେ ନାୟକର ମନରେ ନିଆଁ ଭରି ଦେଇଛନ୍ତି । ନାୟିକା ଭାନୁମତୀ–ପ୍ରୀତି–ଝୁନି, ଏ ତିନିଜଣଙ୍କ ମଧ୍ୟରୁ ସେ କାହାରିକୁ ପାଇ ପାରିନାହାନ୍ତି । ଔପନ୍ୟାସିକ ଗୋପୀନାଥ ଜଣେ ଅବିବାହିତ ଯୁବକର ଅନ୍ତର୍ଭୁକ୍ତ ମନକୁ ଉପନ୍ୟାସରେ ପ୍ରତିଫଳିତ କରିଛନ୍ତି । ତେଣୁ ପାଠକ ଓ ଆଲୋଚକଙ୍କ ମତରେ ଏହି ଉପନ୍ୟାସଟି ଭାବରାଜ୍ୟରେ ଆତୁର ଉଦ୍‌ବେଳନ ଯୋଗୁଁ 'ମନର ନିଆଁ' ଉପନ୍ୟାସଟି ଅଧିକ ଚେତନା ପ୍ରବାହଧର୍ମୀ ହୋଇଛି ।

ଔପନ୍ୟାସିକ ଗୋପୀନାଥଙ୍କର ଗ୍ରାମ୍ୟଜୀବନକୁ ନେଇ ଅନ୍ୟ ଏକ ଉପନ୍ୟାସ ହେଲା 'ଦିଗଦିହୁଡ଼ି' । ୧୯୭୮ ମସିହାରେ ଏହା ପ୍ରକାଶିତ ହୋଇଥିଲା । ଏହି ଉପନ୍ୟାସଟିର ନାୟିକା ରମା । ନୂତନ ସମାଜ ଗଢ଼ା ସ୍ୱପ୍ନ, ପରକୁ ଆପଣେଇବାର ଆତୁରତା ନାୟିକା ରମାକୁ କରିଦେଇଛି ଏକ ଆଲୋକବର୍ତ୍ତିକା... ଜଳନ୍ତା ଦିହୁଡ଼ି । ଏକ ସୁନ୍ଦର ସମ୍ଭାବନାମୟ ପୃଥିବୀର ପରିକଳ୍ପନା ହିଁ 'ଦିଗଦିହୁଡ଼ି' ଉପନ୍ୟାସଟିର ଅନ୍ତଃସ୍ୱର । ନାୟିକା ରମା ବିବାହ ପରେ ବୈଧବ୍ୟ ଯନ୍ତ୍ରଣାର ଶିକାର ହେବା, ବାପଘରେ ଯାଇ ରହି ଗ୍ରାମସେବିକା ହେବା, ନିଜର ସୁକର୍ମାବଳୀ ପାଇଁ ପ୍ରଶଂସାର ପାତ୍ରୀ ହେବା ଏବଂ ଚାପରେ ପଡ଼ି ଆଶ୍ରମରେ ନିଜ ସନ୍ତାନ ସହିତ ରହି ସେବା କରିବା, ପୁନଶ୍ଚ ବିବାହ ପାଇଁ ରାଜି ନ ହେବା ଆଦି ଭିତରେ ଗତିଶୀଳ ଉପନ୍ୟାସର କଥାବସ୍ତୁ ।

ଗୋପୀନାଥଙ୍କର ଅନ୍ୟ ଏକ ଉପନ୍ୟାସ ହେଲା– 'ବୁନ୍ଦାଏ ପାଣି' । ଏହା ମଧ୍ୟ ଏକ କ୍ଷୁଦ୍ର ଉପନ୍ୟାସ । ଏହି ଉପନ୍ୟାସଟିର ନାୟକ– ବିନୋଦ । ସେ ଥିଲେ ସ୍ୱାଧୀନଚେତା ଏବଂ ସ୍ୱାଭିମାନୀ ଓ ସ୍ପଷ୍ଟବାଦୀ ସରକାରୀ କର୍ମଚାରୀ । ପରିବାର ସହ ଗୋଟିଏ ଛୋଟ କୋଠାଘରେ ରହନ୍ତି । ଚାକିରି ଜୀବନରେ ରାଜନୈତିକ ବ୍ୟକ୍ତିବିଶେଷଙ୍କର ଚାଟୁକାରିତା ନ କଲେ କିପରି ସମସ୍ତ ଦକ୍ଷତା ଥାଇ ମଧ୍ୟ ପଦୋନ୍ନତି ମିଳେ ନାହିଁ, ତାହାର ଏକ ନଗ୍ନ ଉଦାହରଣ ଔପନ୍ୟାସିକ ଏହି ନାୟକ ଚରିତ୍ରରେ ଫୁଟାଇଛନ୍ତି ।

ସଙ୍କୋଚତା ପ୍ରକାଶ ପାଇଲେ ଠୋକର ଖାଇବାକୁ କିପରି ପଡ଼େ, ତାହା ଦର୍ଶାଇବାକୁ ଯାଇ, ଏକ କାବ୍ୟିକ ପରିସମାପ୍ତି ଘଟାଇ ବଦଳି ଆଦେଶକୁ ବିନୋଦ ବାବୁ ଗ୍ରହଣ କରିବା, ନୂତନ କର୍ମକ୍ଷେତ୍ରରେ ଯୋଗଦେବା ଅବସରରେ ହୃଦୟ ଭିତରେ ସମସ୍ତଙ୍କଠାରୁ ପାଇଥିବା ସ୍ନେହ, ଆଦର କିପରି ମଳି ହୋଇଯାଇଛି, ତାହା ଗୋପୀନାଥ ବାବୁ ଅତି ସୁନ୍ଦର ଭାବରେ ଉପନ୍ୟାସଟିରେ ବର୍ଣ୍ଣନା କରିଛନ୍ତି ।

'କିଛି କହିବାକୁ ଚାହେଁ' ହେଉଛି ଗୋପୀନାଥଙ୍କର ଏକ କ୍ଷୁଦ୍ର ଉପନ୍ୟାସ । ଏଥିରେ ନାୟକ ସତୁ କକେଇ । 'ବୁନ୍ଦାଏ ପାଣି' ଉପନ୍ୟାସର ନାୟକ ବିନୋଦ ଚରିତ୍ରର ବିପରୀତ ଧର୍ମୀ ଚରିତ୍ର ଥିଲେ ସତୁ କକେଇ ଦାନାପାଣିର ତାଡ଼ନାରେ । ଅସତ୍ ଉପାୟ ଅବଲମ୍ବନ କରି ଧନ ଅର୍ଜନ କରିଥିବା ବ୍ୟକ୍ତି କିପରି ସଫଳତାର ଶୀର୍ଷରେ ପହଞ୍ଚି ଥାଇପାରେ, କିନ୍ତୁ ଶେଷରେ କାରାବରଣ କରିବାକୁ ପଡ଼ିଥାଏ, ତାହା ଔପନ୍ୟାସିକ ଏଠାରେ ଦର୍ଶାଇଛନ୍ତି । 'ବଞ୍ଚିବା ଓ ସଫଳତାର ସହ ବଞ୍ଚିବା ହେଉଛି ଜୀବନର ଚୂଡ଼ାନ୍ତ ସତ୍ୟ । ଆଗେ ବଞ୍ଚିବା ପରେ ଦର୍ଶନ । ସେଥିପାଇଁ ନାନା ଯୁଗରେ ନାନା ଶାସ୍ତ୍ରର ଭିନ୍ନ ଭିନ୍ନ ମତ ହୋଇଛି କେତେବେଳେ ଶାନ୍ତି ସ୍ଥାପନ ପାଇଁ ।' ଏହାଥିଲା କଥାକାର ଗୋପୀନାଥଙ୍କର ଅନନ୍ୟ ସାଧାରଣ ଅଭିବ୍ୟକ୍ତି, ଏହି ଉପନ୍ୟାସର ନାୟକ ଚରିତ୍ର ମାଧ୍ୟମରେ ।

ସେହିପରି 'କାନକାମ୍ମା' ହେଉଛି ତାଙ୍କର ଅନ୍ୟ ଏକ କ୍ଷୁଦ୍ର ଉପନ୍ୟାସ । ଏଥିରେ ଏକ ଦଳିତ ମେହନତ କରୁଥିବା ନାରୀର କରୁଣ କାହାଣୀ ବର୍ଣ୍ଣିତ । କାହାଣୀଟିକୁ ପାଠକଲେ ଜଣାଯାଏ ଯେ ଔପନ୍ୟାସିକ ଗୋପୀନାଥ କୌଣସି ଏକ ବାସ୍ତବ ଘଟଣାକୁ ଆଧାର କରି ଏହି ଉପନ୍ୟାସଟି ଲେଖିଛନ୍ତି । ଜୀବନରେ ସଂଗ୍ରାମ କରି କରି ଜୀବନ ଜିଇଁଛି । ସେଥିପାଇଁ ସେ ଶେଷରେ ଅନେକ ଦୁଃଖରେ ବଞ୍ଚିବା ଭିତରେ ଠାକୁରାଣୀଙ୍କୁ ପଚାରିଛି-'କେଉଁଠି ମୋ ତ୍ରୁଟି ? ମନକୁ ମନ ବୁଝାଏ ଯେ ସେ ତା' କର୍ତ୍ତବ୍ୟ କରିଛି । କେହି ତାକୁ ମନ୍ଦ କହିନାହିଁ ।'

ସେହିପରି 'ଅନାମ' ଉପନ୍ୟାସଟି ଆଦିବାସୀ କନ୍ଧ ସମ୍ପ୍ରଦାୟର ଜୀବନଲିପି ଆଧାରିତ । ଏହି ଉପନ୍ୟାସର ନାୟକ ହେଉଛି ବାଘ ବଂଶ କାନ୍‌କଟ କୋଳିଆ ସେଠ୍ । ଜାତିରେ ଡମ, ଭୂମିହୀନ, କୁସୁମଗଡ଼ାର ଅଧିବାସୀ । ଭୋକ ଓପାସରେ କାମଧନ୍ଦା ନ ପାଇ ଦିନ କାଟିଛି । ତେଣୁ କନ୍ଧମାନଙ୍କ ଉଦାରପଣ ଓ ଆତିଥ୍ୟ ପରାୟଣତା ଗୁଣ ଉପରେ ତା'ର ଧାରଣା ଥିବାରୁ ସେ କନ୍ଧ ରାଜ୍ୟ ଯାତ୍ରା କରିଛି ଏବଂ ସେଠାରେ ସେମାନଙ୍କର ସରଳତାର ସୁଯୋଗ ନେଇଛି । ଶୋଷଣ କରିଛି ବିଭିନ୍ନ କ୍ଷେତ୍ରରେ କିପରି କନ୍ଧମାନେ ବିପର୍ଯ୍ୟସ୍ତ ହୋଇଛନ୍ତି, ତା'ର ନିଖୁଣ ଚିତ୍ର ଏହି ଉପନ୍ୟାସ ମାଧ୍ୟମରେ କଥାକାର ଦର୍ଶାଇଛନ୍ତି । ଏଥିରେ କନ୍ଧ ଓ ଡମ ସମାଜର ସଂଘର୍ଷର ଚିତ୍ର ପ୍ରଦାନ କରିଛନ୍ତି ଗୋପୀନାଥ ମହାନ୍ତି ।

ସର୍ବଶେଷରେ ଏତିକି କୁହାଯାଇପାରେ ଯେ ଗୋପୀନାଥ ମହାନ୍ତିଙ୍କ ଉପନ୍ୟାସର କାହାଣୀଗୁଡ଼ିକ ନିଜ ଅନୁଭବରୁ ସୃଷ୍ଟି, ଜୀବନ୍ତ ଏବଂ ଅଙ୍ଗେ ନିଭାଇ ଥିବା ଘଟଣାଗୁଡ଼ିକୁ ଖୁବ୍ ଯତ୍ନର ସହ ଉପନ୍ୟାସମାନଙ୍କରେ ଶବ୍ଦରେ ଶବ୍ଦରେ ସଜାଇଛନ୍ତି । ଯଥାର୍ଥରେ ସେ ଓଡ଼ିଆ କଥା-ସାହିତ୍ୟର ସମ୍ରାଟ୍ ।

ପ୍ଲଟ୍ ନଂ-୧୮୬୮, ଭକ୍ତମଧୁ ନଗର
ଗଣ୍ଡମୁଣ୍ଡା, ଖଣ୍ଡଗିରି, ଭୁବନେଶ୍ୱର-୩୦



# ସବୁଜ ବସୁଧାର ପରିକଳ୍ପନା

ଜୟଶ୍ରୀ ପଟ୍ଟନାୟକ

ଉଦ୍ଭିଦ ବିଜ୍ଞାନୀଙ୍କ ମତରେ ସୃଷ୍ଟିରେ ମଣିଷ ଜୀବନ ସଂଚାର ପୂର୍ବରୁ ବୃକ୍ଷଲତାର ଜନ୍ମ ହୋଇସାରିଥିଲା । ଆଦିମ ମଣିଷର ଯେତେବେଳେ କୌଣସି ଜନବସତି ନ ଥିଲା ଜଙ୍ଗଲରେ ବୁଲୁଥିଲା, ଜଙ୍ଗଲ ଫଳମୂଳ ଖାଇ ବକଳ ପିନ୍ଧି ରହୁଥିଲା । କ୍ରମେ ତା'ର ବୁଦ୍ଧିର ବିକାଶ ଘଟିବା ପରେ ସମତଳ ଭୂଇଁରେ ଗଢ଼ିବସିଲା ଜନବସତି । ଗାଁ, କୃଷିକ୍ଷେତ୍ର, ଜଙ୍ଗଲରୁ ବିଭିନ୍ନ ପ୍ରକାରର ଫଳମୂଳ, କଞ୍ଚାମାଂସ, ପଶୁ ଶିକାର ହେଲା ତା'ର ଜୀବିକା ନିର୍ବାହର ମାର୍ଗ । କୃଷି କ୍ଷେତ୍ରର ଉନ୍ନତି ପରେ ଗୋଟିଏ ଜାଗାରେ ଜଙ୍ଗଲ ସଫା କରି ଜନବସତି ସ୍ଥାପନ କଲା ଏବଂ ସଭ୍ୟତାର ବିକାଶ ହେଲା । ଜଙ୍ଗଲରୁ ତାକୁ କାଠ ବାଉଁଶ, ବନ୍ୟଦ୍ରବ୍ୟ, ଔଷଧ, ମହୁ, ଝୁଣା, ଲାଖ ସବୁ ମିଳିଲା ଯଦ୍ୱାରା ଜଙ୍ଗଲ ତା'ର ନିତିଦିନିଆ ଜୀବନର ସାଥି ହୋଇପାରିଲା । ଜଙ୍ଗଲ ତାକୁ ବଂଚେଇବା ଶିଖାଇଲା । ତା' ସୁଖସୁଃଖରେ ସାଥି ହେଲା । ତେଣୁ ବୃକ୍ଷ ବିନା ସୃଷ୍ଟି ଅସମ୍ଭବ । ବୃକ୍ଷ ପୃଥିବୀର ରକ୍ଷାକବଚ । ପୃଥିବୀକୁ ଶ୍ୟାମଳ ସୁନ୍ଦର ସତେଜ କରି ରଖିବାକୁ ସବୁଜ ବନାନୀର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଜଙ୍ଗଲ ପରିମାଣ ଦିନକୁ ଦିନ ହ୍ରାସ ହେବାରେ ଲାଗିଛି । ଏହି ଜଂଗଲ କ୍ଷୟକୁ ରୋକିବା ପାଇଁ ସରକାରୀ ବେସରକାରୀ ସ୍ତରରେ ବିଭିନ୍ନ ପ୍ରକାର ପଦକ୍ଷେପ ନିଆଯାଇଛି । ସ୍ୱାଧୀନ ଭାରତରେ ଜଙ୍ଗଲ କ୍ଷୟ ରୋକିବା ଲାଗି ୧୯୫୦ ମସିହାରେ ତତ୍କାଳୀନ କେନ୍ଦ୍ରମନ୍ତ୍ରୀ କେ.ଏମ୍ ମୁନ୍‌ସୀ ଭାରତରେ ଆରମ୍ଭ କରିଥିଲେ ବନ ମହୋତ୍ସବ । ଏହି ଉତ୍ସବ ଜୁଲାଇ ମାସର



ପ୍ରଥମ ସପ୍ତାହ ଅର୍ଥାତ୍ ଜୁଲାଇ ୧ ରୁ ୮ ସାରା ଦେଶରେ ପାଳନ କରାଯାଇଥାଏ । ଏହି ସମୟରେ ମୌସୁମୀ ବର୍ଷା ଆରମ୍ଭ ହୋଇଯାଇଥାଏ । ତେଣୁ ଚାରା ରୋପଣ କଲେ ଚାରାଗୁଡିକ ବିନା ଜଳରେ ବଂଚିବାର ସମ୍ଭାବନା ଥାଏ । ଯାହାର ଲକ୍ଷ୍ୟ, ଜନସାଧାରଣଙ୍କୁ ଜଙ୍ଗଲ ସୃଷ୍ଟି କରିବା ପାଇଁ ସଚେତନ କରିବା ସମାଜର ପ୍ରତ୍ୟେକ ସ୍ତରରେ ବୃକ୍ଷରୋପଣ ବାର୍ତ୍ତା ପହଁଚାଇବା । ଏହାଦ୍ୱାରା ବୃକ୍ଷ ଉପକାରିତା ବିଷୟରେ ସ୍କୁଲ, କଲେଜ, ଯୁବକସଂଘ, ସ୍ୱେଚ୍ଛାସେବୀ ଅନୁଷ୍ଠାନ, ସଭା ସମିତି, ଆୟୋଜନ

ଶୋଭାଯାତ୍ରା, ପଥପ୍ରାନ୍ତ ନାଟକମାନ କରାଯାଇଥାଏ । ଯଦ୍ଦ୍ୱାରା ବୃକ୍ଷ ରୋପଣ କରିବା ପାଇଁ ସମାଜର ସବୁ ସ୍ତରରେ ପ୍ରୟାସ ସୃଷ୍ଟି କରାଯାଏ ଏବଂ ବୃକ୍ଷ ରୋପଣ ସହିତ କିପରି ଯତ୍ନ ନେବ ସେ ବିଷୟରେ ଶିକ୍ଷାଲାଭ କରିବା ମଧ୍ୟ ସମ୍ଭବ ହୋଇଥାଏ । ତେଣୁ ଆମେ ଜାଣିବା ଦରକାର ଯେ ଗଛ କେବଳ ଗଛ ନୁହେଁ । କାଠ, ପଟା, ଜାଳେଣି, ଛାଇ, ଔଷଧ ସହିତ ଆମେ ପାଉ ନିର୍ମଳ ପରିବେଶ, ଗଛ ଯୋଗୁଁ ସୁନ୍ଦର ଦିଶେ ସବୁଜ ବନାନୀ, ଗଛ ପାଇଁ ଚାଲେ ଆମର ନିଃଶ୍ୱାସ ପ୍ରଶ୍ୱାସ । ସଂପ୍ରତି ୨୦୧୯ ମସିହା ଶେଷାର୍ଦ୍ଧରୁ ବିଶ୍ୱର ଅଧିକାଂଶ ଦେଶ କରୋନା ମହାମାରୀର ଶିକାର ହୋଇ ମୃତ୍ୟୁମୁଖରେ ପଡ଼ିଲେଣି । କରୋନାର ପ୍ରଥମ ଲହରଠାରୁ ଦ୍ୱିତୀୟ ଲହର ଖୁବ୍ ଭୟାନକ ରୂପ ଧରିଛି । ଯଦ୍ଦ୍ୱାରା ଆକ୍ରାନ୍ତ ମଣିଷଟି ଅମ୍ଳଜାନ ଅଭାବରେ ଛଟପଟ ହୋଇ ମୃତ୍ୟୁମୁଖରେ ପଡୁଛି । ଅମ୍ଳଜାନ ସେମାନଙ୍କର ଜୀବନ ରକ୍ଷାକାରୀ ମହୌଷଧି ପାଲଟିଛି । ଅମ୍ଳଜାନ ଅଭାବରେ ମୃତ୍ୟୁ ସହ ଲଢ଼େଇ କରିବାକୁ ପଡୁଛି ତାକୁ । ବାୟୁ ବିଶୋଧନ ନିମନ୍ତେ ବୃକ୍ଷ ରାତିରେ ଅଙ୍ଗାରକାମ୍ଳ ଗ୍ରହଣ କରି ଦିନରେ ଅମ୍ଳଜାନ ପରିତ୍ୟାଗ କରେ । ଏହା ମଣିଷ ପାଇଁ ହିତକାରୀ । ଏଣୁ ବୃକ୍ଷ ହିଁ ମଣିଷର ପ୍ରକୃତ ବନ୍ଧୁ । ବୃକ୍ଷ ବ୍ୟତିରେକ ଜୀବନ ଅସମ୍ଭବ ।

ଲୋକମାନେ ଏହି କଥା ବୁଝିନପାରି ରହିବା ପାଇଁ, ନିଜର ଜୀବିକା ନିର୍ବାହ ପାଇଁ ଅବାଧରେ ଗଛ କାଟି ଚାଲିଛନ୍ତି । ରହିବା ପାଇଁ ସ୍ଥାନ, ରାସ୍ତା ନିର୍ମାଣ, ବଡ଼ ବଡ଼ ଆପାର୍ଟମେଂଟ, କଳକାରଖାନା, ନୂତନ ସହର ଗଠନ, ନଦୀବନ୍ଧ ଯୋଜନା, କାଠ ବ୍ୟବସାୟୀ , ଆଦିବାସୀମାନେ ପୋଡୁଚାଷ ପାଇଁ ପ୍ରତ୍ୟେକ ବର୍ଷ ଜଙ୍ଗଲ ପଦା ହୋଇଯାଉଛି ଏବଂ ତା' ସ୍ଥାନରେ ନୂତନ ଗଛ ବା ଜଙ୍ଗଲ ସୃଷ୍ଟି ହୋଇପାରୁନି । ଫଳରେ ବନକ୍ଷୟ ଯୋଗୁଁ, ପ୍ରକୃତି ଓ ପରିବେଶ ପ୍ରତି ଭୟଙ୍କର ବିପଦ ମାଡ଼ିଆସୁଛି । ଗ୍ଲାସିଅର ତରଳୁଛି, ସମୁଦ୍ର ପତନ ବୃଦ୍ଧି, ମରୁଡ଼ି, ବାତ୍ୟା, ବନ୍ୟା, ମହାବାତ୍ୟା, ସୁନାମୀ, ସାମୁଦ୍ରିକ ଝଡ଼ ଏବଂ ଏବେ ଜୋର ଧରିଛି ମହାମାରୀ କରୋନା । ପରିବେଶରେ ଅମ୍ଳଜାନର ଅଭାବ ପ୍ରଭୃତି ମନୁଷ୍ୟାକୃତି ବିପଦମାନ ଦେଖାଗଲାଣି । ଜଙ୍ଗଲରେ ନିଆଁ ଲାଗିବା ଫଳରେ ଅରଣ୍ୟ ଜାତୀୟ ବୃକ୍ଷଲତା, ଗୁଳ୍ମ, ଲତା, ଔଷଧିୟ ବୃକ୍ଷ ନଷ୍ଟ ହୋଇ ପରିବେଶର ତାପମାତ୍ରା ବୃଦ୍ଧି କରାଉଛି । ଫଳରେ ଅଂଶୁଘାତ ଓ ଚର୍ମଜାତୀୟ ରୋଗର ଶିକାର ହେଉଛି ମଣିଷ । କେତେବେଳେ ବୃଷ୍ଟି ଅନୁପାତ ଅଧିକ ତ କେତେବେଳେ କମ୍ ହେଉଛି । ଫଳରେ କୃଷିକ୍ଷେତ୍ର ପ୍ରଭାବିତ ହେଉଛି, ଜଳାଭାବ ଲାଗି ରହୁଛି । ବିଭିନ୍ନ ପ୍ରକାର ବୈଜ୍ଞାନିକ ପରୀକ୍ଷଣ ଓ ଦେଶ ଦେଶ ଭିତରେ ଯୁଦ୍ଧ ଲାଗିବା ଫଳରେ ପରିବେଶ ଦୂଷିତ ହେଉଛି । କଳକାରଖାନା, ଗାଡ଼ି ମଟର, ମେଡ଼ିକାଲ ବର୍ଜ୍ୟବସ୍ତୁ ଦ୍ୱାରା ମଧ୍ୟ ପରିବେଶ ଦୂଷିତ ହେବାରେ ଲାଗିଛି । ତେଣୁ ଏସବୁକୁ ଦୃଷ୍ଟିରେ ରଖି, ବୃକ୍ଷରୋପଣର ଆବଶ୍ୟକତା ଦୃଷ୍ଟିରୁ ସର୍ବସାଧାରଣଙ୍କୁ ସଚେତନ କରିବା ଲାଗି ପ୍ରତିବର୍ଷ ଜୁଲାଇ ମାସରେ ଏକ ସପ୍ତାହ ବ୍ୟାପି ପାଳିତ ହେଉଛି ବନ ମହୋତ୍ସବ । ଏହି କାର୍ଯ୍ୟକ୍ରମରେ ସ୍କୁଲ, କଲେଜ, ସ୍ୱେଚ୍ଛାସେବୀ ଅନୁଷ୍ଠାନମାନେ ରାସ୍ତାଘାଟ, ଖୋଲାପଡ଼ିଆ, ସ୍କୁଲହତା ଭିତରେ, ଅଫିସ, କ୍ଲବ, ମହାବିଦ୍ୟାଳୟ, ବିଶ୍ୱବିଦ୍ୟାଳୟ କ୍ୟାମ୍ପସମାନଙ୍କରେ ବୃକ୍ଷ ଚାରା ରୋପଣ କରି ତା'ର ଆବଶ୍ୟକୀୟ ଯତ୍ନ ନେଉଛନ୍ତି । ଯେହେତୁ ଜୁଲାଇ ମାସ ମୌସୁମୀ ବର୍ଷାର ଆଗମନର ସମୟ ଏବଂ ଏହି ସମୟରେ ବୃକ୍ଷ ରୋପଣ କଲେ ଗଛ ଆପଣା ଛାଏଁ ବଢ଼ିଥାଏ । ଏଥିପାଇଁ ଚାରାଗଛମାନ ବନ୍ୟଖଣ୍ଡ ଅଧିକାରୀଙ୍କ ଅଫିସରୁ କିମ୍ବା ସରକାରୀ ନର୍ସରୀମାନଙ୍କରେ ସରକାରଙ୍କ ତରଫରୁ ମାଗଣାରେ ମିଳେ ନଚେତ କିଣିବାକୁ ପଡ଼େ ।

ତେଣୁ ଆସନ୍ତୁ, 'ପିଲାଟିଏକୁ ଗଛଟିଏ', ଏହି ଉକ୍ତିକୁ ମନେରଖି ବନ୍ୟା ବାତ୍ୟା, ମରୁଡ଼ି ଅଂଶୁଘାତ ସର୍ବୋପରି କରୋନା ମହାମାରୀରୁ ଦେଶକୁ ରକ୍ଷା କରିବା । ବର୍ଷସାରା ପାଳନ କରୁଥିବା ପର୍ବପର୍ବାଣିର ସହିତ ଏହି ସାମାଜିକ ବନ ମହୋତ୍ସବ ସପ୍ତାହକୁ ଶ୍ରଦ୍ଧାର ସହିତ ପାଳନ କରି ପୃଥିବୀକୁ ସବୁଜ ଧରାରେ ପରିଣତ କରିବା ସମସ୍ତଙ୍କର ଲକ୍ଷ୍ୟ ହେଉ । ଖାଲି ବୃକ୍ଷରୋପଣ କରି ଫଟୋ ଉଠାଇ କାମ ଶେଷ କରିଦେଲେ କିଛି ଲାଭ ହେବ ନାହିଁ । ଏଥିପାଇଁ ନିଜ କର୍ତ୍ତବ୍ୟକୁ ଶ୍ରଦ୍ଧାର ସହିତ ପାଳନ କରିବା ଉଚିତ ।

ପୋତିଥିବା ଗଛର ରକ୍ଷଣାବେକ୍ଷଣ କରିବା ଦିଗରେ ଯତ୍ନଶୀଳ ହେବା ଦରକାର । ପ୍ରତ୍ୟେକ ନିଜର ଜନ୍ମଦିନ, ବନ୍ଧୁତା ଦିବସରେ, ବିବାହ ଦିନ ବା ବିବାହ ବାର୍ଷିକୀରେ ଏହି ସପ୍ତାହକୁ ମନେ ରଖିବା ପାଇଁ ଗଛଟିଏ ଲଗାନ୍ତୁ । ଏ ପ୍ରକୃତି, ଏ ପୃଥିବୀ ଆମକୁ କେତେକଣ ଦେଇଛି ତା'ର ପଟାନ୍ତର ନାହିଁ । ବାସ୍, ଆମେ ଗଛଟିଏ ପୋତି ଶ୍ୟାମଳ, ସୁନ୍ଦର, ସତେଜ ପୃଥିବୀଟିଏ ଗଢ଼ିବାରେ କେବଳ କର୍ତ୍ତବ୍ୟଟିଏ ସମ୍ପାଦନ କରିବା ଉଚିତ । ନଚେତ ଏ ପୃଥିବୀ ଲୋପ ପାଇଗଲେ ଦିନେ ଜୀବଜଗତ ବି ଲୋପ ପାଇଯିବ ଏହା ଭାବିବା ଏବେଠାରୁ ଦରକାର । ପରିବେଶ ସୁନ୍ଦର ରହିଲେ ସୁସ୍ଥ ରହିବେ ଆଗାମୀ ପିଢ଼ି । ଶରୀର ସୁସ୍ଥ ରହିଲେ ଦେଶର ଉନ୍ନତି କରିପାରିବାରେ ସକ୍ଷମ ହେବେ । ସମାଜ ଅଧିକ ସମୃଦ୍ଧ ହୋଇପାରିବ । ପ୍ରକୃତି ହେଉଛି ଶୋଭାର ଗନ୍ତାଘର । ନଦୀକୂଳରେ ବୃକ୍ଷରାଜି, ସବୁଜ ତରୁଲତା ଆଚ୍ଛାଦିତ ପର୍ବତ କନ୍ଦରରୁ ବହି ଆସିଥିବା ଝରଣା, ବୃକ୍ଷମାନଙ୍କର ଶୀତଳ ଛାଇ, ପରାଗସଙ୍ଗମରେ ସହାୟକ ହେଉଥିବା ପଶୁପକ୍ଷୀ, ପ୍ରଭାତର ଶାନ୍ତ ପରିବେଶକୁ କୋଳାହଳମୟ କରି ରଖୁଥିବା ପଶୁ ପକ୍ଷୀ, ସୁଜଳା ସୁଫଳା ଶସ୍ୟ ଶ୍ୟାମଳା ମାତୃଭୂମି, କାଠ, ଜାଳେଣି, ଘରର ସୌଖୀନ ଆସବାବପତ୍ର , ଔଷଧ ଓ ନାନା ଜାତିର ଫଳ ଫୁଲରେ ଭରା । ଅନେକ ରମଣୀୟ ସ୍ଥାନ ଗଢ଼ିଉଠିଛି ବୃକ୍ଷରାଜିର ପରିବେଷ୍ଟନୀରେ । ଆମ ମନୋରଂଜନର ଖୋରାକ ଯୋଗାଏ ପର୍ଯ୍ୟଟନ ସ୍ଥଳୀ କେବଳ ପ୍ରକୃତି ଯୋଗୁଁ । ଆସନ୍ତୁ, ସେହି ପରିବେଶକୁ ସ୍ୱଚ୍ଛ, ନିର୍ମଳ, ପ୍ରଦୂଷଣମୁକ୍ତ କରିବା ବୃକ୍ଷଟିଏ ରୋପଣ କରି ।

ଗଙ୍ଗାନଗର, ଭୁବନେଶ୍ୱର

# ଶିଶୁ ଦିବସ

**ଶକୁନ୍ତଳା ମହାପାତ୍ର**

ବିଦ୍ୟାଳୟ ପ୍ରାଙ୍ଗଣରେ କୁନି କୁନି କଳିକା
ହସ ତୁମ ମିଠା ମିଠା କଥା ଭଳି ଭଳିକା
ଛନ୍ଦ କି କପଟ ଟିକେ ନାହିଁ ତୁମ ଅନ୍ତରେ
ନିରିମଳ ମନ ତୁମ ଅନାସକ୍ତ ସଂସାରରେ ।
ତୁମେ ଯେ କୁସୁମ କଳି ମାଳୀ ତୁମ ଶିକ୍ଷକ
ବଡ ହୋଇ ହେବ ଦିନେ ସମାଜର ରକ୍ଷକ
ମନୁ ତ ପୋଛି ଦେବ ତୁମେ ଯେତେ କୁସଂସ୍କାର
ଦୁଃଖୀ ରଙ୍କୀ ସେବା କରି ହସାଇବ ସଂସାର ।
ଗଢିବ ଏ ଦୁନିଆକୁ କରି ତୁମେ ସୁନ୍ଦର
ଏକତ୍ରି କରି ଗଢିବ ମସଜିଦ୍ ଗୀର୍ଜା ମନ୍ଦିର
ଏକ ଧର୍ମ ଏକ ଭାବନାକୁ ନେଇ ଚଳିବ
ଶାନ୍ତି ମୈତ୍ରୀ ସମାନତା ପ୍ରତିଷ୍ଠା ଯେ କରିବ ।
ସ୍ୱର୍ଗ ପାରିଜାତ ପରି ଶୁଭ୍ର ପୁଣି ସୁଗନ୍ଧ
ସୁବାସ ବିତରି ଯିବ ମନେ ଭରି ପୁଲକ
ମିଠା ମିଠା କଥା କହି ଜନ ମନ ତୋଷିବ
ସବୁ ଠାରେ ପ୍ରଶଂସାର ପାତ୍ର ପରା ହୋଇବ ।
ପ୍ରଥମ ପ୍ରଧାନମନ୍ତ୍ରୀ ନବ ଭାରତର
ଜ୍ଞାନୀ ଗୁଣୀ ଅଟନ୍ତି ସେ ନାମ ଜବାହର
ତାଙ୍କ ଜନ୍ମ ଦିନ ଶିଶୁ ଦିବସ ରୂପରେ
ପାଳୁଛେ ପ୍ରତି ବରଷ ଅତି ଆଦରରେ ।
ମାନୁଥିବ ତୁମେ ତାଙ୍କ ଯେତେ ନୀତି ଆଦର୍ଶ
ତାଙ୍କରି ସ୍ମୃତିରେ ପାଳୁଥିବା ଶିଶୁ ଦିବସ
ସ୍ୱପ୍ନକୁ ସାକାର କରି ଗଢି ସୁନା ଭାରତ
ବିଭୁ କୃପା ଲଭି ସଦା ମନେ ହେବା ହରଷ ।

ଡିଏଭି ପବ୍ଲିକ୍ ସ୍କୁଲ
ୟୁନିଟ୍–୮, ଭୁବନେଶ୍ୱର
ପିନ୍–୭୫୧୦୧୨

# ନୌବାଣିଜ୍ୟର ସ୍ମୃତି 'ଯୋବ୍ରାଖୁଣ୍ଟି' ଓ ଜାହାଜ ମରାମତି କାରଖାନା

କାଞ୍ଚନାରାୟଣ ମହାନ୍ତି

ସହର ଉପକଣ୍ଠରେ ଯୋବ୍ରା ମହାନଦୀ କୂଳର ଗଛପତ୍ର ଘେରା ଗୋଟିଏ ଛୋଟ ଗ୍ରାମ ଥିଲା । ଏଠାରେ ଥିଲା ଗୋଟିଏ ଆନିକଟ୍ । ଆନିକଟ୍‌ରେ ଥିଲା ଗୋଟିଏ କାରଖାନା । ଯାହାର ଦାୟିତ୍ୱରେ ଥିଲେ ଜର୍ଜ ଫକ୍‌ନର୍ । ସେ ଜଣେ ବିଚିତ୍ର ମଣିଷ । ଶାସନର ନୀତି ନିୟମର ସେ ଥିଲେ ଊର୍ଦ୍ଧ୍ୱରେ । ଯେହେତୁ ସେ ଜଣେ ସଚ୍ଚା, କର୍ମଠ ବ୍ୟକ୍ତି ଥିଲେ, ତେଣୁ ତାଙ୍କ ଶାସନ ସହ୍ୟ କରୁଥିଲା । ଯୋବ୍ରାଖୁଣ୍ଟି ଅବସ୍ଥିତ ସ୍ଥାନଟିରେ ୱାର୍କସପ୍ ନିର୍ମାଣ କରିବା ପାଇଁ ଜନ୍ ବିମ୍‌ସ ଯେଉଁ ଚିନ୍ତା କରିଥିଲେ, ତାହାର ସଫଳ ରୂପକାର ଥିଲେ ଜର୍ଜ ଫକ୍‌ନର । ୧.୧.୧୮୬୯ ମସିହାରେ ଏହାର ଶିଳାନ୍ୟାସ ନିଜେ ଫକ୍‌ନର କରିଥିଲେ ।

୧୮୭୭ ମସିହାର ଶେଷ ଭାଗରେ, ଲେଫ୍‌ଟନାଣ୍ଟ ଗଭର୍ଣ୍ଣର ସାର୍ ରିଚାର୍ଡ଼ ଟେମ୍ପଲ୍ କଟକ ପରିଦର୍ଶନରେ ଆସିଥିଲେ । ତାଙ୍କୁ ସ୍ୱାଗତ ଜଣେଇବା ପାଇଁ କଟକ ସହର ଅପୂର୍ବ ସାଜସଜ୍ଜାରେ ବିମଣ୍ଡିତ ହୋଇଥିଲା । ଯୋବ୍ରାଠାରୁ ଲାଲବାଗ୍ କୋଠି ପର୍ଯ୍ୟନ୍ତ ଗଛପତ୍ର ପୁଷ୍ପ ମଣ୍ଡିତ ତୋରଣ ଦ୍ୱାରା ସୁଶୋଭିତ ହୋଇଥିଲା । ରାତିରେ ଦୀପମାଳାରେ ଆଲୋକିତ କଟକ ଏକ ପୌରାଣିକ ନଗରୀର ପ୍ରତ୍ୟୟ ସୃଷ୍ଟି କରୁଥିଲା । ସତର ଗଡ଼ଜାତ ଶାସକ, ସେମାନଙ୍କ ସହାୟକ, କଟକର ମାନ୍ୟଗଣ୍ୟ ବ୍ୟକ୍ତିମାନଙ୍କୁ ନେଇ ଏକ ବିରାଟ ଦରବାର ବସିଥିଲା ।

ଯୋବ୍ରା ଉପରେ ଅନ୍ୟ ଏକ ଘଟଣା ଥିଲା ଦାରୁଣ ହୃଦୟ ବିଦାରକ ।

୧୮୭୬ ମସିହାର କଥା । କେନ୍ଦ୍ରାପଡ଼ାର ସିଭିଲିଆନ୍ ଯୁବକ ଆଟକିନ୍‌ସନ୍ ଘୋଡ଼ାରେ ଚଢ଼ି ସରକାରୀ କାମରେ କଟକ ଆସୁଥିଲେ ।

ଜଗତପୁରଠାରୁ ମହାନଦୀ ଘାଟରେ ଗଡ଼ି ଆସି ବାଲିପଠାରେ ଚାଲିଚାଲି ପାଣିକୂଳ ପର୍ଯ୍ୟନ୍ତ ଆସିବାକୁ ପଡୁଥିଲା । ଯୋବ୍ରା ପାଖରେ ଥିବା କମ୍ ପାଣିରେ ପଶି ପାର ହେବାକୁ ପଡୁଥିଲା । ଯୋବ୍ରା ଥିଲା ଘାଟ । କଟକର ପ୍ରବେଶ ପଥ । ଯୋବ୍ରାରେ ରହୁଥିଲେ ଆଟକିନ୍‌ସନ୍‌ଙ୍କର ପ୍ରେୟସୀ । ରୂପସୀ ପ୍ରେୟସୀଙ୍କୁ ଅନ୍ତରଙ୍ଗ ସାକ୍ଷାତ୍ ପାଇଁ ଯୁବ ଇଂରେଜ ଅଫିସର ଏକ ପ୍ରକାର ମତୁଆଲା ହୋଇଯାଇଥିଲେ । କେତେ ଶୀଘ୍ର ତାଙ୍କୁ ଭେଟି ପାରିବେ ତେଣୁ ଘୋଡ଼ା ଝପଟାଇ ଅତି ବ୍ୟଗ୍ର ଭାବରେ ଆସୁଥିଲେ । ଯୋବ୍ରାଘାଟ ପାଖରେ ପାଣି ଭିତରେ ପଶି କଟକ ପାଖ ବନ୍ଧକୁ ଉଠିବା କଥା । ସେ ଭୁଲ ବଶତଃ ଗଣ୍ଡ ଭିତରକୁ ପଶିଗଲେ । ଘୋଡ଼ା ତାଙ୍କୁ ଛାଡ଼ି କୂଳକୁ ଚାଲିଆସିଲା । ଶୂନ୍ୟ ଘୋଡ଼ାକୁ ଦେଖି ଇଂରେଜ ଅଧିକାରୀ ଆଟ୍‌କିନ୍‌ସନ୍‌ଙ୍କୁ ଖୋଜା ଚାଲିଲା । ସେତେବେଳକୁ ତାଙ୍କ ଅନ୍ଧ ଆବେଗର ପ୍ରେମ ସମାଧି ମହାନଦୀର ନୀଳ ସଲିଳରେ ରଚିତ ହୋଇସାରିଥିଲା ।

ବନ୍ଧ କଡ଼ରୁ ବହୁ ଲୋକ ଘାସ କାଟୁଥିଲେ । ସେମାନଙ୍କୁ ପଚାରିଲେ ଉତ୍ତର ଥିଲା ହଁ ସାହେବ ଘୋଡ଼ାରେ ଚଢ଼ି ଆସୁଥିଲା । ପାଣିରେ ଆସୁ ଆସୁ ଭୁଲରେ ଗଣ୍ଡ ଭିତରକୁ ପଶିଗଲା । ବିଚରା ଘୋଡ଼ା ପିଠିରୁ ପଡ଼ିଗଲା ।

ଘୋଡ଼ା ପହଁରି ଛୁ । ସାଇବ ଆଉ କୋଉଠି ଥିବ । ଆମେ ତ ଛାର ଘାସ କଟାଳି । ଭାଗ୍ୟ ଆମର ଛୋଟ । ଆମ ଦୁଃଖ କିଏ ବୁଝୁଛି !

ଶେଷକୁ ଏତିକି ପ୍ରମାଣିତ ହୋଇଥିଲା ଯେ ଘୋଡ଼ା ଶାସକମାନେ ଏ ଦେଶରୁ ଚାଲିଯାଆନ୍ତୁ । ଆଖି ଆଗରେ ଭାସି ଯାଉଥିଲେ ବି ସାଧାରଣ ଜନତାଙ୍କର ସେମାନଙ୍କ ପ୍ରତି ଦୟା ଟିକିଏ ନ ଥିଲା ।

କୃଷ୍ଣଚନ୍ଦ୍ର ମହାପାତ୍ର 'କଟକେ ଅନାଅ ଛଟକେ' ନିବନ୍ଧରେ ଲେଖିଛନ୍ତି- ମହାନଦୀ ଘାଟମାନଙ୍କରୁ 'ଧୂଆଁକଳ-ଜାହାଜ'ରେ ତାଳଦଣ୍ଡା କେନାଲ ଅର୍ଥାତ୍ ଯୋବ୍ରା ଜିନିଷ ଆସୁଥିଲା । ନୌକାରେ ବାହାରୁ ଜିନିଷ ଆମଦାନି ହୋଇ କେନାଲ ବାଟେ ଯୋବ୍ରାକୁ ଆସୁଥିଲା । ଆମଦାନିର ଲାଭ ଭୋଜପୁରୀ ଓ ମାରୱାଡ଼ିଙ୍କର । ରପ୍ତାନିର ଲାଭ ଇଂରେଜ ଓ ତେଲେଙ୍ଗା ମହାଜନମାନଙ୍କର ଥିଲା । କଲିକତାରୁ ପ୍ରାୟ ବାଣିଜ୍ୟ ଜିନିଷ ଆସୁଥିବା ଆମଦାନି ବିପଣୀଗୁଡ଼ିକ ଭିତରେ ବିଲାତି ଲୁଗା, ଗୁଆ ମସଲା, ତମ୍ବା, ଚାଉଳ, ରାଶି, କାଠ ଏବଂ ଏମିତି ଅନେକ ଅତ୍ୟାବଶ୍ୟକ ଦ୍ରବ୍ୟ ।

ସେ କଟକର ମହୋତ୍ସବ ବିଷୟରେ ଲେଖିଛନ୍ତି- ଆଜିକାଲି ପରି ସେତେବେଳେ ଦୁର୍ଗାପୂଜା, ହୋଲି, ଦିୱାଲି ସାର୍ବଜନୀନ ଉତ୍ସବ ଥିଲା କିନ୍ତୁ ବାଲିଯାତ୍ରା ମୁଖ୍ୟ ଥିଲା । ବାଲିଯାତ୍ରାରେ କୀର୍ତ୍ତନ, ଭଜନ, ନାଟକ, ସଭାସମିତି, ଆଲୋଚନା ସହ ବଜାର ବସୁଥିଲା ।

ସେକାଳ ଓ ଏକାଳର ବାଲିଯାତ୍ରା ମଧ୍ୟରେ ବହୁତ ଫରକ୍ । ସେତେବେଳେ ହାଣ୍ଡି ମାଠିଆ, ଝାଡୁ, ବିଞ୍ଚଣା, କାଠ, ବେତବୁଣା, ଘରକରଣା, ମନୋହରୀ ଆଉ କିଛି ଖାଇବା ଦୋକାନ ବସୁ ଥିଲା । ଏବେ ଆନ୍ତଃରାଜ୍ୟର ବିପଣୀରେ ଭରି ଯାଉଛି କୋଡ଼ିଏ ଏକରରୁ ଅଧିକ ଯାତ୍ରାସ୍ଥଳ । ବୈଷ୍ଣବ ପାଣି ମଣ୍ଡପରେ ନିତି ଚାଲେ ଆନ୍ତଃରାଜ୍ୟ ନୃତ୍ୟ ସଂଗୀତ ନାଟକର କାର୍ଯ୍ୟକ୍ରମ । ଠୁଙ୍କାପୁରୀ, ଦହିବରା, ଆଇସ୍କ୍ରୀମ୍, ଗୁପ୍‌ଚୁପ୍, ଚାଟ୍, ଆଇଁଷ ଚପ୍, ଲଙ୍କାଚପ୍, ମଥୁରା କେକ୍, ଶିଳଚକି, ଝାଡୁ, ଆଚାର, ପାନଠାରୁ ବଡ଼ବଡ଼ ଇଲେକ୍ଟ୍ରୋନିକ୍ସ କମ୍ପାନିର ଅଫର ସହ ସର୍ବାଧିକ ବିକ୍ରିର କ୍ଷେତ୍ର ପାଲଟିଯାଏ ।

କଟକର ମାନଚିତ୍ରରେ ବାରବାଟୀ ଦୁର୍ଗ, ବାଇମୁଣ୍ଡି ପଥରବନ୍ଧ, ବାଲିଯାତ୍ରା, ବାଣିଜ୍ୟ ବ୍ୟବସାୟର କେନ୍ଦ୍ର ଯୋବ୍ରାର ନୌବାଣିଜ୍ୟିକ ସମୃଦ୍ଧିର ପେଣ୍ଠ ଯୋବ୍ରା ଖୁଣ୍ଟି ପ୍ରାଚୀନ ଉତ୍କଳର ମୂକସାକ୍ଷୀ ସଦୃଶ ଓଡ଼ିଆ ଜାତିର ମହତ୍ତ୍ୱକୁ ପ୍ରତିପାଦିତ କରୁଅଛି । ଅତୀତର ସ୍ୱର୍ଣ୍ଣମୟ ସ୍ମୃତିକୁ ଉଜ୍ଜୀବିତ ରଖିବା ପାଇଁ ବାଲିଯାତ୍ରା ଏକ ବୀର ଜାତିର ସାଂସ୍କୃତିକ ମହାନତାର ଅମ୍ଳାନ କୀର୍ତ୍ତି । ମହାନଦୀର ତୀରେ ତୀରେ ଥିଲା ଅନେକ ବନ୍ଦର, ପୋତାଶ୍ରୟ । ଅତୀତର ନୌବାଣିଜ୍ୟ, ପ୍ରାଚୀ, ମହାନଦୀ, ବୈତରଣୀ, ସୁବର୍ଣ୍ଣରେଖା ଇତ୍ୟାଦି ନଦୀର ଜଳପଥ ଦେଇ ସମୁଦ୍ରର ପରପାରେ ଥିବା ଦେଶମାନଙ୍କ ସହିତ ବ୍ୟବସାୟିକ, ସାମାଜିକ ଓ ଧାର୍ମିକ ସଂପର୍କ ସ୍ଥାପନ ଓ ବିନିମୟର ପ୍ରକୃଷ୍ଟ ମାଧ୍ୟମ ଥିଲା ।

ଆନ୍ତଃଜିଲ୍ଲା, ଯେପରି ସମ୍ବଲପୁର, ବାଲେଶ୍ୱରରୁ କଟକ ମାଲଗୋଦାମକୁ ଚାଉଳ ଏବଂ ଅନ୍ୟାନ୍ୟ ଶସ୍ୟ ବାରବାଟୀର ଗଡ଼ଖାଇ ପାର୍ଶ୍ୱ ଗଡ଼ଗଡ଼ିଆ ଘାଟ ଏବଂ ଯୋବ୍ରା ଆନିକଟ ନିକଟକୁ ପରିବହନ କରାଯାଉଥିଲା । ସେହିପରି ଆନ୍ତଃରାଜ୍ୟ ସହ ଜଳପଥରେ ଯୋଗାଯୋଗ ଦ୍ୱାରା ସାଗରପାରି ଦେଶମାନଙ୍କ ସହିତ ଉତ୍କଳର ନୌବାଣିଜ୍ୟ ପରଂପରା ସମୃଦ୍ଧ ଥିଲା ।

ଇଂରେଜ ସମୟରେ ବଙ୍ଗ, ବିହାର ଓ ଓଡ଼ିଶା ମିଶି ଯେଉଁ ବିଶାଳ ଭୂଖଣ୍ଡ ଥିଲା, ତାହାର ପ୍ରମୁଖ ବାଣିଜ୍ୟିକ କ୍ଷେତ୍ର ଥିଲା କଟକର ଯୋବ୍ରା । ଏଇଠି ଲାଗୁଥିଲା ପାଣି ଜାହାଜ, ବଡ଼ ବଡ଼ ନାହା । ଶହ ଶହ କ୍ୱିଣ୍ଟାଲ୍ ଓଜନର ବିଭିନ୍ନ ସାମଗ୍ରୀ କାତ ଆହୁଲା ସାହାଯ୍ୟରେ ପରିବହନ କରାଯାଉଥିଲା । କ୍ରମେ ଛୋଟ ଏବଂ ବଡ଼ ଯନ୍ତ୍ରଚାଳିତ ତରୀ ଯୋବ୍ରାର ମହାନଦୀ ନଦୀତଟକୁ ମୁଖରିତ କଲା । ଆମଦାନି ରପ୍ତାନି ପାଇଁ ଏହା ଥିଲା ପ୍ରଶସ୍ତ କ୍ଷେତ୍ର । ବହୁ ସଂଖ୍ୟକ ବାଣିଜ୍ୟ ପୋତ, ପାଲଟଣା ନାହା, ବୋଇତ ଏଇଠି ଲାଗୁଥିଲା । ସେଗୁଡ଼ିକର ଆବଶ୍ୟକ ମରାମତି

ପାଇଁ ଉପକରଣ ନିର୍ମାଣ ସହିତ ଜଳସେଚନ ପାଇଁ ଆବଶ୍ୟକ ଯନ୍ତ୍ରପାତି ଏଠାରେ ନିର୍ମାଣ କରାଯାଉଥିଲା । ଯୋବ୍ରା ବହୁବର୍ଷ ପର୍ଯ୍ୟନ୍ତ ନଦୀ ଆରପାଖର ଚୌଦ୍ୱାରକୁ ଯିବା ପାଇଁ ଲଞ୍ଚ୍ ଘାଟ ଥିଲା । ମହାନଦୀରେ ପୋଲ ନିର୍ମାଣ ପୂର୍ବରୁ ଯୋବ୍ରା ଘାଟରୁ ପାରି ହେଲେ ଯାତ୍ରୀମାନେ କଲିକତା, ରାଞ୍ଚି, ଟାଟା ଅବା ଉତ୍ତର ଭାରତ ଯାତ୍ରା କରୁଥିଲେ ।

୧୫୬୮ ଖ୍ରୀଷ୍ଟାବ୍ଦର କଥା । ଓଡ଼ିଶାର ସ୍ୱାଧୀନତା ବିପନ୍ନ ହେଲା । ଓଡ଼ିଶାର ଗଜପତି ଶାସନ ଷଡଯନ୍ତ୍ରରେ ଦୋହଲି ଗଲା । ଶ୍ରୀଜଗନ୍ନାଥଙ୍କ ଚେତନାକୁ ଧ୍ୱଂସ କରିବା ପାଇଁ ଶତ୍ରୁ ପକ୍ଷ ଘନ ଘନ ଆକ୍ରମଣ କଲେ । ଓଡ଼ିଆ ଜାତି ହେଲା ଅସହାୟ । ଆଫଗାନ, ମୁସଲମାନ, ମରହଟ୍ଟା, ଇଂରେଜ ଶାସନରେ ଓଡ଼ିଆ ଜାତି ଶୋଷିତ, ଲୁଣ୍ଠିତ ହେଲା । ଅବଶେଷରେ ଏହାର ସମୃଦ୍ଧ ନୌବାଣିଜ୍ୟ ପରଂପରାରେ ଏଭଳି ପ୍ରଭାବ ପଡ଼ିଲା । ଫଳରେ ଊନବିଂଶ ଶତାବ୍ଦୀର ମଧ୍ୟଭାଗ ବେଳକୁ ଆଉ ନଦୀ, ସାଗର ତଟରେ ଭେଳାଭେଳା ଜାହାଜ ଆଉ ସୁବର୍ଣ୍ଣଭରା ପାଲଟଣା ବୋଇତ ରପ୍ତାନି ପାଇଁ କୁଡ଼କୁଡ଼ ପଣ୍ୟଦ୍ରବ୍ୟ ଦେଖିବାକୁ ମିଳିଲା ନାହିଁ ।

ବ୍ୟାସକବି ଫକୀରମୋହନ ସେନାପତି ତାଙ୍କ ଆତ୍ମଜୀବନୀରେ ନୌବାଣିଜ୍ୟର ବିପର୍ଯ୍ୟୟ ସଂପର୍କରେ ଲେଖିଛନ୍ତି । କମଳା ପ୍ରସାଦ ଗୋରାପ ଏବଂ କାଳିକା ପ୍ରସାଦ ଗୋରାପ ମଧ୍ୟ ତାଙ୍କର ଗଳ୍ପରେ ନୌବାଣିଜ୍ୟର ସମୃଦ୍ଧି ଏବଂ ବିଲୟ ତଥା ଉଲ୍ଲେଖ କରିଛନ୍ତି । ଶରତଚନ୍ଦ୍ର ତାଙ୍କର ଉପନ୍ୟାସରେ ନୌବାଣିଜ୍ୟର ବ୍ୟାପକ ଦିଗ ବର୍ଣ୍ଣନା କରିଛନ୍ତି ।

ଚାଣକ୍ୟ ମଧ୍ୟ 'ଅର୍ଥଶାସ୍ତ୍ର'ରେ ବୋଇତ ନିର୍ମାଣ, ବୋଇତ ଯାତ୍ରା, ଏହି ବାଣିଜ୍ୟ ଯାତ୍ରାର କାଳ ଏହାର କର୍ମଚାରୀମାନଙ୍କର ଜ୍ଞାନ, ଦକ୍ଷତା, ସାହସ ସଂପର୍କରେ ବର୍ଣ୍ଣନା କରିଛନ୍ତି । ମଗଧ ରାଜ୍ୟର ଅବସ୍ଥିତି ସମୁଦ୍ରତଟରେ ନାହିଁ ଏବଂ ଏହାର ନୌବାଣିଜ୍ୟ ମଧ୍ୟ ନ ଥିଲା । ତେଣୁ କଳିଙ୍ଗର ନୌବାଣିଜ୍ୟ ସାଗର ପାରି ଦେଶମାନଙ୍କ ସହିତ ସଂପର୍କିତ ଥିଲା ।

ଚୀନ୍ ସମ୍ରାଟ 'ତୋ-ସୁଙ୍ଗ'ଙ୍କ ନିକଟକୁ ଉତ୍କଳର ଭୌମ ବଂଶର ରାଜା ଶୁଭଙ୍କର ଦେବ ପୁଷ୍ପଗିରି ବିହାରର ମହାପଣ୍ଡିତ ପ୍ରାଜ୍ଞଙ୍କ ହାତରେ ଗଣ୍ଡବ୍ୟୁହ ପୋଥି ବୋଇତ ଦ୍ୱାରା ପଠାଇଥିବା କଥା ଇତିହାସରେ ରହିଛି ।

କଟକର ବାଲିଯାତ୍ରା କାର୍ତ୍ତିକ ପୂର୍ଣ୍ଣିମାଠାରୁ ଆରମ୍ଭ ହୋଇଥାଏ । ନୌବାଣିଜ୍ୟ ଯାତ୍ରା ପାଇଁ ଅନୁକୂଳ ଜଳବାୟୁର ସ୍ୱାଭାବିକ ସମୟ ଏଇ କାର୍ତ୍ତିକ ଶୁକ୍ଳପକ୍ଷରେ ସୌଦାଗରମାନେ ଯୋବ୍ରାଠାରୁ ଗଡ଼ଗଡ଼ିଆ ଘାଟଯାଏଁ ଲମ୍ବିଥିବା ବୋଇତରେ ବିଦେଶକୁ ଯାତ୍ରା ଆରମ୍ଭ କରିଥାନ୍ତି । ଯୋବ୍ରା ଥିଲା ମହାନଦୀର ପ୍ରମୁଖ ପୋତାଶ୍ରୟ । ଯୋବ୍ରା ବନ୍ଦର ସହିତ ପୁରୀର ଅସ୍ତରଙ୍ଗ, ପିପିଲି, ଭଦ୍ରକର ଚୂଡ଼ାମଣି, ଧାମରା, ଚାନ୍ଦବାଲି, ବାଲେଶ୍ୱର, ଚେଳିତୋଳ, କୋଣାରକ ଇତ୍ୟାଦି ସହ ସଂଯୋଗ ରହିଥିଲା । ୧୮୮୨ ମସିହାରେ ବ୍ରିଟିଶ ଶାସନାଧୀନ ଓଡ଼ିଶାରେ ଗମନାଗମନ ପାଇଁ ରାସ୍ତାଘାଟର ଯଥେଷ୍ଟ ଉନ୍ନତି ସମ୍ଭବ ହୋଇ ନ ଥିଲା । ଜଳପଥରୁ ମୁଖ୍ୟତଃ ପରିବହନ ଏବଂ ଯାତାୟାତର ମାଧ୍ୟମ ଭାବେ ଗ୍ରହଣ କରାଯାଇଥିଲା ।

କଟକର କଲେକ୍ଟର ଥିଲେ ଜନ୍ ବୀମସ୍ । ଜନ୍ ବୀମସ୍ ଜଳସେଚନ ଦ୍ୱାରା ଅର୍ଥନୈତିକ ତଥା ସାମାଜିକ ଉନ୍ନତି ପାଇଁ ଚିନ୍ତା କରିଥିଲେ । ମହାନଦୀର ଜଳକୁ ଯୋବ୍ରାଠାରେ ଆନିକଟ୍ ନିର୍ମାଣ ଦ୍ୱାରା ଅବରୋଧ କରି ତାଳଦଣ୍ଡା କେନାଲ ମାଧ୍ୟମରେ କୃଷିର ବ୍ୟାପକ ଉନ୍ନତି ପାଇଁ ମାଛଗାଁ, କେନ୍ଦ୍ରାପଡ଼ା ଇତ୍ୟାଦି ଅଞ୍ଚଳକୁ କୃଷି ଉତ୍ପାଦନରେ ସମୃଦ୍ଧ କରିଥିଲେ ।

ଜନ ବୀମସ୍, ଲଣ୍ଡନ ମାଞ୍ଚେଷ୍ଟର ୟୁନିଭରସିଟିରୁ ଶିକ୍ଷା ସମାପ୍ତ କରିସାରିଥିବା ବ୍ରିଟିଶ ଇଂଜିନିୟର ଜର୍ଜ ଫକ୍‌ନର୍‌ଙ୍କୁ ମୁଖ୍ୟ କାର୍ଯ୍ୟନିର୍ବାହୀ ଯନ୍ତ୍ରୀ ଭାବେ ନିଯୁକ୍ତି ଦେଇଥିଲେ । ଯୋବ୍ରା ୱାର୍କସପ୍‌ରେ ବୋଇତ ନିର୍ମାଣ ପାଇଁ ଆବଶ୍ୟକ ଉଚ୍ଚ କ୍ଷମତା ସମ୍ପନ୍ନ ଯନ୍ତ୍ରପାତି ଯଥା- ଲେଦ୍, ଡ୍ରିଲର, କଟର୍ ଇତ୍ୟାଦି ସୁଦୂର ଇଂଲଣ୍ଡରୁ ଜଳପଥରେ ମଗାଇ ୱାର୍କସପ୍‌ରେ ସ୍ଥାପନ କରିଥିଲେ । ସେହିପରି ବଡ଼ବଡ଼ ଜାହାଜ ନିର୍ମାଣଠାରୁ ସାନ ନୌକା ପାଇଁ ଆବଶ୍ୟକ

କଣ୍ଟାଠାରୁ ନଟ୍‌ବୋଲ୍ଟ ପର୍ଯ୍ୟନ୍ତ ପ୍ରସ୍ତୁତ ମେସିନାରୀ ବ୍ୟବସ୍ଥା କରିଥିଲେ । ନୌକା ଯେହେତୁ କାଠରେ ନିର୍ମାଣ କରାଯାଉଥିଲା, ଜଳପଥରେ ବିରାଟ ବିରାଟ ଲଗ୍ ଭେଳାରେ ଆସି ଯୋବ୍ରାରେ ପହଞ୍ଚିଥିଲା । ୧୮୭୦ ମସିହାରେ ବ୍ରିଟିଶ ସରକାରଙ୍କ ପ୍ରତିଷ୍ଠିତ ସ-ମିଲ୍‌ରେ ସେ ସବୁ ଆବଶ୍ୟକତା ଅନୁସାରେ ଚିରା ଯାଉଥିଲା ।

ଯେହେତୁ ଏଠାରେ ଜଳସେଚନ ଉପଯୋଗୀ ସ୍ଲୁଇସ୍ ଗେଟ୍, ଆନିକଟ୍ ନିର୍ମାଣ ଉପକରଣ, ବଡ଼ବଡ଼ ଜାହାଜ, ସାନ ଏବଂ ମଧ୍ୟମ ଧରଣର ନୌକା ନିର୍ମାଣ କରାଯାଉଥିଲା, ତେଣୁ ସ-ମିଲ୍ ସହିତ ମିନି ବାଉଣ୍ଡ୍ରି, ରିପେୟାରିଂ ଡକ୍‌ୟାଡ୍, ମେଜର୍ ରିପେୟାରିଂ ଡିଭିଜନ୍ ଇତ୍ୟାଦି ରହିଥିଲା । ଏଠାରେ ଓଡ଼ିଶା, ବେଙ୍ଗଲ୍, ବିହାର ନୌବାଣିଜ୍ୟ ଆବଶ୍ୟକ ମରାମତି ତଥା ଜଳସେଚନ ଉପଯୋଗୀ ଉପକରଣର ନିର୍ମାଣ ଏବଂ ମରାମତି କରାଯାଇଥିଲା । ଯୋବ୍ରାରୁ ନିର୍ମିତ ପୋତ ଆନ୍ତଃରାଜ୍ୟ ସହ ବହିର୍ବାଣିଜ୍ୟ ପାଇଁ ବିଦେଶକୁ ଯାତ୍ରା କରୁଥିଲା । ଯୋବ୍ରାରେ ଜାହାଜ, ଜେଟି, ବୋଟ୍ ମରାମତି ଏବଂ ନିର୍ମାଣ କରାଯାଉଥିଲା । ପାଣିଜାହାଜ ୱାର୍କସପ୍ ଭାବେ ଯୋବ୍ରା ଦୀର୍ଘ ବର୍ଷ ଧରି ଜନଗହଳ ଅଞ୍ଚଳ ଥିଲା । ମହାନଦୀ ତଟର ବିସ୍ତୀର୍ଣ୍ଣ ଅଞ୍ଚଳରେ କ୍ଷୁଦ୍ର ଓ ମଧ୍ୟମ ଧରଣର କାରଖାନାର ଧ୍ୱଂସାବଶେଷ, ଜାହାଜମାନଙ୍କର ଖଣ୍ଡିତ ଲୌହାବଶେଷ ଦୀର୍ଘ ବର୍ଷ ଧରି ପଡ଼ି ରହିଥିଲା । ଅତୀତର ବହୁ ମୂଲ୍ୟବାନ ନୌବାଣିଜ୍ୟ ସରଂଜାମ, ଲଙ୍ଗର, କ୍ଷୟିତ ଅଂଶବିଶେଷମାନଙ୍କୁ ପୁନରୁଦ୍ଧାର କରି ଯୋବ୍ରାରେ ଉପାଦାନମାନଙ୍କୁ ପୁନରୁଦ୍ଧାର କରି ଯୋବ୍ରାରେ ଏକ ନୌବାଣିଜ୍ୟ ସଂଗ୍ରହାଳୟ ପ୍ରତିଷ୍ଠିତ କରାଯାଇଛି । ଏହାକୁ ଏକ ଶିଳ୍ପାଞ୍ଚଳର ରୂପ ଦେବା ପଛରେ ଯେଉଁ ଘଟଣାଟି ରହିଛି, ତାହା ହେଲା–

୧୯୬୦ ଦଶକର ନଅଙ୍କ ଦୁର୍ଭିକ୍ଷ ଓଡ଼ିଶାର ଜନଜୀବନକୁ ମ୍ରିୟମାଣ କରିଦେଇଥିଲା । ଚାଷ ଜମିରେ ଦୁବ କଅଁଳୁ ନ ଥିଲା । ହା ଅନ୍ନର ଚିତ୍କାର ଚାରିଆଡ଼େ । ତାଳଦଣ୍ଡା କେନାଲ ଏବଂ ଶାଖା କେନାଲ ମାଧ୍ୟମରେ ଜଳସେଚନ ବ୍ୟବସ୍ଥା, ଚାନ୍ଦବାଲିରୁ ହୁଗୁଳିକୁ ଜଳପଥର ସହ ଲୋକମାନଙ୍କୁ କର୍ମ ସଂସ୍ଥାନ ଯୋଗାଇବା ଉଦ୍ଦେଶ୍ୟରେ ଇଂରେଜ ସରକାର ଏହି ପ୍ରକଳ୍ପ ଆରମ୍ଭ କରି ସେମାନଙ୍କର ରାଜକୋଷ ବୃଦ୍ଧି ପାଇଁ ଆଗେଇ ଆସିଥିଲେ ।

ତତ୍‌କାଳୀନ ବ୍ରିଟିଶ ଶାସକ ଫକ୍‌ନର୍ ଏହି ୱାର୍କସପ୍‌ଟି ଯୋବ୍ରାରେ ପ୍ରତିଷ୍ଠା କରିଥିଲେ । ୱାର୍କସପ୍‌ର ସମସ୍ତ କାର୍ଯ୍ୟ ଅତ୍ୟାଧୁନିକ ଜ୍ଞାନ କୌଶଳରେ ଚାଲୁଥିଲା । କୋଇଲା ଭାଟି ନିର୍ମାଣ କରି ଲୁହା ତରଳା ଯାଉଥିଲା । ୱାର୍କସପ୍‌ର ସମସ୍ତ କାମ ଷ୍ଟିମ୍ ପାୱାର ପ୍ରୋସେସିଂ ଏବଂ ବାଷ୍ପଚାଳିତ ପ୍ରକ୍ରିୟାକରଣରେ କରାଯାଉଥିଲା । ଏଠାରେ ଚାଳିତ ବତିଶଟି ଗୁରୁତ୍ୱପୂର୍ଣ୍ଣ ସଂସ୍ଥାନ ଦ୍ୱାରା ନୌବାଣିଜ୍ୟିକ ସାମଗ୍ରୀ ପ୍ରସ୍ତୁତ କରାଯାଉଥିଲା ।

ପରିବେଶ ପ୍ରଦୂଷଣ ପ୍ରତି ଧ୍ୟାନ ଦେଇ ପ୍ରତ୍ୟେକ ଶିଳ୍ପ ନିର୍ଗତ ଗ୍ୟାସ୍ ଏବଂ ବାଷ୍ପକୁ ଗୋଟିଏ ବିଶାଳ ଚିମିନି ଦ୍ୱାରା ବାୟୁମଣ୍ଡଳକୁ ନିଷ୍କାସିତ କରାଯାଇଥିଲା । ୱାର୍କସପ୍‌ଠାରୁ ପ୍ରାୟ ତିରିଶ ମିଟର ଦୂରରେ ଏହି ଚିମିନି ନିର୍ମିତ ହୋଇଥିଲା । ଚିମିନିଟିର ଉଚ୍ଚତା ପ୍ରାୟ ୪୦୦ ଫୁଟ୍ । ପ୍ରତ୍ୟେକ ୟୁନିଟ୍‌ରୁ ନିର୍ଗତ ଧୂଳି ଧୂଆଁ ଓ ଖମ୍ବ ଭୂତଳ ରାସ୍ତାରେ ଚିମିନି ସହ ଏପରି ସଂଯୋଗ ହୋଇଥିଲା ଯେ ଅଞ୍ଚଳର ଅଧିବାସୀ ତଥା କର୍ମଚାରୀମାନଙ୍କ କୌଣସି କ୍ଷତିର କାରଣ ହୋଇ ନ ଥିଲା । ଏହି ସୁ ଉଚ୍ଚ ଚିମିନିର ଉପରି ଭାଗରେ ଆଲୋକର ବ୍ୟବସ୍ଥା ମଧ୍ୟ ରହିଥିଲା । ଏହାକୁ ସାଧାରଣରେ ଏକ ଚିମିନି ନ ଭାବି ବତିଘର ବା ବତିଖୁଣ୍ଟ ବୋଲି ଜାଣିଥିଲେ ।

ବର୍ଜ୍ୟ ଧୂଳି, ଧୂଆଁ ନିର୍ଗତ ଏହି ସୁ ଉଚ୍ଚ ଚିମିନି ଉପରେ ଜଳୁଥିବା ଆଲୋକ ଦୂରରୁ ଆସୁଥିବା ପୋତ, ବୋଇତ, ଜେଟିଗୁଡ଼ିକ ପାଇଁ ମାର୍ଗଦର୍ଶକ ବତିଘର ଭାବେ କାମ କରୁଥିଲା । ବିଶେଷତଃ ବୈତରଣୀ, ମହାନଦୀ, ତାଳଦଣ୍ଡା ଦେଇ ଆସୁଥିବା ବେଙ୍ଗଲ ଜେଟି, ବୋଇତ, ନୌକାଗୁଡ଼ିକ ପ୍ରାୟତଃ ମଧ୍ୟରାତ୍ରୀରେ ଆସୁଥିଲେ । ହୁକିଟୋଲା, କୋଣାର୍କ, ପୁରୀ ପରି ଯୋବ୍ରାର ଏହି ଖୁଣ୍ଟି ଦିଗବାରେଣୀ ବା ସୂଚନା ସ୍ତମ୍ଭ ଥିଲା ।

ସମୟକ୍ରମେ ସବୁ କିଛି ବଦଳିଗଲା । ବିଜ୍ଞାନର ଉନ୍ନତି ଘଟିଲା । ରାସ୍ତାଘାଟ, ନଦୀ ସଂଯୋଗ ସେତୁ ଯୋଗୁଁ ଆଜି ଯୋବ୍ରା ଶିଳ୍ପାଞ୍ଚଳ ଅବହେଳିତ ହୋଇ ପଡ଼ିଥିଲା । ଦୀର୍ଘବର୍ଷ ପରେ ବ୍ରିଟିଶ ଅମଳର ମେରାଇନ୍ ୱାର୍କସପ୍‌ଟି ଉପରେ ସରକାରଙ୍କର ଶୁଭଦୃଷ୍ଟି ପଡ଼ିଲା । ଖତ ଗଦାରେ ଫୁଲ ଫୁଟିଲା ପରି ଲୁହାର ଲଙ୍ଗର, ଜାହାଜର ରସି, ଭଗ୍ନାଂଶ, ତତ୍‌କାଳୀନ ବ୍ୟବହୃତ ଖେଇତ, ପ୍ରାଣରକ୍ଷକ ଜ୍ୟାକେଟ୍, ଜୋତା ଇତ୍ୟାଦିକୁ ନେଇ କୋଟି କୋଟି ଟଙ୍କା ବିନିଯୋଗ କରି ମେରାଇନ୍ ମ୍ୟୁଜିୟମ୍‌ର ରୂପ ନେଲା । ସେଇ ପରିତ୍ୟକ୍ତ ଦୀର୍ଘ ଶହେ ପଚାଶ ବର୍ଷର ଅନ୍ଧାରୀ ଅଲୋଡ଼ା ନୌବାଣିଜ୍ୟର ସାମଗ୍ରୀଗୁଡ଼ିକ ଏବେ ପୁନଶ୍ଚ ଆଲୋକିତ କକ୍ଷରେ ଦର୍ଶନୀୟ ଭାବେ ଅତୀତ ଉତ୍କଳର ନୌବାଣିଜ୍ୟର ଗରିମା ବହନ କରିଥାନ୍ତି । ସାଢ଼େ ଚାରି ଏକର ପରିମିତ ଅଞ୍ଚଳରେ ଦଶଟି ଗ୍ୟାଲେରୀ ବେଷ୍ଟିତ, ଏଗାର କୋଟି ଅର୍ଥ ବିନିମୟରେ ନିର୍ମିତ ।

''ଓଡ଼ିଶା ରାଜ୍ୟ ନୌବାଣିଜ୍ୟ ସଂଗ୍ରହାଳୟ''କୁ ମୁଖ୍ୟମନ୍ତ୍ରୀ ଶ୍ରୀଯୁକ୍ତ ନବୀନ ପଟ୍ଟନାୟକ ୨୦୧୩ ମସିହା ଅପ୍ରେଲ ପହିଲା ଦିନ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଥିଲେ । ଇଣ୍ଡିଆନ୍ ନାସନାଲ ଟ୍ରଷ୍ଟ ଫର୍ ଆର୍ଟ ଆଣ୍ଡ କଲଚର (ଇନ୍‌ଟାକ)ର ସହାୟତାରେ ଅତୀତ ଉତ୍କଳର ଗୌରବମୟ ନୌଯାତ୍ରା, ବୋଇତ ଏହା ସହ ଜଡ଼ିତ ସମସ୍ତ ସରଞ୍ଜାମ ଏବଂ ସାଧବ ପୁଅର ସାହସିକତାର ପ୍ରମାଣ ପ୍ରତିଫଳିତ ହୋଇଛି ।

'ଆଶ୍ରମ', ଶ୍ରୀବିହାର କଲୋନୀ
କଟକ

# ଆଦ୍ୟାଶକ୍ତି ସନାତନୀ

କୁନଲତା ତ୍ରିପାଠୀ

ମମତାର ମଧୁ ଝରାଇ ଦେ ମାଆ ଆଶିଷ ଦେଇ ବରଷି ।
ଭବ ଯାତନାର ଦୁଃଖ ଦୂର ହେଉ ଆନନ୍ଦ ଉଠୁ ବିକଶି ।।
ଜଳୁଛି ଜୀବନ ଯନ୍ତ୍ରଣା ଯୂଇରେ ଭବ ଦହନର ଜ୍ୱାଳା ।
ବେଳୁ ବେଳ ମାତା ଅସହ୍ୟ ଦହନ ଏ କେଉଁ ଦାନବ ଲୀଳା ।।
ଅବତରି ଆସୁ ଏ ଧରା ଧାମରେ ଭବ-ଦାନବକୁ ଦଳି ।
ଯୁଗେ ଯୁଗେ ଦୁର୍ଗା ଦୁର୍ଗତି ନାଶିନୀ କଳିକୁ ଦେ ମାଆ ଟାଳି ।।
ପୁଷ୍ପିତ ହେଉ ମା' ଭାବର କୁସୁମ ହସୁ ହୃଦୟ ବନାନୀ ।
ଭକତି ସୁଗନ୍ଧେ ବିମୋଦିତ ପ୍ରାଣ ହରୁ ତମସା ରଜନୀ ।।
ତୋ ଚରଣ ରେଣୁ ପରାଗେ ରଞ୍ଜିତ ଏ କେଶର ଶତଦଳେ ।
ଆବେଗେ ମା' କରି ପ୍ରାଣ ପୁଲକିତ ଆଶିଷର ବାରିଧାରେ ।।
ଦଶ ଦିଗ ଭାଗେ ଦଶ ମହାବିଦ୍ୟା ଅପରୂପ ମୂର୍ତ୍ତି ଧରି ।
ଦୃଢ଼େ ଧନ୍ଦି ଛନ୍ଦି ବନ୍ଧାଇ ଦେ ମାତା ଦାନବକୁ ଭସ୍ମ କରି ।।
ତୁ ପରା ଜନନୀ ଜଗତ ପାଳିନୀ କରୁଣାର ଅବତାର ।
ଧରଣୀ ବକ୍ଷରୁ ଏ ଭାର ଓହ୍ଲାଅ ଧ୍ୱଂସି କରୋନା ଅସୁର ।।
ଯୁଗେ ଯୁଗେ ଯଶ ବାନା ତୋ ଉଡଇ ହସି ଉଠଇ ଜଗତ ।
ଅବିଦ୍ୟା ଅଜ୍ଞାନ ଅନ୍ଧକାର ନାଶୁ ପ୍ରକାଶି ତୃତୀୟ ନେତ୍ର ।।
ମଙ୍ଗଳମୟୀ ଗୋ ତୋ ଶୁଭାଗମନେ ସର୍ବ ଶୁଭ ଲାଭ ହେଉ ।
ଦୁଃଖ ଦହନର ଜ୍ୱାଳା ଶାନ୍ତ ହୋଇ ଶୀତଳ ପବନ ବହୁ ।।
ପ୍ରୀତିର ପରଶେ ପୁଲକିତ କର ମା'ଗୋ କଲ୍ୟାଣ କାରିଣୀ ।
ତୋ ଚାରୁ ହାସରେ ଚମକି ଛବିଳେ ହୁଅ ମଙ୍ଗଳ ଦାୟିନୀ ।।
ଦୁର୍ଗତି ନାଶିନୀ ମା' କାତ୍ୟାୟନୀ ଆଦ୍ୟାଶକ୍ତି ସନାତନୀ ।
ପଦ କମଳେ ମା' ବିନତି ଏତିକି ରକ୍ଷା କର ଏ ଧରଣୀ ।।

ଦୁର୍ନୀତି ନିବାରଣ ନିର୍ଦ୍ଦେଶାଳୟ, କଟକ-୧

# ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ

ଇଂ. ମାୟାଧର ସ୍ୱାଇଁ

ପ୍ରାଚୀନ ଓଡ଼ିଶା ବା କଳିଙ୍ଗ ନୌବାଣିଜ୍ୟରେ ଉତ୍କର୍ଷ ସାଧନ କରିଥିଲା । ବଙ୍ଗୋପସାଗର କୂଳରେ ଅବସ୍ଥିତ ଥିବାରୁ ପ୍ରାୟ ଦୁଇ ହଜାର ବର୍ଷ ପୂର୍ବରୁ ଓଡ଼ିଆମାନେ ଦୂର ଦେଶକୁ ପାଲଟଣା ଜାହାଜ ବା ବୋଇତ ନେଇ ବାଣିଜ୍ୟ ବ୍ୟବସାୟ କରୁଥିଲେ । ଏହାର ପ୍ରମାଣ ଅନେକ କିମ୍ବଦନ୍ତୀ, ସାହିତ୍ୟ, ଭ୍ରମଣ କାହାଣୀ ଆଦିରେ ରହିଅଛି । ଏତଦ୍‌ବ୍ୟତୀତ ପ୍ରତ୍ନତାତ୍ତ୍ୱିକ ଖନନରୁ ମଧ୍ୟ କେତେକ ପ୍ରମାଣ ମିଳିଛି ।

ସିଂହଳର ଗୋଟିଏ ପ୍ରାଚୀନ ବୌଦ୍ଧଗ୍ରନ୍ଥ 'ମହାବଂଶ'ରେ ଉଲ୍ଲେଖ ଅଛି ଯେ, ଖ୍ରୀ.ପୂ. ଷଷ୍ଠ ଶତାବ୍ଦୀରେ ସିଂହଳର ସିଂହଳୀ ରାଜବଂଶକୁ କଳିଙ୍ଗର ଜଣେ ରାଜକୁମାର ପ୍ରତିଷ୍ଠା କରିଥିଲେ । ସେ ନିଜ ରାଜ୍ୟରୁ ବିତାଡ଼ିତ ହୋଇ ସିଂହଳ ଚାଲି ଯାଇଥିଲେ ଏବଂ ସେଠାରେ ଭେଧା ବଂଶର ଜଣେ ରାଜକୁମାରୀଙ୍କୁ ବିବାହ କରିଥିଲେ ଏବଂ ସେମାନଙ୍କଠାରୁ ଜାତ ବଂଶଧରମାନଙ୍କୁ ସିଂହଳୀ କୁହାଗଲା । କାରଣ ରାଜକୁମାର କଳିଙ୍ଗର ସିଂହବଂଶଜ ଥିଲେ ।

ଇଣ୍ଡୋନେସିଆର ଜାଭା ଦ୍ୱୀପ ସହିତ କଳିଙ୍ଗର ସାମୁଦ୍ରିକ ବାଣିଜ୍ୟ ସମ୍ପର୍କ ପ୍ରାୟ ଦୁଇ ହଜାର ବର୍ଷ ପୂର୍ବେ ଆରମ୍ଭ ହୋଇଥିଲା । ଜାଭା ଦ୍ୱୀପର ଏକ କିମ୍ବଦନ୍ତୀ ଅନୁସାରେ କଳିଙ୍ଗର ରାଜା ପ୍ରାୟ କୋଡ଼ିଏ ହଜାର ଲୋକଙ୍କୁ ସେଠାକୁ ପଠାଇଥିଲେ, ଯେଉଁମାନେ ସେଠାରେ ସ୍ଥାୟୀ ଭାବେ ରହି ବଂଶ ବୃଦ୍ଧି କରିଥିଲେ ।

ସପ୍ତମ ଶତାବ୍ଦୀରେ ବର୍ମା (ବର୍ତ୍ତମାନର ମିଆଁମାର)ର ନାମ 'କଳିଙ୍ଗରାଢ୍' ଥିଲା, ଯାହାର ଅର୍ଥ ହେଉଛି 'କଳିଙ୍ଗ ରାଷ୍ଟ୍ର' । ବର୍ମାର ପ୍ରାଚୀନ ଗ୍ରନ୍ଥରୁ ଜଣାଯାଏ ଯେ ସେଠାରେ ଓଡ଼ିଆ ବଣିକମାନଙ୍କ ଦ୍ୱାରା ବୌଦ୍ଧଧର୍ମ ପ୍ରଚାରିତ ହୋଇଥିଲା । ଖ୍ରୀ.ପୂ. ଦ୍ୱିତୀୟ ଶତାବ୍ଦୀରେ ଅଶୋକଙ୍କ କଳିଙ୍ଗ ଆକ୍ରମଣ ପରେ କେତେକ ଓଡ଼ିଆ ଜାହାଜରେ ଯାଇ କାମ୍ବୋଡ଼ିଆରେ ବସବାସ କରିଥିଲେ । କାମ୍ବୋଡ଼ିଆର ପୃଥିବୀ ପ୍ରସିଦ୍ଧ ଅଙ୍ଗକର ୱଟ ମନ୍ଦିରର ନିର୍ମାଣ ଶୈଳୀ ପୁରୀ ଜଗନ୍ନାଥ ମନ୍ଦିରର ନିର୍ମାଣ ଶୈଳୀର କେତେକ ସାମଞ୍ଜସ୍ୟତା ଏହାର ପ୍ରମାଣ ଦିଏ । ନିକଟରେ ଶିଶୁପାଳଗଡ଼ଠାରେ ଭୂତାତ୍ତ୍ୱିକ ଖନନରୁ ମିଳିଥିବା କଳାକୃତି, ମାଟିପାତ୍ର, ମୁଦ୍ରା ଓ ଦେବୀମୂର୍ତ୍ତିରୁ ଜଣାପଡ଼େ ଯେ ପ୍ରାଚୀନ ରୋମ୍ ସାମ୍ରାଜ୍ୟ ସହିତ କଳିଙ୍ଗର ବାଣିଜ୍ୟ ସମ୍ପର୍କ ଥିଲା ।

ପ୍ରାଚୀନ ଓଡ଼ିଶାର ଗୋଟିଏ ମୁଖ୍ୟ ବନ୍ଦର ଥିଲା ତାମ୍ରଲିପ୍ତି । ଏହା ହେଉଛି ବର୍ତ୍ତମାନର ପଶ୍ଚିମବଙ୍ଗର ମେଦିନିପୁରର ତାମଲୁକ । ଏହା ରୂପନାରାୟଣ ନଦୀ ଓ ବଙ୍ଗୋପସାଗରର ସଙ୍ଗମ ସ୍ଥଳରେ ଅବସ୍ଥିତ । ଏଠାରୁ ସିଂହଳ (ବର୍ତ୍ତମାନର ଶ୍ରୀଲଙ୍କା), ବର୍ମା, ମାଳୟ, ଆଫ୍ରିକା ଆଦି ସହିତ ନିୟମିତ ଜାହାଜ ଚଳାଚଳ କରୁଥିଲା । ଏଠାରୁ କପଡ଼ା, ରେଶମ ଓ ତମ୍ବା ଆଦି ରପ୍ତାନି ହେବା ସହ ଏଠାରୁ ଯାତ୍ରୀମାନଙ୍କୁ ନେଇ ମଧ୍ୟ ଜାହାଜ ଚଳାଚଳ କରୁଥିଲା । ଏହା ମଧ୍ୟ ଆନ୍ତର୍ଦେଶୀୟ ଜଳପଥରେ ପାଟଳିପୁତ୍ର, ବାରାଣସୀ, ପ୍ରୟାଗ ଓ ମଥୁରା ଆଦି ସହର

ସହ ସଂଯୁକ୍ତ ଥିବାରୁ ସେହିସବୁ ସହରଗୁଡ଼ିକରୁ ପଣ୍ୟଦ୍ରବ୍ୟ ଅନାୟାସରେ ଏଠାକୁ ଆସି ପାରୁଥିଲା । ମଗଧ ସମ୍ରାଟ୍ ଅଶୋକଙ୍କ କଳିଙ୍ଗ ଆକ୍ରମଣର ଅନ୍ୟତମ କାରଣ ଭାବେ ତାମ୍ରଲିପ୍ତି ବନ୍ଦରକୁ ଅନେକ ଐତିହାସିକ କହିଥାଆନ୍ତି । ନୌବାଣିଜ୍ୟ ପାଇଁ ମଗଧ ସାମ୍ରାଜ୍ୟର ଏକ ବନ୍ଦର ଆବଶ୍ୟକ ଥିଲା ଏବଂ ଏଣୁ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ । ଅଶୋକଙ୍କ ପରେ କଳିଙ୍ଗ ପୁନଶ୍ଚ ସ୍ୱାଧୀନ ହୋଇଥିଲା ଏବଂ ତାମ୍ରଲିପ୍ତି ସପ୍ତମ ଶତାବ୍ଦୀ ପର୍ଯ୍ୟନ୍ତ ଓଡ଼ିଶା ରାଜ୍ୟ ଅନ୍ତର୍ଗତ ଥିଲା ।

ପ୍ରାଚୀନ ଶିଳ୍ପଶାସ୍ତ୍ର ଅନୁଯାୟୀ ତାମ୍ରଲିପ୍ତି ଗୋଟିଏ ଦ୍ରୋଣିମୁଖ ବନ୍ଦର ଥିଲା । ନଦୀ ଓ ସମୁଦ୍ର ସଙ୍ଗମ ସ୍ଥଳର ବନ୍ଦରକୁ ଏହା ବୁଝାଉ ଥିଲା । ଶିଳ୍ପଶାସ୍ତ୍ର ଅନୁଯାୟୀ ଅନ୍ୟ ପ୍ରକାର ବନ୍ଦର ହେଉଛି ପାଟଣା, ଯାହାର ଉଦାହରଣ ହେଉଛି ବିଶାଖାପାଟଣା, କଳିଙ୍ଗ ପାଟଣା ଓ ମସୁଲିପାଟଣା । ଗ୍ରୀକ୍ ଭୂଗୋଳବିତ୍ ଟଲେମି (ଦ୍ୱିତୀୟ ଶତାବ୍ଦୀ) ତାମ୍ରଲିପ୍ତି ବନ୍ଦର ସମ୍ବନ୍ଧରେ ତାଙ୍କ ପୁସ୍ତକରେ ଲେଖିଛନ୍ତି । ମହାଭାରତରେ ମଧ୍ୟ ଏହାର ଉଲ୍ଲେଖ ଅଛି । କୌଟିଲ୍ୟଙ୍କ ଅର୍ଥଶାସ୍ତ୍ରରେ ଏହାକୁ ନୌବାଣିଜ୍ୟର ଏକ ପ୍ରମୁଖ ସ୍ଥାନ ଭାବେ ଲେଖାଯାଇଛି ।

ଚୀନ୍ ପରିବ୍ରାଜକ ଫାହିୟାନ ୩୯୯ ମସିହାରୁ ୪୧୩ ମସିହା ପର୍ଯ୍ୟନ୍ତ ଭାରତ ପରିଭ୍ରମଣରେ ଆସିଥିଲେ । ସେ କେନ୍ଦ୍ରୀୟ ଚୀନରୁ ପାଦରେ ଚାଲିଚାଲି ଚୀନ୍‌ର ଟୋନ୍‌ମାନ୍ ଓ ତୁନାଙ୍ଗ ଦେଇ ହିମାଳୟ ପର୍ବତ ଅତିକ୍ରମ କରି ଗାନ୍ଧାର ଓ ତା'ପରେ ପେଶୱାରରେ ପହଞ୍ଚିଥିଲେ । କିନ୍ତୁ ସେ ଜଳପଥରେ ଭାରତରୁ ଚୀନକୁ ଫେରିଥିଲେ । ତାଙ୍କର ଭ୍ରମଣ ବୃତ୍ତାନ୍ତ ''ବୌଦ୍ଧ ଦେଶଗୁଡ଼ିକର ଗୋଟିଏ ଅଭିଲେଖ''ରେ ସେ ଲେଖିଛନ୍ତି ଯେ ସେ ତାମ୍ରଲିପ୍ତି ବନ୍ଦରରୁ ଗୋଟିଏ ବଡ଼ ବଣିକ ଜାହାଜରେ ସିଂହଳ ଯାତ୍ରା କରି ଚଉଦ ଦିନ ପରେ ସେଠାରେ ପହଞ୍ଚିଥିଲେ । ସେଠାରେ ଦୁଇବର୍ଷ ରହି ସେ ଜଳପଥରେ ନିକୋବର ଦ୍ୱୀପପୁଞ୍ଜ ଦେଇ ଜାଭା ଯାଇଥିଲେ ଏବଂ ସେଠାରୁ ଅନ୍ୟ ଏକ ଜାହାଜରେ ଚୀନ୍ ଯାଇଥିଲେ ।

ଇଜିଙ୍ଗ୍ ନାମରେ ଚୀନ୍‌ର ଅନ୍ୟ ଜଣେ ପରିବ୍ରାଜକ ଭାରତରେ ୬୭୧ ମସିହାରୁ ୬୯୫ ମସିହା ପର୍ଯ୍ୟନ୍ତ ଥିଲେ । ସେ ଚୀନ୍‌ରୁ ଜଳପଥରେ ଆସି ତାମ୍ରଲିପ୍ତି ବନ୍ଦରଠାରେ ଭାରତରେ ପ୍ରବେଶ କରିଥିଲେ ଏବଂ ଚବିଶ ବର୍ଷ ପରେ ସେଠାରୁ ମଧ୍ୟ ଜଳପଥରେ ଚୀନ୍‌କୁ ପ୍ରତ୍ୟାବର୍ତ୍ତନ କରିଥିଲେ ।

ଅନ୍ୟତମ ଚୀନ୍ ପରିବ୍ରାଜକ ହୁଏନ୍‌ସାଂ ୬୨୯ ମସିହାରେ ଭାରତ ଆସି ଏଠାରେ ଚଉଦ ବର୍ଷ ରହିଥିଲେ । ତାଙ୍କ ପୁସ୍ତକ ''ପାଶ୍ଚାତ୍ୟ ଅଞ୍ଚଳର ଅଭିଲେଖ''ରୁ ଉଡ୍ର (ଓଡ଼ିଶାକୁ ଉଡ୍ର କୁହାଯାଉଥିଲା) ଦେଶର ଦକ୍ଷିଣ-ପୂର୍ବରେ ଅବସ୍ଥିତ ଚେଲିତୋଲ ବନ୍ଦରର ବିବରଣୀ ଅଛି । ସେ ଏହାକୁ ଏକ ବ୍ୟସ୍ତବହୁଳ ବନ୍ଦର ଭାବେ ବର୍ଣ୍ଣନା କରିଛନ୍ତି । ଏଠାରୁ ଅନେକ ନାବିକ ଓ ବଣିକ ଜାହାଜ ନେଇ ଦୂର ଦେଶକୁ ଯାଇଥାଆନ୍ତି ବୋଲି ସେ ଲେଖିଛନ୍ତି । ତାଙ୍କ ଲେଖା ଅନୁଯାୟୀ ସିଂହଳ ହେଉଛି ସେଠାରୁ ପାଞ୍ଚ ହଜାର ମାଇଲ ଦୂର ଏବଂ ଏହାର ନିକଟରେ ଅନେକ ବୌଦ୍ଧାଶ୍ରମ ଅଛି । ଐତିହାସିକମାନେ ହୁଏନ୍‌ସାଂଙ୍କ ବିବରଣୀ ଓ ଅନ୍ୟ କେତେକ ତଥ୍ୟରୁ ଚେଲିତୋଲକୁ ଆଧୁନିକ ମାଣିକପାଟଣା କହିଥାଆନ୍ତି । ଏହା ପୁରୀ ଜିଲ୍ଲାରେ ଚିଲିକାର ଉତ୍ତର ପାର୍ଶ୍ୱରେ ଅବସ୍ଥିତ । ଏଠାରେ ଚୀନ୍‌ର ଚିନାମାଟି ବାସନ ଏବଂ ତମ୍ବାମୁଦ୍ରା ଓ ସିଂହଳର ମୁଦ୍ରା ଆବିଷ୍କୃତ ହୋଇଛି ।

ଗଞ୍ଜାମ ଜିଲ୍ଲାର ପାଲୁରଠାରେ ଏକ ବଡ଼ ବନ୍ଦର ଥିବାର ଟଲେମିଙ୍କ ଲେଖାରୁ ଜଣାପଡ଼େ । ବୁଦ୍ଧ ଜାତକରେ ଲେଖା ଯାଇଥିବା ଦନ୍ତପୁର ଓ ପାଲୁର ହେଉଛି ଗୋଟିଏ ସ୍ଥାନ । ଏଠାରୁ ହାତୀଦାନ୍ତ ରପ୍ତାନି ହେଉଥିବାରୁ ଏହାର ଏପରି ନାମକରଣ କରାଯାଇଥିଲା ।

କଳିଙ୍ଗପାଟଣା ପ୍ରାଚୀନ ଓଡ଼ିଶାର ଅନ୍ୟତମ ବନ୍ଦର ଥିଲା । ଏହା ଆଧୁନିକ ଆନ୍ଧ୍ରପ୍ରଦେଶର ଶ୍ରୀକାକୁଳମ୍ ଜିଲ୍ଲାରେ ବଂଶଧାରା ମୁହାଣରେ ଅବସ୍ଥିତ । ଏହା ଅନେକ ବର୍ଷ ପର୍ଯ୍ୟନ୍ତ ଓଡ଼ିଶା ଅଧୀନରେ ଥିଲା । କଳିଙ୍ଗପାଟଣା ନାମରୁ ଜଣାପଡ଼େ ଯେ ଏହା କଳିଙ୍ଗର ଏକ ବନ୍ଦର ଥିଲା ।

ସପ୍ତଦଶ ଶତାବ୍ଦୀକୁ ଭାରତୀୟ ନୌବାଣିଜ୍ୟ ଇତିହାସର ସୁବର୍ଣ୍ଣ ଯୁଗ କୁହାଯାଏ । ଏହି ସମୟରେ ଭାରତ ମହାସାଗର ଦେଇ ଇଂଲଣ୍ଡ, ଫ୍ରାନ୍ସ, ଡେନ୍‌ମାର୍କ, ପର୍ତ୍ତୁଗାଲ ଓ ଏସିଆ ମହାଦେଶର ଅନେକ ଦେଶ ସହ ଭାରତର ନୌବାଣିଜ୍ୟ କାରବାର ଚାଲିଥିଲା । ଭାରତର ପୂର୍ବ ଓ ପଶ୍ଚିମ ଉପକୂଳରେ ଅନେକ ବନ୍ଦର କାର୍ଯ୍ୟକ୍ଷମ ଥିଲା । ଓଡ଼ିଶାରେ ଥିବା ବନ୍ଦରଗୁଡ଼ିକ ହେଉଛି ବାଲେଶ୍ୱର, ପିପିଲି, ହରିଶପୁର ଓ ବିମିଲିପନମ୍ । ବାଲେଶ୍ୱରରୁ କଲିକତାକୁ ନିୟମିତ ଭାବେ ଯାତ୍ରୀବାହୀ ଓ ମାଲବାହୀ ଜାହାଜ ଚଳାଚଳ କରୁଥିଲା । ବାଲେଶ୍ୱରରେ ଜାହାଜ ନିର୍ମାଣ କରାଯାଉଥିଲା । ଏଠାରୁ ପ୍ରାୟ ଛଅ ଶହ ଜାହାଜ ଚଳାଚଳ କରୁଥିବାର ଫକୀରମୋହନ ସେନାପତି ତାଙ୍କ 'ଆତ୍ମଜୀବନ ଚରିତ' ପୁସ୍ତକରେ ଲେଖିଛନ୍ତି । ବାଲେଶ୍ୱରରେ ସେତେବେଳେ ତନ୍ତଲୁଗା ବୁଣା ଯାଉଥିଲା । ଏଠାରୁ ତନ୍ତଲୁଗା, ଲୁଣ ଓ ଚାଉଳ ରପ୍ତାନି କରାଯାଉଥିଲା ।

ଫକୀରମୋହନ ସେନାପତି ବାଲେଶ୍ୱରର ତନ୍ତଲୁଗା ସମ୍ବନ୍ଧରେ ଲେଖିଛନ୍ତି– ''ଆମ୍ଭମାନଙ୍କ ଗ୍ରାମ ସଂଲଗ୍ନ ଗୋଟିଏ ବୃହତ୍ ତନ୍ତୀ ସାହି । ବାଲେଶ୍ୱରକୁ କଳଲୁଗା ଆମଦାନୀ ହେବା ପୂର୍ବେ ଅର୍ଥାତ୍ ପଚାଶ ଷାଠିଏ ବର୍ଷ ପୂର୍ବେ ଏହି ତନ୍ତୀମାନେ ମଧ୍ୟବିତ୍ତ ଲୋକ ଶ୍ରେଣୀ ମଧ୍ୟରେ ଗଣ୍ୟ ହେଉଥିଲେ । ସତର ଶତ ଖ୍ରୀଷ୍ଟାବ୍ଦରେ ଓଲନ୍ଦାଜ, ଦୀନାମାର, ଫରାସୀ ସଉଦାଗରମାନେ ବାଲେଶ୍ୱରୀ ଲୁଗା ବିଲାତକୁ ଚାଲାଣ ଦେଉଥିଲେ । ବର୍ତ୍ତମାନ ସେହି ସମସ୍ତ ତନ୍ତୀବଂଶ ଉଚ୍ଛନ୍ନ ହୋଇଯାଇଛନ୍ତି ।''

ବାଲେଶ୍ୱରରୁ ସିଂହଳ ଓ ମାଳଦ୍ୱୀପକୁ ଜାହାଜରେ ଚାଉଳ ଯାଉଥିଲା । ଶୁଣିଲେ ଆଶ୍ଚର୍ଯ୍ୟ ଲାଗେ ଯେ ବାଲେଶ୍ୱରକୁ ଆମଦାନୀ ବସ୍ତୁ ମଧ୍ୟରେ ହାତୀ ଥିଲା ଅନ୍ୟତମ । ଶ୍ୟାମ (ଥାଇଲାଣ୍ଡ), ସିଂହଳ ଓ ମାଳୟରୁ ବାଲେଶ୍ୱରକୁ ହାତୀ ଆମଦାନୀ ହେଉଥିଲା ଏବଂ ଓଡ଼ିଶାର ରାଜା ମହାରାଜାମାନଙ୍କ ପାଖରେ ଏହାର ଚାହିଦା ଅଧିକ ଥିଲା ।

ଓଡ଼ିଶାରୁ ସାଧବମାନେ ଜାଭା, ବାଲି, ସୁମାତ୍ରା, ବୋର୍ଣ୍ଣିଓ, କାମ୍ବୋଡ଼ିଆ ଓ ମାଳୟକୁ ନିୟମିତ ରୂପେ ଜାହାଜ ନେଇ ବ୍ୟବସାୟ ପାଇଁ ଯାଉଥିଲେ । କାର୍ତ୍ତିକ ପୂର୍ଣ୍ଣମୀ ହିନ୍ଦୁମାନଙ୍କ ପାଇଁ ଗୋଟିଏ ପବିତ୍ର ଦିବସ ହୋଇଥିବାରୁ ଏବଂ ଏହାପରଠାରୁ ପାଲଟଣା ଜାହାଜରେ ଯାତ୍ରା କରିବା ପାଇଁ ମୌସୁମୀ ବାୟୁ ସହାୟକ ହେଉଥିବାରୁ, ସାଧବମାନେ ଏହିଦିନ ନୌଯାତ୍ରା ଆରମ୍ଭ କରୁଥିଲେ । ଏହାର ସ୍ମୃତିରେ ଆମେ କାର୍ତ୍ତିକ ପୂର୍ଣ୍ଣମୀ ଦିନ କଟକରେ ବାଲିଯାତ୍ରା ଉତ୍ସବ ପାଳନ କରିଆସୁଛେ । ଏହିଦିନ ଉପକୂଳବର୍ତ୍ତୀ ଓଡ଼ିଶାରେ ବୋଇତ ବନ୍ଦାଣ କରାଯାଏ ଏବଂ ଓଡ଼ିଆମାନେ ବଡ଼ି ଭୋରୁ ନଦୀ କିମ୍ବା ପୁଷ୍କରିଣୀରେ 'ଆ କା ମା ବୈ' ଗୀତ ଗାଇ ଛୋଟ ଛୋଟ ଡଙ୍ଗା ଭସାଇଥାନ୍ତି । ଏହି ପରମ୍ପରା ହେଉଛି ଅତି ପ୍ରାଚୀନ । ସାରଳା ମହାଭାରତ (ପଞ୍ଚଦଶ ଶତାବ୍ଦୀ)ର ଆଦି ପର୍ବରେ ଲେଖାଅଛି –

''କାର୍ତ୍ତିକ ମାସ ଶୁକଳ ପକ୍ଷ ବୁଧବାର ଯେ ପୂର୍ଣ୍ଣମୀ
ଆକାମା ବଇ ସ୍ନାହାନ ଦିନ ଗଙ୍ଗାକୁ ଗଲେ
କୁନ୍ତ ଭୋଜ ସ୍ୱାମୀ ।''

କାର୍ତ୍ତିକ ମାସର ପୂର୍ଣ୍ଣମୀ ଦିନରେ ଜାହାଜକୁ ପୂଜା କରି ବନ୍ଦରରୁ ବିଦାୟ ଦେବା ପରମ୍ପରା ଊନବିଂଶ ଶତାବ୍ଦୀରେ ମଧ୍ୟ ପ୍ରଚଳିତ ଥିବା ଫକୀରମୋହନ ସେନାପତିଙ୍କ 'କମଳାପ୍ରସାଦ ଗୋରାପ' ଗଳ୍ପରୁ ଜଣାପଡ଼େ । ତଅପୋଇ କିମ୍ବଦନ୍ତୀ ହେଉଛି ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟର ଏକ ପ୍ରମାଣ । କୋଣାର୍କ ମନ୍ଦିରରେ ଖୋଦିତ ଜିରାଫ ଚିତ୍ରରୁ ଜଣାପଡ଼େ ଯେ ଓଡ଼ିଆମାନେ ସେତେବେଳେ ଆଫ୍ରିକା ସହ କାରବାର କରୁଥିଲେ ।

ପ୍ରାଚୀନ ଓଡ଼ିଶାର ନୌବାଣିଜ୍ୟ ଓଡ଼ିଶାକୁ ଧନଶାଳୀ ଓ ସମୃଦ୍ଧ କରିବା ସହିତ ଓଡ଼ିଶାର ସଂସ୍କୃତିକୁ ଦୂର ଦୂରାନ୍ତର ଦେଶରେ ପ୍ରସାର କରିଥିଲା । ଏହାଦ୍ୱାରା ଆଫ୍ରିକା, ରୋମ୍ ଓ ଏସିଆ ମହାଦେଶର ଅନେକ ଦେଶରେ ଓଡ଼ିଆ ସଂସ୍କୃତିର ପ୍ରସାର ଘଟିଥିଲା । କର୍ପୂର ଉଡିଯାଇଥିଲେ ସୁଦ୍ଧା କନା ଅଛି । ଆମର ପ୍ରାଚୀନ ନୌବାଣିଜ୍ୟର ସ୍ମୃତି ହେଉଛି ଆଜିର ବାଲିଯାତ୍ରା ଓ ଖୁଦୁରୁକୁଣୀ ଓଷା ।

---

୭୦, ଲକ୍ଷ୍ମୀବିହାର, ଫେଜ୍-୧
ଭୁବନେଶ୍ୱର-୭୫୧୦୧୮

# କବି ରମାକାନ୍ତଙ୍କ କବିତାରେ ମାନବିକ ଚେତନା

**ଗୁରୁକଲ୍ୟାଣ ମହାପାତ୍ର**

'ଯେଉଁଠାରେ ଓହ୍ଲାଇଲେ ........... ସେହିଠାରେ ତୁମ ଆଲିଙ୍ଗନ । 'ଆଃ! କି ଚମତ୍କାର ପଦ ଇଏ 'ଜହ୍ନ ରାତି' କବିତାରେ ! କବି ରମାକାନ୍ତ ରଥଙ୍କ ରଚିତ ଏହି କବିତାର ଉପରୋକ୍ତ ପଦଟି ମୋତେ ଛାତ୍ରାବସ୍ଥାରେ ହିଁ ଖୁବ୍ ଆନନ୍ଦିତ କରିଥିଲା । ଏବେ ବି ଏହି ପଦଟି ମୋତେ ଆଚ୍ଛନ୍ନ କରିଥାଏ । କିଏ କହନ୍ତି ଯେ ତାଙ୍କ କବିତାରେ ମୃତ୍ୟୁ ଚେତନା ଅଧିକ ବୋଲି ? ମାନବିକ ଚେତନାରେ ତାଙ୍କର କବିତାଗୁଡ଼ିକ ଖୁବ୍ ଉଚ୍ଚକୋଟୀର । ଦେହରୁ ଦେହାତୀତ ଆଡ଼କୁ ଗତି କରି ତାଙ୍କର କବିତା ସବୁ ଅଦ୍ୱିତୀୟ ଓ ଅନୁପମ ବୋଲି ମନେ ହୋଇଥାଏ ।

ଆଗେ କବିତା ସବୁ ଛନ୍ଦୋବଦ୍ଧ ଥିଲା । ମାତ୍ର ରମାକାନ୍ତଙ୍କ ଗଦ୍ୟ କବିତା ଛନ୍ଦଯୁକ୍ତ ନୁହେଁ । ତାଙ୍କ କବିତାର ପ୍ରତ୍ୟେକ ଶବ୍ଦ କିନ୍ତୁ ଅତି ପ୍ରଭାବଶାଳୀ ଓ ଏକ ଅନ୍ତର୍ନିହିତ ଛନ୍ଦ ପାଠକମାନଙ୍କୁ ବିମୋହିତ କରିଥାଏ । ଛାତ୍ରାବସ୍ଥାରେ ତାଙ୍କର 'ଲଣ୍ଠନ' ନାମକ ଏହି କବିତା ଆମ ପାଠ୍ୟକ୍ରମରେ ଥିଲା । ଭୁବନେଶ୍ୱରର ଆଞ୍ଚଳିକ ଶିକ୍ଷା ପ୍ରତିଷ୍ଠାନରେ ବି.ଏ. ପଢୁଥିବା ବେଳେ ଆମକୁ ଆଧୁନିକ ସାହିତ୍ୟ ପଢ଼ାଉଥିବା ଡକ୍ଟର ଅଭିନ୍ନ ସାହୁ ଏବେ ବି ଆମ ଗହଣରେ ଅଛନ୍ତି । ସେ ଏହି 'ଲଣ୍ଠନ' କବିତାଟିକୁ ଖୁବ୍ ସୁନ୍ଦର ଭାବେ ପଢ଼ାଉ ଥିଲେ । ଏବର ମନୁଷ୍ୟର ସ୍ଥିତି ସହିତ ଆଧୁନିକତାର ସଂଘାତ ଓ ସଂଘର୍ଷକୁ ସେ ତୁଳନା କରୁଥିଲେ ସଦୃଷ୍ଟାନ୍ତ ।

ଆଧୁନିକ ଓଡ଼ିଆ ସାହିତ୍ୟରେ କବିବର ରାଧାନାଥ ରାୟଙ୍କ କାବ୍ୟମାନଙ୍କରେ ବିଷୟ ବସ୍ତୁ ଥିଲା ଅତୀତର ରାଜା ରାଜୁଡ଼ାମାନଙ୍କ କାହାଣୀ । ମୁକ୍ତଛନ୍ଦରେ ଲିଖିତ ତାଙ୍କର 'ଅମର୍ଷିବାଣୀ' କାବ୍ୟଟି ଅବଶ୍ୟ ଭିନ୍ନ ଧରଣର । ମାତ୍ର ରାଧାନାଥଙ୍କ ପରବର୍ତ୍ତୀ କାଳରେ ବଙ୍ଗଳାର କବିଗୁରୁ ରବୀନ୍ଦ୍ରନାଥଙ୍କ ପ୍ରଭାବରୁ ମୁକ୍ତ ରହି ପୁରାତନ ଓ ଆଧୁନିକ ସାହିତ୍ୟରେ ଏକ ସାର୍ଥକ ସମନ୍ୱୟ ଘଟାଇଥିଲେ କାନ୍ତକବି ଲକ୍ଷ୍ମୀକାନ୍ତ ମହାପାତ୍ର । ତାଙ୍କ ପରବର୍ତ୍ତୀ ସମୟରେ କବି ସଚ୍ଚି ରାଉତରାୟ, ନିତ୍ୟାନନ୍ଦ ମହାପାତ୍ର ଓ ଅନନ୍ତ ପଟ୍ଟନାୟକ ପ୍ରଭୃତି ଉଭୟ ଛନ୍ଦଯୁକ୍ତ ଓ ଛନ୍ଦମୁକ୍ତ କବିତା ରଚନା କରି ବିଭିନ୍ନ ପରୀକ୍ଷା ନିରୀକ୍ଷା ଜରିଆରେ ସଫଳ ହୋଇଥିଲେ ଏବଂ ଏମାନଙ୍କ ପରବର୍ତ୍ତୀ ସମୟରେ କବି ରମାକାନ୍ତ ରଥ, କବି ସୀତାକାନ୍ତ ମହାପାତ୍ର ଓ କବି ଗୁରୁପ୍ରସାଦ ମହାନ୍ତି କବିତା କ୍ଷେତ୍ରକୁ ଅବତରଣ କରି ଆମ କବିତାକୁ ଅଧିକ ଋଦ୍ଧିମନ୍ତ କରିଥିଲେ । ମାତ୍ର କବି ରମାକାନ୍ତ ରଥ ତାଙ୍କର ଅଦ୍ଭୁତ ଭାବ, ଭାଷା ଓ ଶୈଳୀରେ ଆମମାନଙ୍କ ପରି ତତ୍କାଳୀନ ତରୁଣ କବିମାନଙ୍କ ଉପରେ ସତୁରୀ ଦଶକରେ ଗଭୀର ପ୍ରଭାବ ପକାଇ ପାରିଥିଲେ । ଅବଶ୍ୟ ସୀତାକାନ୍ତ ମହାପାତ୍ର, ଜଗନ୍ନାଥ ପ୍ରସାଦ ଦାସ, ସୌଭାଗ୍ୟ କୁମାର ମିଶ୍ର, ରାଜେନ୍ଦ୍ର କିଶୋର ପଣ୍ଡା, ପ୍ରମୋଦ କୁମାର ମହାନ୍ତି ଓ ପରବର୍ତ୍ତୀ କାଳରେ ରବି ନାରାୟଣ ସେନାପତି ପ୍ରଭୃତି କବିତା କ୍ଷେତ୍ରରେ ସୁନାମ ଅର୍ଜନ

କରିଥିଲେ ହେଁ ରମାକାନ୍ତଙ୍କ କବିତା ସର୍ବାଧିକ ପ୍ରଭାବଶାଳୀ ବୋଲି ସେତେବେଳେ ମନେ ହୋଇଥିଲା ।

କବି ରମାକାନ୍ତଙ୍କର ପ୍ରଥମ କବିତା ସଂକଳନ 'କେତେ ଦିନର' ୧୯୬୯ରେ ପ୍ରକାଶ ପାଇ ଚର୍ଚ୍ଚାର ପରିଧିକୁ ଆସିଥିଲା । ତତ୍‌କାଳୀନ ରାଭେନ୍ସା ମହାବିଦ୍ୟାଳୟରେ ସେ ଭଲ ଛାତ୍ର ଥିଲେ ଏବଂ ଇଂରାଜୀ ଭାଷା ଓ ସାହିତ୍ୟରେ ଏମ୍.ଏ. ମଧ୍ୟ ପାସ୍ କରିଥିଲେ । ଛାତ୍ରାବସ୍ଥାରେ ସେ ସେତେବେଳେର 'ପ୍ରଜାତନ୍ତ୍ର' ସମ୍ବାଦପତ୍ରର 'ରବି ବାସରୀୟ ସାହିତ୍ୟ ପୃଷ୍ଠା' କିମ୍ବା 'ଝଙ୍କାର' ମାସିକ ପତ୍ରିକାରେ କବିତା ଲେଖି ଓଡ଼ିଆ ସଚେତନ ପାଠକଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ । ପ୍ରକୃତରେ କବି ରମାକାନ୍ତ ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ସ୍ୱତନ୍ତ୍ର ସମ୍ମାନର ଅଧିକାରୀ । ସେ ସର୍ବଭାରତୀୟ ପ୍ରଶାସନିକ ସେବାରେ ଗୁରୁତ୍ୱପୂର୍ଣ୍ଣ ପଦବୀରେ ରହି ଆସିଥିଲେ ମଧ୍ୟ କବିତା ରଚନାରୁ ନିଜକୁ ଦୂରେଇ ରଖି ପାରିନଥିଲେ । ନିଜସ୍ୱ ଭାବ, ଭାଷା ଓ ଶୈଳୀରେ ସେ ତାଙ୍କ ସମସାମୟିକ ଅନେକ କବିଙ୍କଠାରୁ ସ୍ୱତନ୍ତ୍ର ଥିଲେ । ସେ ଅନ୍ୟତମ ଧାରା ପ୍ରବର୍ତ୍ତକ ଥିଲେ ବୋଲି ମଧ୍ୟ କୁହାଯାଇପାରେ । ତାଙ୍କର ପ୍ରାୟ ସମସ୍ତ କବିତା ଓ କାବ୍ୟ ଗୋଟିଏ ଗୋଟିଏ ସଫଳ ସୃଷ୍ଟି । ସବୁ କବିଙ୍କ ଭାଗ୍ୟରେ ଏପରି ଘଟି ନଥାଏ । ତାଙ୍କର ଦୀର୍ଘ କବିତାର ସମାହାର ହେଉଛି 'ଶ୍ରୀ ରାଧା' ବା 'ଶ୍ରୀ ପଳାତକ' । କବି ନିଜେ ସ୍ୱୀକାର କରିଛନ୍ତି, 'ଶ୍ରୀ ରାଧା' ଲେଖିବାକୁ ତାଙ୍କୁ ପ୍ରାୟ ପାଞ୍ଚ/ଛଅ ବର୍ଷ ଲାଗିଥିଲା । ସେହିପରି 'ଶ୍ରୀ ପଳାତକ' କାବ୍ୟ ରଚନା ବେଳେ, ତାହା କବିଙ୍କୁ ପ୍ରାୟ ସାତ/ଆଠ ବର୍ଷ ଧରି ଆଚ୍ଛନ୍ନ କରି ରଖିଥିଲା । ଷାଠିଏ ଦଶକରୁ ଜଣେ କବିଙ୍କର ସୃଷ୍ଟି ଏଯାବତ୍ ପାଠକମାନଙ୍କୁ ଆକୃଷ୍ଟ କରି ରଖିଥିବା ପ୍ରକୃତରେ ବଡ଼ କଥା ।

୧୯୬୪ରେ କବି ନିତ୍ୟାନନ୍ଦ ମହାପାତ୍ରଙ୍କ କାବ୍ୟ 'କବି ପ୍ରିୟାସୁ'ରେ ବୈଷ୍ଣବୀୟ ପ୍ରେମର ଚିତ୍ର ଯେପରି ହୃଦୟସ୍ପର୍ଶୀ ବୋଲି ମନେ ହୋଇଛି । କବି ରମାକାନ୍ତ ରଥଙ୍କ ରଚିତ 'ଶ୍ରୀ ରାଧା' କାବ୍ୟ ବା 'ଶ୍ରୀ ପଳାତକ' କାବ୍ୟ ସେହି ଧରଣର କାବ୍ୟ ବୋଲି ମଧ୍ୟ କୁହାଯାଇପାରେ ।

କବି ନିତ୍ୟାନନ୍ଦ ମହାପାତ୍ର ଓ କବି ରମାକାନ୍ତ ରଥ, ଉଭୟଙ୍କ କାବ୍ୟ ଓ କବିତା ଉଚ୍ଚକୋଟୀର । ପ୍ରଥମ ଜଣକ ବରିଷ୍ଠ ଓ ଅନ୍ୟ ଜଣେ କନିଷ୍ଠ । ପ୍ରଥମ ଜଣକ ସକ୍ରିୟ ରାଜନୀତିରେ କ୍ଷମତାସୀନ ହୋଇ କ୍ୟାବିନେଟ୍ ମନ୍ତ୍ରୀ ହୋଇଥିଲେ ହେଁ ତାଙ୍କୁ ଗର୍ବ ବା ଅହଂକାର ସ୍ପର୍ଶ କରିପାରିନଥିଲା । ଅନୁରୂପ ଭାବେ ଦ୍ୱିତୀୟ ଜଣକ ପ୍ରଶାସନିକ କ୍ଷେତ୍ରରେ ଶୀର୍ଷ ସ୍ଥାନକୁ ଯାଇଥିଲେ ହେଁ ତାଙ୍କୁ ଗର୍ବ ବା ଅହଂକାର ସ୍ପର୍ଶ କରିନଥିଲା ।

୧୯୮୨ ମସିହାରେ କବି ରମାକାନ୍ତଙ୍କର 'ସଚିତ୍ର ଅନ୍ଧାର' କବିତା ଗ୍ରନ୍ଥଟି ପ୍ରକାଶ ପାଇଥିଲା । ଶ୍ରୀ ରଥ ପ୍ରତ୍ୟେକ ଗ୍ରନ୍ଥର ଆରମ୍ଭରେ ଗ୍ରନ୍ଥ ସଂପର୍କରେ ସୂଚନା ପ୍ରଦାନ ନ କରି ପ୍ରାୟ ଗ୍ରନ୍ଥର ଶେଷରେ ସୂଚନା ପ୍ରଦାନ କରିଥାନ୍ତି । ଚିରାଚରିତ ପ୍ରଥାକୁ ନକଲ ନ କରି ସେ ନିଆରା ଢଙ୍ଗରେ ଏହା କହିଥାନ୍ତି । 'ସଚିତ୍ର ଅନ୍ଧାର' ଗ୍ରନ୍ଥରେ ସନ୍ନିହିତ କବିତାସବୁର ଶେଷରେ ତେଣୁ 'ପୃଷ୍ଠବନ୍ଧ' ଶିରୋନାମାର ଆରମ୍ଭରୁ ସେ ଯାହା ଉଲ୍ଲେଖ କରିଥିଲେ, ତାହା ଏହିପରି – 'ସପ୍ତମ ଋତୁ' ଲେଖିବା ପରେ ଅନେକ ସମୟରେ କବିତା ଲେଖିବାରୁ ନିବୃତ୍ତ ହେବାକୁ ଇଚ୍ଛା ହୋଇଛି । ତା'ସତ୍ତ୍ୱେ ମୂଳତଃ ଦୁଇଟି କାରଣ ଯୋଗୁଁ ମୁଁ ଅଦ୍ୟାପି କବିତା ଲେଖୁଛି । ପ୍ରଥମତଃ କବିତା ଲେଖା ଆପଣାଛାଏଁ ବନ୍ଦ ହେବ ନିଶ୍ଚୟ ଏବଂ ଯାହା ଅନିବାର୍ଯ୍ୟ, ତା' ପାଇଁ ଯୋଜନାବଦ୍ଧ ଉଦ୍ୟମର ଆବଶ୍ୟକତା କ'ଣ ? ଦ୍ୱିତୀୟତଃ, ଜୀବନର ହିସାବ ନିକାଶ କଲାବେଳେ ମୋ ଉପରେ କିଛି ବକେୟା ପାଉଣା ନ ରହୁ ବୋଲି ଚେଷ୍ଟା କରିବା ଫଳରେ କିଛି ଲେଖି ହୋଇଯାଏ, ଯଦିଓ କବିତା ଲେଖିବା ସହିତ ଏକ ଋଣମୁକ୍ତ ଅବସ୍ଥାର ସମ୍ପର୍କ କ'ଣ ମୁଁ ତାହା ଠିକ୍ ବୁଝାଇ ପାରିବି ନାହିଁ । ନିଜର ପରମାୟୁ ଯେତେ ଯେତେ ଅତିକ୍ରାନ୍ତ ହୋଇ ଯାଉଥାଏ, ନିଜେ ଦେଣାଦାର ହୋଇଯିବାର ଭୟ ସେତେ ସେତେ

ମାଡ଼ି ପଡୁଥାଏ ।’ ............ ଜଣେ ଉଚ୍ଚକୋଟୀର କବି ଓ ଦାର୍ଶନିକ ନ ହେଲେ ଏପରି ଜୀବନଚର୍ଯ୍ୟାର ଚିତ୍ର ସହଜରେ ବ୍ୟକ୍ତ କରିପାରିବେ ନାହିଁ ।

କେନ୍ଦ୍ରୀୟ ସାହିତ୍ୟ ଏକାଡ଼େମୀର ସଭାପତି ପଦବୀରେ ରହିବାରେ ଶ୍ରୀ ରମାକାନ୍ତ ରଥ ହେଉଛନ୍ତି ପ୍ରଥମ ଓଡ଼ିଆ । ତାଙ୍କ ପରେ ମଧ୍ୟ ଅନ୍ୟ କୌଣସି ଓଡ଼ିଆ ସେ ସ୍ତରକୁ ଯାଇ ନଥିବାରୁ ଆମେ ଦୁଃଖ କରୁନାହୁଁ । ମାତ୍ର ଯେତିକି ସମ୍ମାନ ସେ ଓଡ଼ିଶାରେ ଜଣେ ଲବ୍ଧପ୍ରତିଷ୍ଠ କବି, ସୁଦକ୍ଷ ପ୍ରଶାସକ, ଓଡ଼ିଆ ସାହିତ୍ୟ ଓ ସଂସ୍କୃତି କ୍ଷେତ୍ରରେ ଜଣେ ଆଗ ଧାଡିର ବ୍ୟକ୍ତି ଭାବରେ ପାଇବା କଥା, ତାହା ସେ ପାଇ ପାରିନାହାନ୍ତି ବୋଲି ମୋର ମନେ ହୋଇଥାଏ । କେନ୍ଦ୍ରୀୟ ସାହିତ୍ୟ ଏକାଡ଼େମୀର ସଭାପତି ଦାୟିତ୍ୱ ନେବା ବେଳେ ତାଙ୍କୁ ପଚରାଗଲା, ‘ଆପଣ ଓଡ଼ିଆ ସାହିତ୍ୟ ପାଇଁ କ’ଣ କରିବେ?’ ସେ କହିଲେ, ‘ସବୁ ଆଞ୍ଚଳିକ ଭାଷାର ଉନ୍ନତି ମୋର ଲକ୍ଷ୍ୟ ।’ ପ୍ରକୃତରେ ତାଙ୍କର ଏପରି ବକ୍ତବ୍ୟ ଭବିଷ୍ୟତ ପିଢ଼ି ପାଇଁ ଉଦାହରଣ ସୃଷ୍ଟି କରିବ, ଏଥିରେ ସନ୍ଦେହ ନାହିଁ । ଓଡ଼ିଶାର ପୁରାତନ ରାଜଧାନୀ କଟକଠାରେ କବି ରମାକାନ୍ତ ରଥ ୧୯୩୪ ମସିହା ଡିସେମ୍ବର ମାସ ୧୩ ତାରିଖରେ ଜନ୍ମଗ୍ରହଣ କରିଥିଲେ । ଏହି ପ୍ରଖ୍ୟାତ କବି ପୁଣି ଏକ ସାକ୍ଷାତ୍‌କାରରେ କହିଥିଲେ– ‘ଦିନ ଆସିବ, ଏ ଆକାଶ ଥିବ, ତାରା ଥିବ, ମୁଁ ନଥିବି ।’ ଚମତ୍କାର । କେତେ ବାସ୍ତବତା ନାହିଁ ଏ କଥା ପଦକରେ ସତ !

କବି ରମାକାନ୍ତ ସାହିତ୍ୟ ଲାଗି ‘ପଦ୍ମଭୂଷଣ’ ଉପାଧି ଲାଭ କରିଛନ୍ତି । ‘ସରସ୍ୱତୀ’ ପୁରସ୍କାର ମଧ୍ୟ ପାଇ ପାରିଛନ୍ତି । ପାଇନାହାନ୍ତି କିନ୍ତୁ ଜ୍ଞାନପୀଠ ପୁରସ୍କାର । ସେ ଏହି ପୁରସ୍କାର ନ ପାଇ ମଧ୍ୟ ଛୋଟ ହୋଇଯାଇ ନାହାନ୍ତି । ବରଂ ‘ଜ୍ଞାନପୀଠ’ ସଂସ୍ଥା ପୁରସ୍କାର ଦେଇଥିଲେ ତାଙ୍କୁ, ସେ ସଂସ୍ଥାର ମର୍ଯ୍ୟାଦା ବୃଦ୍ଧି ପାଇଥାଆନ୍ତା । କବି ରମାକାନ୍ତଙ୍କ ସୃଷ୍ଟି ଓ ଦୃଷ୍ଟି ଆମ ଓଡ଼ିଶା ପାଇଁ ଗୌରବ ଆଣି ଦେଇଛି । ଏହା ଆମମାନଙ୍କୁ ସ୍ୱୀକାର କରିବାକୁ ପଡ଼ିବ ହିଁ ପଡିବ । ମୁଁ ତାଙ୍କର ଦୀର୍ଘ ଓ ନିରାମୟ ଜୀବନ କାମନା କରୁଛି ।

ଭୁବନେଶ୍ୱର



# ଶକ୍ତି ଉପାସନାରେ ଗଞ୍ଜାମର ଶକ୍ତିପୀଠ

**ଡକ୍ଟର ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି**

ମଣିଷ ଜୀବନ ନିର୍ବାହ କାଳରେ ବହୁ ଦୁଃଖ ଶୋକ ବାଧା ବିଘ୍ନ ଦେଇ ଗତି କରିବାକୁ ପଡ଼ିଥାଏ । ବହୁ କଷ୍ଟ ଦୁଃଖକୁ ନିଜ ଦେହରେ ଲିଭାଇ ତା'ର ସଂସାରକୁ ଆଗକୁ ଚଳାଇ ନିଏ । ଏହି ସମୟରେ ବେଳେବେଳେ ଅଣନିଃଶ୍ୱାସୀ ହୋଇଯାଇ ତା'ଠାରୁ ଊର୍ଦ୍ଧ୍ୱ ଚେତନା ସମ୍ବଳିତ କୌଣସି ଏକ ଦିବ୍ୟ ଚେତନା ସଂମ୍ଭୂତ ଐଶ୍ୱରୀୟ ଶକ୍ତିକୁ ଆରାଧନା କରିବାକୁ ଚାହେଁ ବା କରେ ମଧ୍ୟ । ତା'ଦ୍ୱାରା ନିଜ ମନ ଉପରେ ଥିବା ଭାର, ବୋଝ କିବା ଦାୟିତ୍ୱ ଜ୍ଞାନରୁ କେତେକାଂଶରେ ଲାଘବ କରିଥାଏ । ସେ ଭାବେ କୌଣସି ସୁବିଧା ଅସୁବିଧା ବେଳେ ଭଗବାନ ଅଛନ୍ତି– ତା'ର ଦୁଃଖ ବୁଝିବାକୁ । ଈଶ୍ୱର, ଭଗବାନ, ଠାକୁର ଏଭଳି ବିଭିନ୍ନ ନାମରେ ଆରାଧନା କରି ବସେ ତା'ର ମନର ଠାକୁରଙ୍କୁ । ନିଜ ପରିବାର, ଘର ସଂସାର ଭଳି ସେ' ଆରମ୍ଭ କରିଦିଏ ଠାକୁରଙ୍କ ଦିବ୍ୟ–ଚେତନା ସମ୍ବଳିତ ଈଶ୍ୱରଙ୍କ ସଂସାରକୁ । ସବୁଠି ଦୃଶ୍ୟମାନ ଦୁଇଟି ଐଶ୍ୱରୀୟ ସତ୍ତା– ପ୍ରକୃତି ଓ ପୁରୁଷ । ପ୍ରକୃତି ଓ ପୁରୁଷଙ୍କ ସମ୍ମିଳନୀରେ ଏ ସୃଷ୍ଟି, ଏ ସମ୍ଭାବନାର ପ୍ରକ୍ରିୟା । ପ୍ରକୃତି ରୂପିଣୀ ଦେବୀ ମା' ଠାକୁରାଣୀ ଓ ପୁରୁଷ ହିଁ ଏ ସୃଷ୍ଟିର ସର୍ବନିୟନ୍ତା ଈଶ୍ୱର, ଭଗବାନ୍, ବିଷ୍ଣୁ, ନାରାୟଣ ଏମିତି କୌଣସି ନା କୌଣସି ନାମର ଏକ ଆକାର ନିରାକାର ରୂପୀ ବ୍ରହ୍ମଚେତନା ଅବା ଆମ ଆରାଧ୍ୟର ଠାକୁର । ମଣିଷ ସେମାନଙ୍କୁ ଠାବ କରେ ତା'ର ମନ ଜ୍ଞାନରେ, ପରମ ପିତା ଓ ମାତା ଜ୍ଞାନରେ । ମାତା–ମା' କି କୋମଳ ଅଭିବ୍ୟକ୍ତି । ମାତାଙ୍କ ସ୍ୱରୂପ ଏ ସୃଷ୍ଟିର ଗର୍ଭଧାରୀ, ପ୍ରସବକାରୀ–ମା' ଜନନୀ । ଆଉ ତାଙ୍କ ବ୍ୟତୀତ ଏ ସୃଷ୍ଟିର ସମସ୍ତେ ତାଙ୍କର ସନ୍ତାନ । ସେ ବିଶ୍ୱରୂପିଣୀ ମାୟା ଓ ଶକ୍ତି ରୂପିଣୀ କ୍ରୀୟାଶୀଳା । ତାଙ୍କରି ଉପସ୍ଥିତି ହିଁ ଏ ସଂସାରକୁ ଜୀବନ ଶକ୍ତି ଯୋଗାଇଛି ନିରନ୍ତର । ଦେବୀ ମା' ଠାକୁରାଣୀ– ସକଳ ଭୂତ, ଜୀବ, ଜଡ଼ାଦିର ଶକ୍ତି– ସେ ଶକ୍ତି ରୂପିଣୀ । ଆମମାନଙ୍କର ଜୀବନ ଶକ୍ତି ମାତୃମୟୀ ଦେବୀ ସର୍ବଦୁଃଖ ହାରିଣୀ ଦେବୀ ମା' ହେଉଛନ୍ତି ସିଏ । ବିଶ୍ୱର ସବୁଠାରେ ତାଙ୍କର ସ୍ଥିତି । ବିଭିନ୍ନ ସଂସ୍କୃତି, ଭାଷା, ସାହିତ୍ୟ ଇତିହାସରେ କେବଳ ଆମ ଭାରତବର୍ଷ କାହିଁକି ସମସ୍ତ ଦେଶ ବିଦେଶରେ ବିଭିନ୍ନ ରୂପ, ବିଭିନ୍ନ ନାମରେ ସେହି ମାତୃଶକ୍ତିଙ୍କ ଉପାସନା ପାରମ୍ପରିକ ଭାବେ ଚଳି ଆସୁଥିବା ଦେଖାଯାଏ । ଠାକୁରାଣୀଙ୍କ ଅନେକ ଲୌକିକ ନାମ କେଉଁଠି କରୁଣାଇ ତ କେଉଁଠି ବିରଜାଇ, ଏମିତି ଅନେକ ପରିଚୟ ।

ଗଞ୍ଜାମରେ ଜଳ, ପାହାଡ଼, କାଠ, ପଥର, ନଦୀ, ପର୍ବତ, ମାଟି, ପାଣି, ପବନ ସବୁ କିଛି ସେହି ମାତୃମୟୀ ଶକ୍ତି ରୂପିଣୀ ଦେବୀଙ୍କର ଶକ୍ତିରୂପ । ଆଦିମ ମଣିଷ ବଣ ଜଙ୍ଗଲ, ପାହାଡ଼ ପର୍ବତକୁ ନିଜ ଆଶ୍ରୟସ୍ଥଳ ରୂପେ ବିବେଚନା କରି ଚଳି ଆସୁଥିଲା । ସମସ୍ତ ଭୂଭାଗ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ଭାବରେ ବିଭିନ୍ନ ଆଦିବାସୀ ପୂଜିତ ଠାକୁର ଠାକୁରାଣୀମାନଙ୍କୁ ଉପାସନା କରି ସେମାନଙ୍କୁ ପ୍ରତିଷ୍ଠା

କରିଥିଲା ବୃକ୍ଷ କୋରଡ଼ରେ, ପର୍ବତ ଖୋଲରେ, ସମୁଦ୍ର ଓ ନଦୀ ବେଳାରେ । ଏଭଳି ଭାବରେ ପରବର୍ତ୍ତୀ କାଳରେ ଠାକୁର ଠାକୁରାଣୀମାନଙ୍କ ଉପାସନାକୁ ସର୍ବସାଧାରଣ ଗ୍ରହଣ କରିନେଲେ । ଆଜି ସେ ସବୁ ଶକ୍ତିପୀଠ ଦେଶର ବିଭିନ୍ନ ସ୍ଥାନରେ ପ୍ରାଚୀନ ଦେବୀ ପୀଠ ଭାବରେ ଉପାସିତ । ବେଦ, ପୁରାଣ, ଉପନିଷଦ ଆଦି ଗ୍ରନ୍ଥରେ ଶକ୍ତି ଉପାସନାର ବହୁ ବର୍ଣ୍ଣନା ରହିଛି । ସେସବୁ ପ୍ରାଚୀନ ଗ୍ରନ୍ଥର ପାଠ୍ୟସ୍ତୋତ୍ର, ଶ୍ଳୋକ, ଜଣାଣ, ବନ୍ଦନା ଆଦିକୁ ପାଥେୟ କରି ଆଜି ଆମ ଶକ୍ତି ମାତୃକାଙ୍କ ପୂଜା ଅନୁସୃତ ହୋଇ ଆସୁଅଛି । ଏବେ ଗଂଜାମ ଉପଖଣ୍ଡରେ ପୂଜା ପାଇ ଆସୁଥିବା ପ୍ରାଚୀନ ମହିମାମୟ ଶକ୍ତିପୀଠମାନଙ୍କ ବିଷୟରେ କିଛି ଜାଣିବା ଓ ସମସ୍ତ ଶକ୍ତିତୀର୍ଥକୁ ଏକତ୍ରିତ କରି ସବିଶେଷ ବିବରଣୀ ସହ ଏକ ଗବେଷଣାଧର୍ମୀ ନିବନ୍ଧଟିଏ ପ୍ରସ୍ତୁତ କରିବା ।

### ଗଞ୍ଜାମର ମା’ ଦୁର୍ଗାଦେବୀ

ଗଞ୍ଜାମ କଳିଙ୍ଗର ନୌବାଣିଜ୍ୟ ସମୃଦ୍ଧ ଏକ ପ୍ରାଚୀନ ବନ୍ଦର । ପବିତ୍ର ନଦୀ ଋଷିକୁଲ୍ୟାର ପତ୍ତନରେ ଏହି ବନ୍ଦର ଭୂମି ଅବସ୍ଥିତ । ବର୍ତ୍ତମାନ ଏହାକୁ ନେଇ ଜିଲ୍ଲା ନାମିତ ଓ ଏଠାରେ ଏକ ପ୍ରାଚୀନ ବନ୍ଦର ସହର ଗଢ଼ି ଉଠିଛି । ଏଠାକାର ଆରାଧ୍ୟା ଦେବୀ ହେଉଛନ୍ତି ଦୁର୍ଗାଦେବୀ । ଇତିହାସ ଓ କିମ୍ବଦନ୍ତୀ କହେ ଯେ, ମା’ ଦୁର୍ଗାଦେବୀ ହେଉଛନ୍ତି ଖ୍ରୀ.ପୂ. କାଳରୁ ଉପାସିତ ହୋଇ ଆସୁଥବା ପାଲୁରୁ ଗଡ଼ର ଇଷ୍ଟଦେବୀ । ମୋଗଲ ଶାସନ କାଳରେ ହିନ୍ଦୁ ମନ୍ଦିରର ଦେବଦେବୀଙ୍କ ଉପରେ ବିଦ୍ୱେଷ ଭାବ ବହି କଳାପାହାଡ଼ ଦ୍ୱାରା ଏହି ଦୁର୍ଗା ମୂର୍ତ୍ତିଙ୍କୁ ଭାଙ୍ଗି ସମ୍ମିଳିତ ସାଗର ମଧ୍ୟକୁ ଫିଙ୍ଗି ଦିଆଯାଇଥିଲା । କିଛି ଦିନ ପରେ ଋଷିକୁଲ୍ୟା ନଦୀ ବନ୍ଦରର ସମୁଦ୍ରବେଳାରୁ କେହି ଜଣେ ଶତପଥି ବ୍ରାହ୍ମଣଙ୍କ ଦ୍ୱାରା ଉଦ୍ଧାର କରାଯାଇ ଗୋଟିଏ ବୃକ୍ଷ ମୂଳରେ ରଖି ପୂଜା କରାଯାଉଥିଲା । ପରେ ମା’ଙ୍କୁ ଗୋଟିଏ ମାଟି ଚାଳ ଘର ମଧ୍ୟରେ ରଖି ପୂଜା କରାଯାଉଥିଲା । ବର୍ତ୍ତମାନ ମା’ଙ୍କ ଭବ୍ୟ ମନ୍ଦିର ଗଂଜାମ ଗ୍ରାମ ମଧ୍ୟରେ ନିର୍ମାଣ କରାଯାଇ ଏହି ପ୍ରାଚୀନ ଶକ୍ତି ମାତୃକାଙ୍କୁ ପୂଜା କରାଯାଉଛି । ଚୈତ୍ର ଓ ଆଶ୍ୱିନ ମାସରେ ମା’ ଦୁର୍ଗା ଦେବୀଙ୍କର ପୂଜାର୍ଚ୍ଚନା ସହ ବର୍ଷର ଅନ୍ୟାନ୍ୟ ବିଶେଷ ଦିନମାନଙ୍କରେ ମା’ଙ୍କ ଉତ୍ସବ ପାଳିତ ହେଉଛି । ଗଂଜାମ ସହରରେ ଏହି ମନ୍ଦିର ଥିବା ବସତିକୁ ଦୁର୍ଗାଦେବୀ ସାହି ଭାବରେ ଚିହ୍ନିତ କରାଯାଇଛି ।

### ମା’ କନ୍ଧୁଣୀ ଦେବୀ

ବ୍ରହ୍ମପୁରରୁ ଛତ୍ରପୁର ଯିବା ପୁରୁଣା ରାସ୍ତା କଡ଼ରେ ପୋଲ ପାଖାପାଖି ଅଞ୍ଚଳରେ ମା’ କନ୍ଧୁଣୀଦେବୀଙ୍କ ମନ୍ଦିର । ମା’ଙ୍କ ତ୍ରିନେତ୍ର ଶୋଭିତ ମସ୍ତକ, ଉଜ୍ଜ୍ୱଳ କିରୀଟ ଭୂଷଣ ସହିତ ଏଠାରେ ଏକ ଛୋଟ ମନ୍ଦିରରେ ପୂଜା ପାଆନ୍ତି । ଆଦିବାସୀ କନ୍ଧମାନଙ୍କ ଉପାସିତ ଦେବୀ ଅତି ପ୍ରାଚୀନ । ପଚାଶ ବର୍ଷ ପୂର୍ବେ ସମସ୍ତ ବସ୍ ଯାତ୍ରୀ ମା’ଙ୍କର ଦର୍ଶନ କରିବାର ସୁଯୋଗ ପାଉଥିଲେ । ବର୍ତ୍ତମାନ ନୂତନ ଜାତୀୟ ରାଜପଥ ପ୍ରଶସ୍ତିକରଣ ଯୋଗୁଁ ଏହି ରାସ୍ତା ବିଶେଷ ବ୍ୟବହାରରେ ନ ଆସିବା ଯୋଗୁଁ ମା’ ନିରୋଳା ହୋଇ ପଡ଼ିଛନ୍ତି । ତଥାପି ପର୍ବ ଦିନ ଦଶହରାଦି ବେଳେ ମା’ଙ୍କର ପୂଜା ସ୍ୱତନ୍ତ୍ର ଭାବେ ହଜାର ହଜାର ଭକ୍ତଙ୍କ ସମାଗମରେ କରାଯାଇଥାଏ । ମା’ଙ୍କ ମହିମା ସର୍ବତ୍ର ପ୍ରଚାରିତ ।

### ମା’ ସିଂହାସନୀ

ଦେବୀ ସିଂହାସନୀ ବୁଗୁଡ଼ାଠାରୁ ୨୫ କି.ମି. ଦୂରସ୍ଥ ଘଞ୍ଚ ଜଙ୍ଗଲ ମଧ୍ୟରେ ଥିବା କାଶିପଡ଼ା ଗାଁ ଠାରେ ଅବସ୍ଥିତ । ବ୍ରହ୍ମପୁରଠାରୁ ପ୍ରାୟତଃ ପଶ୍ଚିମ –ଉତ୍ତର କୋଣରେ ୧୦୦ କି.ମି. ଦୂରରେ ମା’ଙ୍କ ପୀଠସ୍ଥଳ । ମା’ଙ୍କ ପୀଠ ବନ ପର୍ବତ ଘେରା ଏକ ପ୍ରାକୃତିକ ସୌନ୍ଦର୍ଯ୍ୟ ବିମଣ୍ଡିତ ଅଞ୍ଚଳ । ନିକଟରେ ଝାଡ଼ଖଣ୍ଡ, ଖନ୍ଦାଳ, ବର୍ବରା, ଉଡ଼ନେଇ, ଭାଲୁବଲି, ଋଷିମୁଣ୍ଡିଆ, ଦାଣ୍ଡି ପାହାଡ଼, ଦମଦମା, ଗୁଡ଼ି ପାହାଡ଼, ବାଘରାମ, ଖଣ୍ଡାକର, ସୁନ୍ଦରୀ, ଝୁମୁଲା ପର୍ବତ ପ୍ରାୟତଃ ଉତ୍ତର, ଦକ୍ଷିଣ, ପୂର୍ବ, ପଶ୍ଚିମରେ ଘେରି ହୋଇ ରହିଛି । ମା’ ସିଂହାସନୀ ପର୍ବତର ଖୋଲରେ ଦୃଶ୍ୟମାନ । ପାଖରେ ଧନେଇ ନଦୀ ବରଡ଼ା ଆଡ଼କୁ

ପ୍ରବାହିତ ହେଉଛି । ଏହି ପୀଠ ଆଠଗଡ଼ ରାଜା ଗୋବିନ୍ଦଚନ୍ଦନ ଜଗଦ୍ଦେବଙ୍କ ସହ ଗଜପତି ମୁକୁନ୍ଦଦେବଙ୍କ ସ୍ମୃତି ସଂପର୍କକୁ ସାଇତି ରଖିଛି । ଲୋକମନରେ ବିଶ୍ୱାସ ଅଛି ଯେ, ଆଠଗଡ଼ର ଇଷ୍ଟ ରକ୍ଷକ ଭାବରେ ଦେବୀ ସିଂହାସନୀଙ୍କ ଅପାର କରୁଣା ହିଁ ପୁରୀର ଠାକୁର ରାଜାମାନଙ୍କୁ ବିଶେଷ କରି ଗଜପତି ମୁକୁନ୍ଦଦେବଙ୍କୁ ମୁସ୍‌ଲିମ୍ ଆକ୍ରମଣ କାଳରେ ସୁରକ୍ଷିତ ରଖିଥିଲା । ମା' ସିଂହାସନୀ ପୀଠର ମହିମା ସଂପର୍କରେ କିମ୍ବଦନ୍ତୀ ରହିଛି ଯେ, ମା'ଙ୍କ ମହିମା ଫଳରେ ଏଠାରେ ଜଣେ ଚାଷୀ ବଳଦ ବଦଳରେ ବାଘକୁ ଯୋଚି ଜମି କର୍ଷଣ କରିପାରୁଥିଲେ । ମା'ଙ୍କ ପ୍ରସିଦ୍ଧି ଜଣେ ତନ୍ତ୍ରଦେବୀ ଭାବରେ ରହିଛି ।

### ଗଙ୍ଗା ଚଣ୍ଡୀଦେବୀ

ଗଙ୍ଗା ଚଣ୍ଡୀଦେବୀଙ୍କର ଜଳଦେବୀ ଭାବରେ ପ୍ରଭୂତ ମାନ୍ୟତା ରହିଛି । ଗଙ୍ଗା ଚଣ୍ଡୀଦେବୀ, ଅତୀତର ପ୍ରାଚୀନ ଗୋପାଳପୁର ବନ୍ଦର ଅଞ୍ଚଳରେ ବିଭିନ୍ନ ଚଣ୍ଡୀ ଠାକୁରାଣୀମାନଙ୍କର ପୂଜା ପାଉଥିବା ଦେଖାଯାଏ । ସେମାନେ ହେଲେ ରାମଚଣ୍ଡୀ, ଗଙ୍ଗାଚଣ୍ଡୀ, ହରଚଣ୍ଡୀ, ମଙ୍ଗଳାଚଣ୍ଡୀ ଆଦି । ଗଙ୍ଗା ଚଣ୍ଡୀଦେବୀ ସମୁଦ୍ର ଦେବୀ ଭାବରେ ଗୋପାଳପୁର ବନ୍ଦରାଞ୍ଚଳରେ ବହୁ ପୁରାତନ କାଳରୁ ପୂଜା ପାଇ ଆସୁଛନ୍ତି । ଏହି ପୀଠ ବ୍ରହ୍ମପୁର-ଗୋପାଳପୁର ରାସ୍ତାରେ ଥିବା ଏକ ପର୍ବତ ଉପରେ ବିରାଜିତ । ଏଠାରେ ପାଖାପାଖି ତିନୋଟି ପର୍ବତ ରହିଥିବା ଦେଖାଯାଏ । ଏଥିରୁ ଗୋଟିଏ ହେଲା ଗଙ୍ଗାଚଣ୍ଡୀଙ୍କ ଉପାସନା ସ୍ଥଳ । ଦ୍ୱିତୀୟଟିରେ ଏକ ଶିବ ମନ୍ଦିର ରହିଥିବା ବେଳେ ତୃତୀୟ ପର୍ବତ ଉପରେ ମୁସ୍‌ଲିମ୍ ରାଜତ୍ୱ କାଳରେ ଜଣେ ସବ୍ ଡେପୁଟି ପ୍ରଶାସକ ମନ୍‌ସୁର ଅଲ୍ଲୀଙ୍କ ନିବାସସ୍ଥଳ, ତାଙ୍କ ସୈନ୍ୟ ସାମନ୍ତାଦି ରହୁଥିଲେ । ଏଣୁ ସେ ପର୍ବତକୁ ମନସୁର ଦୁର୍ଗ କୁହାଗଲା ଓ ତଦନୁଯାୟୀ ପ୍ରାଚୀନ ଗୋପାଳପୁର ବନ୍ଦର କିଛିଦିନ ପାଇଁ ମନସୁର କୋଟା (ଦୁର୍ଗ) ନାମରେ ନାମିତ ହୋଇଥିଲା । ମନସୁର ଅଲ୍ଲୀଙ୍କ ପୂର୍ବରୁ ଏହି ଅଞ୍ଚଳ ଜଣେ ହିନ୍ଦୁ ଜମିଦାରୀର ପ୍ରଶାସକଙ୍କ ଦ୍ୱାରା ଅଧିକୃତ ଥିଲା । ମନସୁର ଅଲ୍ଲୀ ତାଙ୍କୁ ଯୁଦ୍ଧରେ ଆକ୍ରମଣ କରି ବିଜୟ ଲାଭ କଲେ । ପ୍ରୋକ୍ତ ରାଜା ଏହି ଦୁର୍ଗର ଏକ ଗୁପ୍ତ ସୁଡ଼ଙ୍ଗ ଦେଇ ଗଞ୍ଜାମର ଋଷିକୁଲ୍ୟା ମୁହାଣ ବନ୍ଦରଠାରେ ବାହାରି ନିଜକୁ ମା' ଗଙ୍ଗାଚଣ୍ଡୀଙ୍କ କରୁଣାରୁ ରକ୍ଷା କରିପାରିଥିଲେ । ଗଂଜାମ ଓ ଛତ୍ରପୁର ମଧ୍ୟରେ ଆଲିବାଦ ଗ୍ରାମ ଏହି ମନସୁର୍ ଅଲ୍ଲୀଙ୍କ ନାମରେ ପ୍ରତିଷ୍ଠିତ ହୋଇଥିଲା ।

### ମା' ବୁଢ଼ୀଘରା ଠାକୁରାଣୀ

ମା' ବୁଢ଼ୀଘରା ଦେବୀ ବ୍ରହ୍ମପୁର ଆସିକା ରୋଡରେ ବ୍ରହ୍ମପୁରଠାରୁ ମାତ୍ର ପାଞ୍ଚ କିଲୋମିଟର ଦୂରରେ ଅବସ୍ଥିତ । ଏହି ଦେବୀଙ୍କ ପ୍ରତିମୂର୍ତ୍ତି ଜଣେ କୃଷକ ଜମି ଚାଷ କରୁଥିବା ବେଳେ ମାଟି ତଳୁ ଉଦ୍ଧାର ହୋଇ ଏଠାରେ ପୂଜିତ ହେଉଛନ୍ତି । ପ୍ରଥମେ ଜଣେ ବୁଢ଼ୀ ନିଜ ଘରେ ରଖି ଏହି ଠାକୁରାଣୀଙ୍କ ପୂଜା କରୁଥିଲା ବୋଲି ବୋଧହୁଏ ଏ ହେଲେ ବୁଢ଼ୀଘରା ଠାକୁରାଣୀ ।

### ମା' ଶାଙ୍କୁଳାଇ ଠାକୁରାଣୀ

ମା' ଶାଙ୍କୁଳାଇ ଠାକୁରାଣୀ ବାଲିପଦର ନିକଟସ୍ଥ ଅନ୍ତରପଡ଼ା ଗ୍ରାମରେ ଅବସ୍ଥିତ । ବାଲିପଦର, ବେଲଗୁଣ୍ଠା, ଚନ୍ଦନପେଡ଼ି, କଳମ୍ବ ଆଦିରେ ମା' ଶାଙ୍କୁଳାଇଙ୍କ ମହିମା ଅପାର । ସଙ୍କଟ ତାରିଣୀ ଭାବରେ ମା'ଙ୍କ ବହୁ କିମ୍ବଦନ୍ତୀ ରହିଛି । ଭରାଜାଙ୍କୁ ଇଂରେଜମାନେ ବନ୍ଦୀ କରିବାକୁ ଆସିଥିବା ବେଳେ ମା' ଶାଙ୍କୁଳାଇଙ୍କ କୃପାରୁ ସୈନିକମାନଙ୍କୁ ଭ୍ରମାୟିତ କରାଇ ଦେଇ ରାଜାଙ୍କୁ ରକ୍ଷା କରିଥିଲେ ବୋଲି ଠାକୁରାଣୀ ସେ ଦିନରୁ 'ଶାଙ୍କୁଳାଇ' ନାମରେ ବିଦିତ ହୋଇଥିଲେ ।

### ମା' ଚାଙ୍ଗୁଡ଼ାଇ ଦେବୀ

ମା' ଚାଙ୍ଗୁଡ଼ାଇ ଦେବୀ ମୌଳାଭ ଗ୍ରାମର ଏକ ପର୍ବତ ଖୋଲରେ ପୂଜା ପାଇ ଆସୁଛନ୍ତି । ବିଶ୍ୱାସ ଯେ, ପର୍ବତ ଖୋଲ ମଧ୍ୟରେ ଜଣେ ଋଷିଙ୍କ ଦ୍ୱାରା ଆରାଧିତ ହୋଇ ପ୍ରାଣ ପ୍ରତିଷ୍ଠା ଲାଭ କରିଥିଲେ । ଏବେ ମା'ଙ୍କ

ମୂର୍ତ୍ତି ସହ ଅନ୍ୟ ପ୍ରାନ୍ତରେ ହନୁମାନଙ୍କ ଉପାସନା ମଧ୍ୟ କରାଯାଏ । ଏଠାରେ ଗୋଟିଏ ଝରଣା ରହିଛି ।

**ମା' ବାଳକୁମାରୀ**

ବ୍ରହ୍ମପୁରଠାରୁ ଦକ୍ଷିଣରେ ରହିଛି ଚିକିଟୀ ଗଡ଼ଜାତ । ଚିକିଟୀ ରାଜ୍ୟର କେରାଣ୍ଡିମାଳ ପର୍ବତମାଳାରେ ଏକ ସୁଉଚ୍ଚ ପର୍ବତ ଉପରେ ଚିକିଟୀ ରାଜପରିବରାର ଇଷ୍ଟ ତନ୍ତ୍ରଦେବୀ ମୌମାରୀ–ବାଳକୁମାରୀ ଭାବରେ ପୂଜିତା । ବ୍ରହ୍ମପୁରଠାରୁ କଙ୍କିଆ–ଟାମଣା ମହୁଡ଼ା ରାସ୍ତାରେ ମାତ୍ର ୩୦ କି.ମି. ବ୍ୟବଧାନରେ ଦେବୀଙ୍କର ପୀଠସ୍ଥଳୀ ଏକ ପ୍ରାକୃତିକ ପରିବେଶ ମଧ୍ୟରେ ରହିଛି । ପ୍ରାଚୀନ ଚିକିଟୀ ଅଞ୍ଚଳର ବିନ୍ଧ୍ୟଗିରି, ବୁଦାଗିରି ପାହାଡ଼ରେ ମଧ୍ୟ ମା'ଙ୍କର ଉପାସନା ହେଉଛି । ବର୍ତ୍ତମାନ ଏହି ଉଡ୍ଡୀୟାନ ପୀଠ ରାଜପୁର ଗ୍ରାମାଞ୍ଚଳ ନାମରେ ଆନ୍ଧ୍ର ରାଜ୍ୟରେ ରହିଛି ।

**ମା' ନାରାୟଣୀ**

ମହାପ୍ରଭୁ ଭଗବାନ ନାରାୟଣଙ୍କ ଶକ୍ତି ଭାବରେ ମା' ନାରାୟଣୀଙ୍କ ଆବିର୍ଭାବ ହୋଇଥିବା କଥା ଦେବୀ ଭାଗବତରେ ବର୍ଣ୍ଣନା ରହିଛି । ଏହି ପୀଠ ବ୍ରହ୍ମପୁର–ଭୁବନେଶ୍ୱର ଜାତୀୟ ରାଜପଥର କଡ଼ରେ ପ୍ରାୟ ତିନି କି.ମି.ରୁ ଊର୍ଦ୍ଧ୍ୱ ପଥ ଗିରି ବନ ଉପତ୍ୟକା ମଧ୍ୟରେ ପଶ୍ଚିମ ପଟକୁ ଗଲେ ଭାଲେରୀ ପର୍ବତ କନ୍ଦରରେ ମା'ଙ୍କର ପୀଠସ୍ଥଳ, ଯାହା ନାରାୟଣୀ ଖୋଲ ଭାବରେ ପରିଚିତ । ଏହା ଏକ ପ୍ରାଚୀନ ତନ୍ତ୍ରପୀଠ । ମା' ତ୍ରିନେତ୍ରା କିନ୍ତୁ ଆଗରୁ ଅଷ୍ଟଭୁଜା ଥିଲେ । ପରବର୍ତ୍ତୀ କାଳରେ ପୂଜାରୀଙ୍କ ପ୍ରାର୍ଥନାରେ ଖଲ୍ଲିକୋଟ ରାଜାଙ୍କ ଦ୍ୱାରା ମିଥ୍ୟା କହି ଦଣ୍ଡିତ ହେବାର ଭୟରୁ ସୁରକ୍ଷା ଦେବା ପାଇଁ ମା' ସତକୁ ସତ ଦଶଭୁଜା ହୋଇ ପଡ଼ିଥିଲେ । ଘଞ୍ଚ ଜଙ୍ଗଲ ଘେରିତ ପର୍ବତର ଖୋଲ ମଧ୍ୟରେ ଥିବା ଶକ୍ତିପୀଠ ବର୍ଷର ସବୁ ସମୟରେ ଭକ୍ତ ଜନାଦୃତ । ମା'ଙ୍କ ପାଦ ଦେଇ ଏକ ଗିରିଝର ସଦା ପ୍ରବାହିତ । ଏହି ପୀଠ ଏକ ପ୍ରସିଦ୍ଧ ଶକ୍ତିପୀଠ ହେବା ସହ ଓଡ଼ିଶାର ଏକ ବିଶିଷ୍ଟ ପର୍ଯ୍ୟଟନସ୍ଥଳ ।

**କୁଲାଡ଼ର ବାଗ୍‌ଦେବୀ**

ଘୁମୁସର ବନାଞ୍ଚଳରେ ଭଞ୍ଜନଗର ଅତିକ୍ରମ କଲାପରେ କୁଲାଗଡ଼ ରାଜ୍ୟ । ଏହାକୁ ସଂକ୍ଷିପ୍ତରେ କୁଲାଡ଼ ନାମରେ ଉଚ୍ଚାରଣ କରନ୍ତି । ଏଠାରେ ଅନ୍ୟାନ୍ୟ ଦେବଦେବୀଙ୍କ ସହ ବାଗ୍‌ଦେବୀ ଠାକୁରାଣୀଙ୍କ ଭବ୍ୟ ମନ୍ଦିର ରହିଛି । କଥିତ ଯେ, ଘଞ୍ଚ ଜଙ୍ଗଲର ଉପର ପର୍ବତ ଶୀର୍ଷରେ ମା'ଙ୍କ ପୀଠସ୍ଥଳୀ ଥିଲା । ଉପର ପୀଠକୁ ପୂଜକମାନେ ଉପାସନା ପାଇଁ ଯିବାରେ ଅସୁବିଧାକୁ ଦୂରେଇବା ପାଇଁ ମା' ପର୍ବତ ଉପରୁ ପୂଜା ଢାଳଟିକୁ ତଳକୁ ଫୋପାଡ଼ି ଦେଇ କହିଲେ, 'ଯେଉଁଠି ଢାଳ ପଡ଼ିବ, ସେଇଠି ମୋତେ ପୂଜା କର, ମୁଁ ପାଇବି ।' ସେ ଦିନରୁ ମା'ଙ୍କର ମନ୍ଦିର ତଳେ ନିର୍ମିତ ହେଲା ଓ ଭକ୍ତମାନେ ତଳ ବାଗ୍‌ଦେବୀଙ୍କ ପୂଜା ଆରାଧନା କରିବାକୁ ଲାଗିଲେ । ବାଗ୍‌ଦେବୀଙ୍କୁ ସରସ୍ୱତୀ କୁହାଗଲେ ମଧ୍ୟ ମା' ବସୁଧା ଦୁର୍ଗା ତଥା ଦୁର୍ଗତିନାଶିନୀ ବ୍ୟାଘ୍ରଦେବୀ ଭାବରେ ଅଧିକା ବିସ୍ତୃତି ଲାଭ କରିଛନ୍ତି ।

**ରଣଘଣ୍ଟା**

ଦେବୀ ଯୁଦ୍ଧବିଦ୍ୟାରେ ପାରଙ୍ଗମ । ମା'ଙ୍କ ଉପାସନା ଯେକୌଣସି ରଣ ତଥା ଯୁଦ୍ଧରେ ବିଜିତ କରିଥାଏ । ଭଞ୍ଜ ରାଜବଂଶର ଏହି ଆଦିବାସୀ ଉପାସିତ ଦେବୀ, ଇଷ୍ଟଦେବୀ ଭାବରେ ଉପାସିତ । ଏହାଙ୍କ ପୀଠ ଟିଳିସିଙ୍ଗ୍‌ଠାରେ ରହିଛି ।

**ବିମଳା**

ଜଗନ୍ନାଥଧାମ ପୁରୀଠାରେ ବିମଳା ଶାକ୍ତ ପରମ୍ପରାରେ ମୁଖ୍ୟ ଭାବରେ ଉପାସିତ ହେଉଥିଲେ ମଧ୍ୟ ଗଂଜାମର ଖଲ୍ଲିକୋଟ ରାଜ୍ୟାଧୀନ ନିର୍ମଳଝରରେ ଥିବା ଶୈବ, ଶାକ୍ତ, ବୈଷ୍ଣବ ତୀର୍ଥରେ ମା' ବିମଳା ଠାକୁରାଣୀ ପୂଜା ପାଉଥିବା ଦେଖିବାକୁ ମିଳେ । ଏଠାରେ ମା' ବିମଳା ମହିଷମର୍ଦ୍ଦିନୀ ରୂପରେ ବିରାଜିତା । ବିଷ୍ଣୁଙ୍କର ଶକ୍ତିରୂପ ହେଉଛନ୍ତି ମା' ବିମଳା ।

**ରାମଚଣ୍ଡୀ**

ଖଲ୍ଲିକୋଟ କୋଦଳା ରାସ୍ତାରେ ଖଲ୍ଲିକୋଟଠାରୁ ମାତ୍ର ପାଞ୍ଚ କି.ମି. ବ୍ୟବଧାନରେ ଥିବା କୃଷ୍ଣଗିରି ପର୍ବତ ଧାରରେ ମା'ଙ୍କ ଅବସ୍ଥିତି । ଏହି ପୀଠସ୍ଥଳରେ ଝାଡ଼େଶ୍ୱର, ମଲ୍ଲୀକେଶ୍ୱରଙ୍କ ସହ ମା' ଠାକୁରାଣୀ ରାମଚଣ୍ଡୀ ବିରାଜିତ । କଥିତ ଯେ, ରାମାୟଣ ଯୁଗରେ ରାମଚନ୍ଦ୍ର ଏହି ଚଣ୍ଡୀଙ୍କର ଉପାସନା କରିଥିଲେ ବୋଲି ମା'ଙ୍କୁ ରାମଚଣ୍ଡୀ କୁହାଯାଉଛି ।

**କୟିମାର ମହିଷମର୍ଦ୍ଦିନୀ ଦୁର୍ଗା**

ବୁଗୁଡ଼ାଠାରୁ ମାତ୍ର ପାଞ୍ଚ କି.ମି.ର ବ୍ୟବଧାନ ମଧ୍ୟରେ ଏକ ପଞ୍ଚ ରଥ ମନ୍ଦିର ମଧ୍ୟରେ କୁବେରଶ୍ୱର ପୂଜା ପାଆନ୍ତି । କୟିମାର ଏହି ମନ୍ଦିର ମଧ୍ୟରେ ଏକ କଳାତ୍ମକ ଅଷ୍ଟଭୁଜା ମହିଷମର୍ଦ୍ଦିନୀଙ୍କ ଦୁର୍ଗା ମୂର୍ତ୍ତି ପୂଜା ପାଆନ୍ତି । ଏହାଙ୍କ ସହ ନଟରାଜ, ପାର୍ବତୀ ଓ ଭୈରବୀଙ୍କ ମୂର୍ତ୍ତି ମଧ୍ୟ ଉପାସିତ ।

**ବ୍ରହ୍ମପୁରର ବୁଢ଼ୀ ଠାକୁରାଣୀ**

ବ୍ରହ୍ମପୁର ନଗରର ପଶ୍ଚିମରେ ଥିବା ପୁରୁଣା ବ୍ରହ୍ମପୁର ଅଞ୍ଚଳରେ ପୂର୍ବ ଉତ୍ତର ଐଶାନ୍ୟ କୋଣରେ ବୁଢ଼ୀ ଠାକୁରାଣୀଙ୍କ ମନ୍ଦିର । ମହୁରୀ ରାଜାଙ୍କ ଦ୍ୱାରା ପୂଜିତ ଦେବୀ ହୋଇଥିଲେ ହେଁ ଡେରା, ଖଦୀ, ପାଟବସ୍ତ୍ର ନିର୍ମାତା ତନ୍ତୁବାୟ–ତନ୍ତୀମାନଙ୍କ ଦ୍ୱାରା ଠାକୁରାଣୀ ଯାତ୍ରା ଦୁଇବର୍ଷରେ ଥରେ ପାଳିତ ହୁଏ । ଡେରାମାନଙ୍କର ଦେଶ ବେହେରା ସାହିରେ ମା'ଙ୍କ ଯାତ୍ରା ଅନୁଷ୍ଠିତ ହେବା ସହ ଡେରା (ସେନାପତି)ମାନଙ୍କ ସ୍ତ୍ରୀ ମାନେ ମା'ଙ୍କ ଘଟ ଧାରଣ କରି ପୁରୁଣା ବ୍ରହ୍ମପୁର ଅଞ୍ଚଳରେ ହିଁ ଯାତ୍ରା କରିଥାନ୍ତି । କିମ୍ବଦନ୍ତୀ ଅନୁସାରେ ଜଣେ ଭଣ୍ଡାରୀ ପୂଜକ ଦ୍ୱାରା ମା' ପୂଜିତ ଓ ଦେଶ ବେହେରାଙ୍କ ଧର୍ମଝିଅ ଭାବରେ ମା'ଙ୍କ ଘରକୁ ଆସିବାକୁ ଯାତ୍ରା କରାଯାଏ ।

**ମା' ସିଦ୍ଧଭୈରବୀ ପୀଠ**

ମା' ଭୈରବୀ ମାଟି ତଳୁ ଜମି ଚାଷ କରିବା ବେଳେ ଉଭା ହୋଇଥିବା ଜଣାଯାଏ । ବ୍ରହ୍ମପୁରଠାରୁ ୧୭ କି.ମି. ଦୂରରେ ଦକ୍ଷିଣ–ପୂର୍ବ ଦିଗରେ ଥିବା ପ୍ରାଚୀନ ବନ୍ଦର ନଗରୀ ମନ୍ତ୍ରିଡ଼ିଠାରେ ବିରାଜିତା । ଐତିହାସିକମାନେ ମତ ଦିଅନ୍ତି ଯେ, ଦେବୀ ଭୈରବୀ ଅତୀତ କଳିଙ୍ଗର ନୌ–ବାଣିଜ୍ୟର ସିଦ୍ଧଦେବୀ ୭୦୦ ଖ୍ରୀ.ପୂର୍ବାଧିକାଳରୁ ସାଧବମାନଙ୍କ ଦ୍ୱାରା ଆରାଧିତା । ମା'ଙ୍କ ଆରାଧନା, ମନସ୍କାମନା ପୂରଣ ସହ ସର୍ବ ସମୃଦ୍ଧି ପ୍ରାପ୍ତ କରିଥାଏ । ଏଠାରେ ଏକ ଜଗନ୍ନାଥ ମନ୍ଦିର ସହ ଅନ୍ୟୂନ ୧୦୮ ଠାକୁର–ଠାକୁରାଣୀଙ୍କ ଏକ ପ୍ରାକୃତିକ ବୈଭବମୟ ପର୍ଯ୍ୟଟନ ସ୍ଥଳୀ ଭାବରେ ସାରା ଦେଶ ବିଦେଶରୁ ମଧ୍ୟ ପର୍ଯ୍ୟଟକମାନେ ଏଠାକୁ ଆସିବା ଦେଖାଯାଏ ।

**ବାଙ୍କେଶ୍ୱରୀ**

ବଡ଼ଖେମୁଣ୍ଡି ରାଜା ଅନଙ୍ଗ କେଶରୀଙ୍କ ରାଜତ୍ୱ କାଳରେ (୧୬୩୨–୧୬୮୨) ମସିହାରେ ଋଷି ପୂଜିତ ଏହି ଦେବୀଙ୍କ ମନ୍ଦିର ନିର୍ମାଣ ହୋଇଥିଲା । ମା'ଙ୍କ ପୀଠ ଡୁମୁଳା ଗ୍ରାମର ପୂର୍ବ–ଦକ୍ଷିଣ ଦିଗରେ ଥିବା ଜଙ୍ଗଲ ପାର୍ବତ୍ୟ ଉପତ୍ୟକା ମଧ୍ୟରେ ଏକ ପ୍ରାକୃତିକ ସୌନ୍ଦର୍ଯ୍ୟ ବିଭାମଣ୍ଡିତ । ଦୋଳପୂର୍ଣ୍ଣିମା ବେଳେ ମା'ଙ୍କ ବିଶିଷ୍ଟ ରଙ୍ଗ ଉତ୍ସବ ପାଳନ ହୁଏ । ଫଗୁଲାଗି ହୁଅନ୍ତି । ଲକ୍ଷାଧିକ ଭକ୍ତ ନିଜ ଛୁଆଙ୍କୁ ନେଇ ଏଠାକୁ ଆସି ପିଲାମାନଙ୍କ ସୁସ୍ଥତା ପାଇଁ ମାନସିକ କରି ମୁଣ୍ଡନ କରିଥାନ୍ତି । ଏଠାରେ ପର୍ବତର ଶୀର୍ଷ ଦେଶରେ ମା'ଙ୍କର ବିହାରସ୍ଥଳ ରହିଛି । ମା' ବିଶେଷରେ ତନ୍ତ୍ରମତରେ ଓ ଆଦିବାସୀଙ୍କ ଦ୍ୱାରା ପୂଜା ପାଉଥିଲେ ।

**ସ୍ତମ୍ଭେଶ୍ୱରୀ**

ଏ ଦେବୀ ମା' ଆଦିବାସୀମାନଙ୍କ ବୃକ୍ଷ ଉପାସନାରୁ ସମ୍ଭୁତା, ଦାରୁଦେବୀ ତ କେଉଁ କେଉଁଠି ପ୍ରସ୍ତର ସ୍ତମ୍ଭ ଭାବରେ ଆରାଧିତା । ମା' ସ୍ତମ୍ଭେଶ୍ୱରୀ ଆସିକାର ସ୍ତମ୍ଭେଶ୍ୱରୀ ପାଟଣାର ଏକ ପ୍ରାଚୀନ ମନ୍ଦିର । ସପ୍ତଦଶ ଶତାବ୍ଦୀ ମଧ୍ୟରେ ସ୍ତମ୍ଭ ଆକାରରେ ପୂଜା ପାଇ ଆସୁଛନ୍ତି । ସ୍ତମ୍ଭେଶ୍ୱରୀ ବିଶେଷରେ କନ୍ଧ ସଂପ୍ରଦାୟ ଦ୍ୱାରା କନ୍ଧ ବସତିମାନଙ୍କରେ ତଥା–ବୌଦ, ଘୁମୁସର, ସୋନପୁର, କଳାହାଣ୍ଡି, ଫୁଲବାଣୀ

ଆଦି ବିଭିନ୍ନ ଅଞ୍ଚଳରେ ମା'ଙ୍କ ପୂଜା ପ୍ରଚଳିତ ଅଛି । ମା'ଙ୍କର ପୂଜନ ଆସିକାଠାରେ ଜାନୀ ସଂପ୍ରଦାୟ ଦ୍ୱାରା କରାଯାଏ ।

**ତାରାତାରିଣୀ**

ଦେବୀ ମା' ତାରାତାରିଣୀ ଗଂଜାମ କାହିଁକି, ଏହା ଓଡ଼ିଶାର ଏକ ପ୍ରସିଦ୍ଧ ଶକ୍ତିପୀଠ । ବ୍ରହ୍ମପୁରଠାରୁ ପୁରୁଷୋତ୍ତମପୁର ଯିବା ବାଟରେ ତାରାତାରିଣୀ ଛକ ପାଖରୁ ଡାହାଣ ପଟକୁ ମାତ୍ର ଦେଢ଼ ଦୁଇ କି.ମି. ଗଲେ ବାମ ପଟରେ ଥିବା ଏକ ସୁଉଚ୍ଚ କୁମାରୀ ପର୍ବତ ଶିଖରରେ ମା' ବିରାଜିତା । ବସୁ ପ୍ରହରାଜଙ୍କ ଦ୍ୱାରା ତାରାତାରିଣୀ ତନ୍ତ୍ର ମତରେ ଉପାସିତା । ପର୍ବତ ଉପରର ପୀଠସ୍ଥଳକୁ ଯିବା ପାଇଁ ମୋଟର ଯିବା ରାସ୍ତା, ପାଦରେ ଚାଲି ଚାଲି ଯିବା ପାଇଁ ୯୯୯ ଗୋଟି ପାହାଚ ପୁଣି ରୋପ୍ ୱେ ରହିଛି । ଚୈତ୍ରମାସର ପ୍ରତ୍ୟେକ ମଙ୍ଗଳବାର ଦିନ ଏଠାରେ ଲକ୍ଷାଧିକ ଭକ୍ତଙ୍କ ସମାଗମ ହେବା ସହ ସଂକ୍ରାନ୍ତି, ଦୁର୍ଗାପୂଜାରେ ଭକ୍ତମାନେ ବହୁ ସଂଖ୍ୟାରେ ଏଠାକୁ ଆସିଥାନ୍ତି । ଏହି ପୀଠକୁ ସ୍ତନପୀଠ ଭାବରେ ଦେବୀ ପୁରାଣରେ ବର୍ଣ୍ଣନା ରହିଛି । ଏବେ ମା'ଙ୍କର ଏକ ସୁନ୍ଦର ମନ୍ଦିର ନିର୍ମାଣ ଚାଲିଛି । ମା'ଙ୍କ ମୂର୍ତ୍ତି ଦୁଇଟି ପ୍ରସ୍ତର ଉପରେ ବିରାଜିତା । ଗୋଟିଏ ମା' ତାରାଙ୍କର ଓ ଅନ୍ୟଟି ତାରିଣୀ ଠାକୁରାଣୀଙ୍କର ।

**ମହୁରୀ କାଳୁଆ**

ମା' ମହୁରୀ କାଳୁଆ, ମହୁରୀ ରାଜବାଟୀର ଇଷ୍ଟଦେବୀ ଭାବରେ ବ୍ରହ୍ମପୁରର ପଶ୍ଚିମ ପ୍ରଦେଶରେ ମୁକୁଟ ସଦୃଶ ରହିଥିବା କେରାଣ୍ଡିମାଳ ମଧ୍ୟସ୍ଥ ମହୁରୀଗଡ଼ର ରକ୍ଷାକର୍ତ୍ତ୍ରୀ । ବିଶେଷରେ ମା' ଏଠିକାର ଆଖପାଖ ଗ୍ରାମମାନଙ୍କରେ କାଳୁଆ ଠାକୁରାଣୀ ଭାବରେ ପୂଜା ପାଉଥିଲେ ମଧ୍ୟ ମହୁରୀଗଡ଼ ଅଞ୍ଚଳରେ ମା'ଙ୍କର ଭବ୍ୟ ମନ୍ଦିର ଅଛି । ମା'ଙ୍କଠାରେ କାଳୀ ନାମଧାରୀ ସେବାୟତମାନେ ପୂଜକ ଭାବରେ ବଂଶାନୁକ୍ରମରେ ପୂଜା ଉପାସନା କରିଥାନ୍ତି । ବ୍ରହ୍ମପୁରସ୍ଥ ଗୋସାଣୀ ନୂଆଗାଁରେ କାଳୁଆ ଠାକୁରାଣୀଙ୍କର ପ୍ରସିଦ୍ଧ ଯାତ୍ରା ଆଡ଼ମ୍ବର ସହକାରେ ପ୍ରତିବର୍ଷ ଆଶ୍ୱିନ ମାସରେ ପାଳନ କରାଯାଇଥାଏ ।

**ଧରାକୋଟର ବନଦେବୀ ପାତାଳେଶ୍ୱରୀ**

ଧରାକୋଟ ଗଡ଼ଜାତ ଅଞ୍ଚଳରେ ରାଜକୀୟ ପୃଷ୍ଠପୋଷକତା ମଧ୍ୟରେ ପାତାଳେଶ୍ୱରୀ ନାମରେ ପୂଜା ପାଉଛନ୍ତି । ଭକ୍ତମାନେ ଏଠାରେ ମା'ଙ୍କୁ ଦୁର୍ଗା ଯାନରେ ଉପାସନା କରନ୍ତି । କିମ୍ବଦନ୍ତୀରେ ମା' ପାତାଳେଶ୍ୱରୀ ଦୁର୍ଗା ମା' ପ୍ରଥମେ ଧରାକୋଟର ବଡ଼ଶୁଳିଆ ପର୍ବତରେ ପୂଜା ପାଉଥିଲେ କିନ୍ତୁ ଦିନେ ପୂଜକଙ୍କ ଅଚାନକ ଅବେଳରେ ମା'ଙ୍କଠାରେ ଛାଡ଼ି ଆସିଥିବା ପୂଜା ଡାଲ ଆଣିବାକୁ ଗଲାବେଳେ ଦେବୀ କ୍ରୋଧିତ ହୋଇ ପୂଜା ଡାଲଟିକୁ ତଳକୁ ଫିଙ୍ଗି ଦେଇ କହିଲେ ଯେ, ଏମିତି ଆଉ ଆସିବୁ ନାହିଁ ଏଠିକି । ଡାଲ ଯେଉଁଠି ପଡ଼ିବ ସେଇଠି ମୋତେ ପୂଜା କରିବୁ । ସେଦିନଠାରୁ ମା'ଙ୍କ ପୂଜା ଶୁଳିଆ ପର୍ବତ ତଳରେ କରାଯାଉଛି ।

**ବାରାହୀ ଦେବୀ**

ଭଗବାନ ବରାହଙ୍କ ଶକ୍ତି ହେଉଛନ୍ତି ମା' ବାରାହୀ । ମା'ଙ୍କ ପୂଜାପୀଠ ଚିକିଟୀ ଗଡ଼ ନିକଟସ୍ଥ ବଡ଼ବରଙ୍ଗା ଗ୍ରାମର ଏକ କି.ମି. ଦୂରରେ ପବିତ୍ର ବାହୁଦା ନଦୀ କୂଳରେ ଅବସ୍ଥିତ । ଐତିହାସିକମାନେ କହନ୍ତି, ଭୌମ ରାଜତ୍ୱ କାଳରୁ ଅଷ୍ଟମ ଶତାବ୍ଦୀ ତଥା ୭୩୬ରୁ ୯୫୦ ଖ୍ରୀ.ଅ.ରେ ମା' ବାରାହୀଙ୍କ ପୂଜା ଆମ ଓଡ଼ିଶାରେ ପ୍ରଚଳିତ ହୋଇ ଆସୁଛି । ସପ୍ତ ମାତୃକାଙ୍କ ମଧ୍ୟରେ ବାରାହୀ ହେଉଛନ୍ତି ପଞ୍ଚମ ମାତୃକା । ଚିକିଟୀ ରାଣୀ ରାଜଲକ୍ଷ୍ମୀ ଏଠାକାର ବାରାହୀ ମନ୍ଦିରର ନିର୍ମାଣ କରିଥିବା ଜଣାଯାଏ । ଲୋକେ ଚୈତ୍ର କୃଷ୍ଣ ତ୍ରୟୋଦଶୀ ତିଥିରେ ବାହୁଦା ନଦୀର ଏହି ଉତ୍ତର ବାଙ୍କଠାରେ 'ବୁଡ଼' ସାରି ମା'ଙ୍କ ଦର୍ଶନ କରି ପୁଣ୍ୟ ଅର୍ଜନ କରିଥାନ୍ତି ।

### କୁରେଇଶୁଣୀ

ସୁରଙ୍ଗୀଗଡ଼ର ବନପର୍ବତ ଶୋଭିତ ଅଞ୍ଚଳରେ ମା' କୁରେଇଶୁଣୀଙ୍କ ପୀଠସ୍ଥଳ ରହିଛି । ବ୍ରହ୍ମପୁରଠାରୁ ସୁରଙ୍ଗୀ ଯାଏଁ ବସ୍‌ରେ ଯାଇ ସେଠାରୁ ନୂଆଗଡ଼ଠାରେ ଥିବା ମା' କୁରେଇଶୁଣୀ ଠାକୁରାଣୀଙ୍କ ପୀଠକୁ ପ୍ରବେଶ କରିହୁଏ । ମା'ଙ୍କୁ କୁରନାଶିନୀ ଦେବୀ ଭାବରେ ପୂଜା କରାଯାଏ ।

### ମା' ଶ୍ୟାମଳାଇ

ବ୍ରହ୍ମପୁର-ଆସିକା ରାସ୍ତାରେ ହିଂଜିଳିକାଟୁ ପରେ ପରେ ମା' ଶ୍ୟାମଳାୟୀ ଠାକୁରାଣୀଙ୍କ ମନ୍ଦିର । ନାମ ଅନୁସାରେ ଦେବୀ ମୂର୍ତ୍ତି ଶ୍ୟାମଳ ବର୍ଣ୍ଣା । ମା'ଙ୍କ ପୀଠ ସ୍ଥଳକୁ ନେଇ ଶ୍ୟାମଳାଇ ଛକର ନାଁ ରହିଛି । ସାଢ଼େ ତିନିଫୁଟ ଉଚ୍ଚତାର ମା'ଙ୍କ ଭବ୍ୟମୂର୍ତ୍ତି ବିଶେଷରେ ସଂକ୍ରାନ୍ତି, ମଙ୍ଗଳବାର, ଚୈତ୍ର ଓ ଆଶ୍ୱିନ ମାସର ଦୁର୍ଗାପୂଜା ବେଳେ ବହୁ ଭକ୍ତଙ୍କ ସମାଗମ ହୁଏ । ଏହାର ଅନତି ଦୂରରେ ଆସିକା ଆଡ଼କୁ ଗଲାବେଳେ ମା' କରଇେ ଠାକୁରାଣୀ ପୀଠ । କର ଗଛମୂଳରେ ମା' ଉଭା ହୋଇ ପୂଜା ପାଇଥିଲେ ବୋଲି ମା'ଙ୍କ ନାମ କରଇେ ।

### କୋଟେଶ୍ୱରର ମା' ବନଦେବୀ

ଧରାକୋଟଠାରୁ ଆଗକୁ ୨୧୭ ନମ୍ବର ରାଜପଥରେ ୧୫ କି.ମି. ଗଲେ ନୂଆଁଗଡ଼ (ନୂଆଗାଁ) ପଡ଼େ । ନିକଟରେ ବାରଧାଙ୍ଗିଡ଼ି ଆଦିବାସୀ ଗ୍ରାମ । ଗ୍ରାମ ପାଖରେ ରହିଛି ଏକହଜାର ମିଟର ଉଚ୍ଚର ପର୍ବତ ଶ୍ରେଣୀ । ଏହି ପର୍ବତ ଉପରେ ରହିଛନ୍ତି ଗୋଟିଏ ପଥରରେ ଗଢ଼ା ବନଦେବୀ ମନ୍ଦିର । ସର୍ବୋଚ୍ଚ ଶିଖରରେ ପ୍ରଭୁ କୋଟେଶ୍ୱର ମହାଦେବ ଓ ଅନ୍ୟ ଏକ ଗୁମ୍ଫାରେ ରହିଛନ୍ତି ମା' ପାର୍ବତୀ । ସାମ୍‌ନାରେ ତିନୋଟି ପିଣ୍ଡିରେ ଆଗକୁ ତିନିଜଣ ଋଷି ଧ୍ୟାନ କରୁଥଲେ ବୋଲି ଲୋକକଥା ରହିଛି । ପଥର ଖୋଲ ମଧ୍ୟରେ ଝରଣା ଜଳ କ୍ଷରିତ ହୋଇ ଗୁପ୍ତଗଙ୍ଗା ସୃଷ୍ଟି କରୁଛି । ଉପର ପଥରରେ ମହାଦେବଙ୍କ ତ୍ରିଶୂଳର ଚିହ୍ନ । ବାଉଁଶ ବୁଦା ସହ ଖଡ଼ବଣ ଜଙ୍ଗଲି ପଶୁମାନଙ୍କ ବିହାରସ୍ଥଳୀ ସୃଷ୍ଟି କରିଛି ।

### ଶୁଳିଆ ପାହାଡ଼ରେ ମା' ବନଦୁର୍ଗାଙ୍କ ପାଦଦେଶରେ ପାତାଳେଶ୍ୱରୀ ଠାକୁରାଣୀ

ଏହି ପୀଠ ସାନଶୁଳିଆ ପାହାଡ଼ ମୁଣ୍ଡିଆର ପ୍ରାୟ ୩୫୦ ମିଟର ଉଚ୍ଚ ଶିଖରରେ ବନଦୁର୍ଗାଙ୍କ ମନ୍ଦିର ରହିଥିବା ବେଳେ ପାଦଦେଶରେ ମା' ପାତାଳେଶ୍ୱରୀ ଠାକୁରାଣୀ ମନ୍ଦିର ରହିଛି । ମନ୍ଦିର ପୃଷ୍ଠଦେଶରେ ପାତାଳ ଗଂଗା ଝରଣା ଜଳ ଭକ୍ତମାନଙ୍କୁ ଚର୍ମରୋଗରୁ ଆରୋଗ୍ୟ କରୁଥବା ବିଶ୍ୱାସ ରହିଛି । ସାନଶୁଳିଆ ଠାକୁରାଣୀଙ୍କ ପଶ୍ଚିମରେ କାଠୁରିଆ ଠାକୁରାଣୀ ରହିଛନ୍ତି । ଏଠାରେ ଆଷାଢ଼ ଶ୍ରାବଣ ମାସରେ ସ୍ୱତନ୍ତ୍ର ପୂଜା ହୋଇଥାଏ ।

### ବ୍ରାହ୍ମଣଛାଇ ପଂଚଦେବାଳୟରେ ମହିଷମର୍ଦ୍ଦିନୀ ଦୁର୍ଗା ମା'

ଆସିକାଠାରୁ ପାଞ୍ଚ କି.ମି. ଦୂରରେ ଥିବା ବ୍ରାହ୍ମଣଛାଇ ଶାସନରେ ରହିଛି ବ୍ରହ୍ମେଶ୍ୱରଙ୍କ ସହ ପଞ୍ଚଦେବାଳୟ ମନ୍ଦିର । ବ୍ରହ୍ମେଶ୍ୱରଙ୍କ ଚାରିଦିଗରେ ମା' ଦୁର୍ଗା, ରଘୁନାଥ, ସୂର୍ଯ୍ୟ ଓ ଏକାଦଶ ରୁଦ୍ର ପୂଜା ପାଆନ୍ତି । ୧୮୫୦ରେ ଧରାକୋଟ ରାଜା ପଦ୍ମନାଭ ସିଂହ ରାଜଗୁରୁ ହନୁମାନ କବିଚନ୍ଦ୍ରଙ୍କ ଦ୍ୱାରା ଏଠାରେ ମନ୍ଦିର ପ୍ରତିଷ୍ଠା କରିଥିବା ଜଣାଯାଏ । ଏଠାରେ ଦୁର୍ଗା ଚାରିଭୁଜା ତନ୍ତ୍ରଧାରାରେ ବ୍ରାହ୍ମଣ ଓ ମାଳୀମାନଙ୍କ ଦ୍ୱାରା ଉପାସିତା ।

### ଏଲମା ଠାକୁରାଣୀ

ବ୍ରହ୍ମପୁର ସହରର ନୀଳକଣ୍ଠେଶ୍ୱର ମନ୍ଦିର ନିକଟରେ ଏଲମା ଠାକୁରାଣୀଙ୍କ ମନ୍ଦିର । ଏଲମା ବିଶେଷରେ ଇଷ୍ଟଦେବୀ ରୂପେ ଦକ୍ଷିଣ ଭାରତର ଆନ୍ଧ୍ର ଓଡ଼ିଆ ଅଞ୍ଚଳରେ ତେଲୁଗୁଭାଷୀଙ୍କ ଦ୍ୱାରା ପୂଜିତା । ଏଲମାଙ୍କ ପ୍ରକୃତ ପରିଚୟ ହେଲା ସେ ରକ୍ଷାକର୍ତ୍ତ୍ରୀ । ମା'ଙ୍କର ବିଶେଷ ପୂଜା ଫାଲ୍‌ଗୁନ ଦଶମୀ ଦିନ ଝାମୁ ଯାତ୍ରା (ନିଆଁରେ ଚାଲିବା) ଅନୁଷ୍ଠିତ ହୋଇଥାଏ । ମା'ଙ୍କୁ ମୁଆଁ ଭୋଗ ହୁଏ ଓ ମା'ଙ୍କ ଆଶିଷରୁ

ଚର୍ମରୋଗରୁ ଆରୋଗ୍ୟ ମିଳେ ବୋଲି ବିଶ୍ୱାସ ଅଛି । ଏଲମା ଜାତି ସଂପ୍ରଦାୟର ଲୋକେ କୁକୁଡ଼ାଖଣ୍ଡିର ମାତା ଘୋଷାମଣିଙ୍କ ପୂଜା କରିଥାଆନ୍ତି । ଏମାନେ ମଧ୍ୟ ତନ୍ତୀ ପରିବାରର ।

### ଗଉଁଙ୍କୁ ସାତଭଉଣୀ

ବ୍ରହ୍ମପୁରରୁ ଛତ୍ରପୁର ସମୁଦ୍ର ଉପକୂଳ ସନ୍ନିକଟବର୍ତ୍ତୀ ଅଞ୍ଚଳରେ ଗଉଁଙ୍କୁ ପାଟ ଅବସ୍ଥିତ । ଲାଗୁଛି ଗଉଁ ନାମ ଗଂଜାମରୁ ଆସିଛି । ବିଶେଷରେ ଅତୀତ କାଳରେ ନୌବାଣିଜ୍ୟ କାରବାର ପାଇଁ ଏହି ଅଞ୍ଚଳ ବ୍ୟବହାରରେ ଆସୁଥିଲା । ଚିଲିକାଠାରୁ ସୋନାପୁର ବନ୍ଦର ଯାଏଁ ଏଠାରେ ସୁବିସ୍ତୃତ ଓ ସୁଦୀର୍ଘ ପାଟ ପୋତାଶ୍ରୟ ଭାବେ କାର୍ଯ୍ୟ କରୁଥିଲା । ଏଠାରେ ଠାକୁରାଣୀଙ୍କ ସାତଭଉଣୀ ମନ୍ଦିରରେ ରହି ଗଉଁଙ୍କୁ ଗ୍ରାମବାସୀଙ୍କ ଦ୍ୱାରା ବହୁ ପ୍ରାଚୀନ କାଳରୁ ପୂଜା ପାଇ ଆସୁଛନ୍ତି ।

### ପାଣ୍ଡିଆର ମା' ଦୁର୍ଗା

ପାଣ୍ଡିଆ ଗ୍ରାମ ନିକଟରେ ଋଷିକୁଲ୍ୟା ନଦୀତଟରେ ରାଉଳପଲ୍ଲୀ ଗ୍ରାମର ପାହାଡ଼ରେ ମା' ଦୁର୍ଗାଦେବୀଙ୍କ ମନ୍ଦିର ରହିଛି । ପାଖରେ ଏକ ଗୁମ୍ଫାରେ ଶିବ ଗୁପ୍ତେଶ୍ୱର ନାମରେ ପୂଜିତ । ମା'ଙ୍କ ମନ୍ଦିର ପର୍ଯ୍ୟନ୍ତ ପାହାଡ଼ ଉପରକୁ ଯିବା ପାଇଁ ପାହାଚ ରହିଛି । ପାହାଡ଼ ଶିଖରରେ ପଂଚୁପାଣ୍ଡବ ଭାବରେ ପାଂଚଖଣ୍ଡି ପଥରର ଗୁମ୍ଫା ମନ୍ଦିର ଓ ସମ୍ମୁଖରେ ସ୍ୱୟଂ କୃଷ୍ଣ ଭଗବାନଙ୍କ ନନ୍ଦିଘୋଷ ରଥର ଦାଗ ରହିଥିବା କୁହାଯାଉଛି ।

### ଉଗ୍ରତାରା

ଛତ୍ରପୁର ଭିକାରିପଲ୍ଲୀ ପଂଚାୟତରେ ଥିବା ଲୁଣ୍ଡାବାଉଁଶ ଗ୍ରାମ ସମୀପରେ ରହିଛି ମାଣ୍ଡିଆମୁଣ୍ଡି ପର୍ବତ । ଏହି ପର୍ବତ ଶିଖର ଦେଶରେ ରହିଛି ମା' ଉଗ୍ରତାରାଙ୍କ ପୀଠ । ଏଠାରେ କାର୍ତ୍ତିକ ପୂର୍ଣ୍ଣମା ଦିନ ଅଷ୍ଟପ୍ରହର ନାମଯଜ୍ଞ ସହ ବିଶେଷ ପୂଜା ହୁଏ ।

### ଛତ୍ରପୁରର ରାବଣାତ୍ମା

ଛତ୍ରପୁର ରିକାପଲ୍ଲୀଠାରେ ଯେଉଁ ଦୁଇବର୍ଷରେ ଥରେ ଠାକୁରାଣୀ ଯାତ୍ରା ଅନୁଷ୍ଠିତ ହୁଏ ତାହା ମା' ରାବଣାତ୍ମାଙ୍କ ଯାତ୍ରା ଭାବରେ ପରିଚିତ । ବିଶେଷରେ ଛତ୍ରପୁରରେ ଥିବା ତେଲୁଗୁ ଭାଷୀ ଲୋକେ ମା'ଙ୍କୁ ରାବଣ ଆତ୍ମା ବୋଲି କହିଥାନ୍ତି ଓ ମା'ଙ୍କର ପୂଜା ନିଷ୍ଠାର ସହ କରିଥାନ୍ତି । କେତେକ ଦେବୀଙ୍କୁ ରାମାୟଣାତ୍ମା ବୋଲି ମଧ୍ୟ କହିଥାନ୍ତି । ମା'ଙ୍କ ପୂଜା ଦାମଲା ମାନେ କରିଥାନ୍ତି । କଥିତ ଅଛି ରାବଣ ଏହି ଦେବୀଙ୍କୁ ପୂଜା କରି ଶକ୍ତିଶାଳୀ ହୋଇଥିଲା ।

### ମା' ଫୁଲକାଶୁଣୀ

ଚିକିଟୀର ରାଜବଂଶ ଦ୍ୱାରା ମା' ଫୁଲକାଶୁଣୀ ପୂଜିତା । ବିଶେଷରେ ଜରଡ଼ା, ଚିକିଟୀ, ଆସିକା, ଘୁମୁସର ଆଦି ଅରଣ୍ୟ ଗଡ଼ଜାତ ଅଞ୍ଚଳରେ ମା' ଫୁଲକାଶୁଣୀ ପୂଜା ପାଉଥିବା ଦେଖାଯାଏ । ବିଶେଷ କରି ଦେବୀ ଆଦିବାସୀ କନ୍ଧ ସୌରାମାନଙ୍କ ଦ୍ୱାରା କନ୍ଧୁଣୀ ମା'ଙ୍କ ଭଳି ପୂଜା ପାଉଥିଲେ । ପରେ ଗଡ଼ଜାତର ରାଜାମାନେ ମା'ଙ୍କୁ ନିଜ ଗଡ଼ରକ୍ଷକ ଇଷ୍ଟ ଭାବରେ ଗ୍ରହଣ କରିନେଇଥିବା ଜଣାଯାଏ । ଓଡ଼ିଶାର ସମୁଦ୍ରକୂଳ ସୁନାପୁର ବନ୍ଦରାଞ୍ଚଳ ବାହୁଦା ନଦୀପତ୍ତନଠାରେ ମଧ୍ୟ ମା' ଫୁଲକାଶୁଣୀଙ୍କ ମନ୍ଦିର ରହିଛି ।

### ବୟାଳୀର ମା' ହରଚଣ୍ଡୀ

ବ୍ରହ୍ମପୁରଠାରୁ ମାତ୍ର ସତର କି.ମି. ଦୂର ମନ୍ତ୍ରୀଡ଼ି ନିକଟରେ ବୟାଳୀ ଗ୍ରାମ । ଏହି ଗ୍ରାମର ପୂର୍ବ–ଐଶାନ୍ୟ କୋଣରେ ମା' ହରଚଣ୍ଡୀ– ଗାନ୍ଧୀ ମହାତ୍ମା ବରଗଛ ମୂଳରେ ପୂଜା ପାଉଛନ୍ତି । ଚୈତ୍ର ଶେଷ ମଙ୍ଗଳବାର ଦିନ ବାଦ୍ୟବାଜଣା ସହ ମନ୍ଦିର ବିହୀନ ଏହି ସମୁଦ୍ର ଦେବୀ ହରଚଣ୍ଡୀଙ୍କୁ ମଣ୍ଡା ଭୋଗ ସହ ପଣା ଅର୍ପଣ କରାଯିବାର ବିଧି ରହିଛି । ମା' ହରଚଣ୍ଡୀଙ୍କୁ ଆଗରୁ ଜଣେ ବାଉରାଣୀ ବୁଢ଼ୀ ପୂଜା କରୁଥିଲେ । ପରବର୍ତ୍ତୀ ସମୟରେ ଭାରତୀୟ

ସ୍ୱାଧୀନତା ଆନ୍ଦୋଳନର ଆରମ୍ଭ ବେଳେ ଗାନ୍ଧିଜୀଙ୍କ ଓଡ଼ିଶା ଆଗମନ କାଳରେ ୧୯୨୧ ମସିହାରେ ସ୍ୱାଧୀନତା ସଂଗ୍ରାମୀମାନଙ୍କ ଦ୍ୱାରା ଏହି ପୀଠରେ ଗୁଆ ଓ ବରଗଛ ପୋତି ଆନ୍ଦୋଳନର ବୀଜ ବପନ କରାଯାଇଥିଲା । ସେ' ଦିନରୁ ଏହି ସ୍ଥାନକୁ ହରଚଣ୍ଡୀ–ଗାନ୍ଧୀମସ୍ଥା (ମହାତ୍ମା) ବରଗଛ ଭାବରେ ନାମିତ କରାଯାଇଛି । ଇଂରେଜ ଶାସନ କାଳରେ ଏଠାରେ ପୂଜା କରିବାକୁ ପୋଲିସ ବାରଣ କରୁଥିଲା ।

### ଆଙ୍କୋଲିର ମା' କନକଦୁର୍ଗା

ବ୍ରହ୍ମପୁର ନିକଟସ୍ଥ ଆଙ୍କୋଲି ମାଳସାହିରେ ମା' କନକଦୁର୍ଗାଙ୍କ ମନ୍ଦିର ରହିଛି । ଏଠାରେ ମା'ଙ୍କର ପୂଜା ବ୍ରହ୍ମପୁର ବୁଢ଼ୀଠାକୁରାଣୀଙ୍କ ଭଳି ବାରିକମାନେ କରନ୍ତି । ଏହି ମନ୍ଦିରକୁ ଆଙ୍କୋଲି ନିବାସୀ ମହେଶ୍ୱର ରଥ ତୋଳାଇଥିଲେ । ଏଠାରେ ଗୌରୀଆମ୍ମାଙ୍କ ପୂଜା ମଧ୍ୟ ରେଡ଼ିକା ସାହିରେ କୁମାର ପୂର୍ଣ୍ଣିମାରୁ ଗୋଟିଏ ମାସ ପାଇଁ କରାଯାଏ ।

### ସୋରଡ଼ାର ମା' କନ୍ଧୁଣୀ

ଗଂଜାମ ଜିଲ୍ଲାର ଆଦିବାସୀ ଅଧ୍ୟୁଷିତ ବନାଂଚଳରେ ମା' କନ୍ଧୁଣୀଦେବୀ ପୂଜା ପାଉଥିବା ଦେଖାଯାଏ । ଏ ଦୃଷ୍ଟିରୁ ସୋରଡ଼ାର ମା' କନ୍ଧୁଣୀ ଦେବୀଙ୍କ ମହିମା ପ୍ରସିଦ୍ଧ । ଏଠାରେ ଦେହୁରୀ ସଂପ୍ରଦାୟ ମା'ଙ୍କ ପୂଜା କରିଥାନ୍ତି । ମା'ଙ୍କର କଣ୍ଟାପୀଢ଼ା ଯାତ୍ରା ଭାଦ୍ରବ କୃଷ୍ଣ ଦ୍ୱାଦଶୀ ତିଥିରୁ ୧୩ ଦିନ ପାଇଁ ଅନୁଷ୍ଠିତ ହୋଇଥାଏ । ଏହି ଯାତ୍ରାରେ ହରିଜନ ସଂପ୍ରଦାୟର ପୋଚ୍ଛୁଣୀ ମହିଳାଙ୍କଠାରେ ମା' କନ୍ଧୁଣୀ ସବାର ହୋଇଥାନ୍ତି । ଦୁଇଟି ବେଲ କାଠର ଖମ୍ବରେ ମା'ଙ୍କର ଦୋଳି ତିଆରି କରି ତା'ରି ଉପରେ ଝରକଣ୍ଟାରେ ପୀଢ଼ା ତିଆରି ସବାର ହୋଇଥିବା ମା' ସେଥିରେ ବସି ଦୋଳି ଖେଳିଥାନ୍ତି ।

### ମୃତ୍ୟାଲାମ୍ମା

ବ୍ରହ୍ମପୁରର କମାପଲ୍ଲୀ ବୈଦେନାଥଶ୍ୱର ମନ୍ଦିର ପରିସରରେ ମା' ମୃତ୍ୟାଲାମ୍ମା ଦେବୀଙ୍କ ମନ୍ଦିର ରହିଛି । ଦଶହରାବେଳେ ମା'ଙ୍କର ସ୍ୱତନ୍ତ୍ର ନବରାତ୍ର ପୂଜା ଅନୁଷ୍ଠିତ ହୋଇଥାଏ । କଥିତ ଅଛି– ମା'ଙ୍କ ପୂଜା ମୃତ୍ୟୁକୁ ଘୁଞ୍ଚାଇ ଦେଇଥାଏ । ସେଭଳି ଗୋଇଲୁଣ୍ଡିଠାରେ ମା' ଗୋଇଲୁଣ୍ଡି ଠାକୁରାଣୀଙ୍କ ମନ୍ଦିରରେ ବିଧିପୂର୍ବକ ନବରାତ୍ର ପୂଜା ମହା ସମାରୋହରେ କରାଯାଏ ।

### ଛତ୍ରପୁର ଆଖପାଖର ଶକ୍ତିପୀଠ

ଛତ୍ରପୁର କୋର୍ଟ ରେଳଷ୍ଟେସନ ପାଖରେ ମା' କାଳୀକା ଦେବୀ, ବିପୁଳିଂରେ ମା' ବୀରସିଂହୀ, ନୀଳାଦ୍ରୀପୁର ପାହାଡ଼ ଉପରେ ଥିବା ତ୍ରିଶକ୍ତି ଦେବୀ ରାମଚଣ୍ଡୀ, ରାଜପୁରରେ ରାଜେଶ୍ୱରୀ ମା' ଠାକୁରାଣୀ ଦକ୍ଷିଣକାଳୀ, ସୀତା ନଗରସ୍ଥିତ କାଳୀ, କରାପଲ୍ଲୀର ଅଷ୍ଟଧାତ୍ରୀ, ମା' କାଳୁଆ, ବାଇଧର ଠାକୁରାଣୀ, ମା'ତାଳଖାଇ, ନବଦୁର୍ଗା ଆଦିଙ୍କ ମନ୍ଦିରରେ ଦଶହରା ପର୍ବରେ ନବରାତ୍ର ପୂଜା ଭକ୍ତିର ସହ ଅନୁଷ୍ଠିତ ହୋଇଥାଏ । ରମ୍ଭା ନିକଟସ୍ଥ ସାବୁଳିଆଠାରେ ମଧ୍ୟ ମା' ବନଦୁର୍ଗାଙ୍କ ମନ୍ଦିରରେ ନବରାତ୍ରରେ ଶକ୍ତି ଉପାସନା ଶାସ୍ତ୍ରୀୟ ଧାରାରେ ଅନୁଷ୍ଠିତ ହୁଏ ।

ସାଧାରଣ ଲୋକେ ନିଜ ପରିବାରର ସୁଖ ସମୃଦ୍ଧି ପାଇଁ ଶକ୍ତି ମାତୃକାଙ୍କ ପାଇଁ ପୂଜା, ମାନସିକ ବ୍ରତ ଆଦି ପାଳନ କରିଥାନ୍ତି । ମା' ସନ୍ତାନର ବିକଳ ପ୍ରାର୍ଥନା ପ୍ରଥମେ ଶୁଣନ୍ତି ଓ ଭକ୍ତର ଆର୍ତ୍ତ ଦୁଃଖ କଷ୍ଟ ରୋଗ ନିରାକରଣ କରିଥାନ୍ତି ।

ପ୍ରାକ୍ତନ ଅଧ୍ୟକ୍ଷ, ଗଂଜାମ ମହାବିଦ୍ୟାଳୟ
ବୟାଳୀ (ମନ୍ତ୍ରୀଡ଼ି), ଗଂଜାମ



# ଉତ୍କଳୀୟ ପରମ୍ପରାରେ ଜାନୁଘଣ୍ଟିଆ ଓ ଚକୁଳିଆ ପଣ୍ଡା

ରଶ୍ମିମୟୀ ପତି

କଳା, ସଂସ୍କୃତି ଓ ସ୍ଥାପତ୍ୟରେ ଆମ ଓଡିଶା ଉତ୍କର୍ଷତା ଲାଭ କରିଥିବାରୁ ଆମ ରାଜ୍ୟର ପୁରାତନ ନାମ ଥିଲା ଉତ୍କଳ । ଆମ ଓଡିଶାର ପରମ୍ପରା ସମ୍ପୂର୍ଣ୍ଣ ନିଆରା । ଅନ୍ୟ ରାଜ୍ୟ ତୁଳନାରେ ଆମ ରାଜ୍ୟର ପରମ୍ପରା ଭିନ୍ନ ଓ ଅଗ୍ରଗଣ୍ୟ ।

ସବୁଠାରୁ ଗୁରୁତ୍ୱପୂର୍ଣ୍ଣ କଥା ହେଲା, ନିଜେ ବିଶ୍ୱନିୟନ୍ତା ଆମ ଉତ୍କଳର ରାଜା । ସେଥିଲାଗି ଆମେ ଉତ୍କଳୀୟ ସନ୍ତାନ ବୋଲି ଭାରି ଗର୍ବ ଆସେ ମନରେ । ସେଥିଲାଗି ଓଡିଶାକୁ ଦେବଭୂମି ବୋଲି କୁହାଯାଏ । ଏଠାରେ ତାଙ୍କ ଉଦ୍ଦେଶ୍ୟରେ ଏବଂ ତାଙ୍କ ନିର୍ଦ୍ଦେଶରେ ବାର ଦିନେ ତେର ଯାତ୍ରା ଅନୁଷ୍ଠିତ ହୁଏ ଏବଂ ପରଂବ୍ରହ୍ମ ଶ୍ରୀଜଗନ୍ନାଥ ମହାପ୍ରଭୁ ସେଥିରେ ସଂଶ୍ଳିଷ୍ଟ ଥାଆନ୍ତି ।

କିନ୍ତୁ ଭାବିଲେ ମନରେ ଦୁଃଖ ଓ ବିଷାଦ ଖେଳିଯାଏ ଯେତେବେଳେ ଆମେ ଅନୁଭବ କରୁ ଆମର ପ୍ରାଚୀନ ପରମ୍ପରା ଏବେ ବିଲୁପ୍ତର ଦ୍ୱାର ଦେଶରେ । ଆମର ପ୍ରାଚୀନ ଲୋକନୃତ୍ୟ ଲୋକଗୀତ ପ୍ରାୟ ସବୁ ବିଲୁପ୍ତ ହେବାକୁ ବସିଲାଣି ।

ସେହି ଲୋକନୃତ୍ୟ ଓ ଲୋକଗୀତର ତାଳେତାଳେ ନିଜକୁ ହଜାଇ ଦେଇଥିବା କେତେ ଯେ ଚଳଚଂଚଳ ମାନବ ନିଜର ଜୀବନ ଜୀବିକାକୁ ହରାଇ ବସିଲେଣି, ଏହା କହିଲେ ଅତ୍ୟୁକ୍ତି ହେବ ନାହିଁ । ନୀରବ ଦର୍ଶକ ସାଜି ସମାଜର ଆଢୁଆଳରେ ରହି ଉଗ୍ର ଆଧୁନିକତାର ସହ ତାଳ ମିଳାଇ ବଂଚିବାକୁ ଚେଷ୍ଟା କରୁଛନ୍ତି । କର୍ପୂର ଉଡି କନା ଖଣ୍ଡିଏ ପଡି ରହିଲା ପରି ସେମାନେ ଲୁକ୍କାୟିତ ଅବସ୍ଥାରେ ଅଛନ୍ତି, ତାଙ୍କର ପ୍ରାଚୀନ ପରମ୍ପରାକୁ ବଳିଦାନ ଦେଇ । ବଣମଲ୍ଲୀ



ପରି କୋଉ ସନ୍ଧିରେ ଲୁଚି ଯାଇଛନ୍ତି । ଫଳରେ ତାଙ୍କ ପ୍ରତିଭା ବିକଶିତ ହୋଇପାରୁନି । ଛାତିକୁ ପଥର କରି ସେମାନେ ଝୁରି ହେଉଛନ୍ତି ତାଙ୍କ ପ୍ରାଚୀନ ପରମ୍ପରାକୁ ।

ଯଦି କେହି କେବେ ଇଛା କରେ ପ୍ରାଚୀନ ପରମ୍ପରାକୁ ଲୋକଲୋଚନକୁ ଆଣିବାକୁ, ତେବେ ସେ ନାନା ପ୍ରକାର କଟୁ ମନ୍ତବ୍ୟ ଓ ଟାହି ଟାପରାର ସମ୍ମୁଖୀନ ହୁଏ । ତେବେ ଆମ ଆଖି ଆଗରେ କଣ ଆମ ପ୍ରାଚୀନ ପରମ୍ପରା ଐତିହ୍ୟ ବିଲୁପ୍ତ ହୋଇଯିବ ?

ଆମର କ'ଣ ଏଥିପ୍ରତି କିଛି ଅବଦାନ ରହିବା ଜରୁରୀ ନୁହେଁ କି ? ଆମର ସଂସ୍କୃତିର ମାଧୁର୍ଯ୍ୟ କଣ ଲୋପ ପାଇଗଲେ ଆମେ ତାକୁ ସହ୍ୟ କରିପାରିବା ?

ତେବେ ନିଜ ଜୀବନ ଜୀବିକା ପଥରୁ ଅପସରି ଯାଇଥିବା ଜଣେ ଚଳ ଚଂଚଳ ମାନବ ହେଲେ ଜାନୁ ଘଂଟିଆ ।

'ଜାନୁ' ଅର୍ଥାତ ଜଙ୍ଘ, ଜଙ୍ଘରେ ଘଣ୍ଟି ବାନ୍ଧି ସେମାନେ ରାସ୍ତାରେ ବୁଲନ୍ତି । ସେମାନେ ପୁର ପଲ୍ଲୀ ଅଂଚଳରେ ଅଧିକ ସଂଖ୍ୟାରେ ଦେଖାଯାଆନ୍ତି । ଚୋରି ଡକାୟତି କିମ୍ବା କୌଣସି ମନ୍ଦ ଉଦ୍ଦେଶ୍ୟ ସେମାନଙ୍କର ନୁହେଁ । କୌଣସି ପ୍ରକାରେ ଏମାନେ କ୍ଷତିକାରକ ନୁହଁନ୍ତି । ଭିକ୍ଷାବୃତ୍ତି ଏମାନଙ୍କର ମୁଖ୍ୟ ପେଶା । ଭିକ୍ଷା ଗ୍ରହଣ କରିବା ପରେ ଏମାନେ ଆଶୀର୍ବାଦର ହାତଟିଏ ଟେକି ଦିଅନ୍ତି ମଥା ଉପରକୁ । ସକାଳୁ ସକାଳୁ ରାସ୍ତାରେ ଘଣ୍ଟି ଶବ୍ଦ ଶୁଣିଲେ, ଦାଣ୍ଡକୁ ଦଉଡି ଆସନ୍ତି ସ୍ତ୍ରୀଲୋକ, ପୁରୁଷ ତଥା ଛୋଟ ପିଲା । ଏମାନଙ୍କୁ ଭିକ୍ଷା ଦେବା ଏକ ପୁଣ୍ୟ କାମ ବୋଲି ଗ୍ରାମାଂଚଳ ଲୋକମାନଙ୍କର ଧାରଣା ଥାଏ । ଏମାନଙ୍କୁ କେହି ଅଣଦେଖା କରନ୍ତି ନାହିଁ ଓ ଶୂନ୍ୟ ହସ୍ତରେ ଫେରାନ୍ତି ନାହିଁ । କିଛି ଚାଉଳ ସହିତ ପନିପରିବା ମଧ୍ୟ ଏମାନଙ୍କୁ ଭିକ୍ଷା ଦାନ କରାଯାଏ । ଭିକ୍ଷା ପାଇଲା ମାତ୍ରେ ସେମାନେ ଆଶୀର୍ବାଦ କରନ୍ତି । ସେ ଦୁଇ ପଦ ଆଶୀର୍ବାଦରେ ସ୍ତ୍ରୀଲୋକମାନେ କୃତ୍ୟ କୃତ୍ୟ ହୋଇଯାଆନ୍ତି ଯେପରି । ମାଆମାନେ ତାଙ୍କ ପୁଅଝିଅମାନଙ୍କୁ ଆଶୀର୍ବାଦ କରିବା ପାଇଁ ଜାନୁଘଣ୍ଟିଆଙ୍କୁ ଅନୁରୋଧ କରନ୍ତି ।

ସେମାନଙ୍କର ଆଶୀର୍ବାଦ ନିଶ୍ଚୟ ଫଳପ୍ରାପ୍ତି ହୁଏ ବୋଲି ଲୋକମାନଙ୍କର ବିଶ୍ୱାସ ଥାଏ । ତାଙ୍କର ଜଙ୍ଘରେ ବନ୍ଧାହୋଇଥିବା ଘଣ୍ଟିକୁ ଧୋଇ ସେଇ ଘଣ୍ଟିଧୁଆ ପାଣିକୁ ପାଦୁକା ପରି ସେବନ କରନ୍ତି ଗାଆଁ ଗହଳିର ଲୋକେ । ଯେଉଁ ଛୋଟ ଛୁଆ କଥା କହି ପାରେନି, ସେ ଏହି ପାଣିକୁ ସେବନ କଲେ ଶୀଘ୍ର କଥା କହେ ବୋଲି ଲୋକଙ୍କର ବିଶ୍ୱାସ ଥାଏ । ନିଃସନ୍ତାନମାନେ ମଧ୍ୟ ସେହି ପାଣିକୁ ସେବନ କଲେ ସନ୍ତାନ ପ୍ରାପ୍ତ ହେବେ ବୋଲି ସ୍ତ୍ରୀ ଲୋକଙ୍କର ବିଶ୍ୱାସ ଥାଏ ।

ଏମାନେ ଗ୍ରାମରେ ତିନିଥର ପରିକ୍ରମା କରି ନିଜ ଗ୍ରାମକୁ ଫେରିଯିବାର ନିୟମ ଥାଏ ।

ଏମାନେ ସାଧାରଣତଃ ଗେରୁଆ ବସ୍ତ୍ର ପରିଧାନ କରନ୍ତି । ନିଜ ବକ୍ଷ, ବାହୁ ଏବଂ କପାଳରେ ଚନ୍ଦନ ତିଳକ, ଗଳାରେ ରୁଦ୍ରାକ୍ଷ ମାଳ, ହାତରେ ତମ୍ବା ଖଡୁ ଏବଂ ଗୋଟିଏ କମଣ୍ଡଳୁ ହାତରେ ଧରିଥାନ୍ତି । ଝୁଲା ମୁଣିଟିଏ ମଧ୍ୟ କାନ୍ଧରେ ଝୁଲାଇଥାନ୍ତି ଭିକ୍ଷା ଗ୍ରହଣ କରିବା ଉଦ୍ଦେଶ୍ୟରେ । ଏମାନେ ନିଜକୁ ପର୍ଶୁରାମଙ୍କର ଭକ୍ତ ବୋଲି କହନ୍ତି । ସବୁବେଳେ ରାମ ଓ ପର୍ଶୁରାମଙ୍କର ନାମକୁ ଗାନ କରି ରାସ୍ତା ପରିକ୍ରମା କରନ୍ତି ।

ତୁଣ୍ଡେ ତୁଳସୀ ଶାଳଗ୍ରାମ, ମୁଖରେ ଥିବ ରାମ ରାମ ।

ଏଇ ଦୁଇ ଧାଡି ସହିତ ଜୟ ଜୟ ରାମ, ଜୟ ପର୍ଶୁରାମ ଗାନ କରି ସେମାନେ ଭିକ୍ଷା ବୃତ୍ତି କରନ୍ତି ।

ଏମାନେ ସାଧାରଣତଃ ନୟାଗଡ, ଖୋର୍ଦ୍ଧା, ରଣପୁର, ଜଗତସିଂହପୁର, ଘୁମୁସର (ବର୍ତ୍ତମାନର ଭଞ୍ଜନଗର), ଗଞ୍ଜାମ, କଟକ, ପୁରୀ ଆଦି ଅଂଚଳରେ ଦେଖିବାକୁ ମିଳନ୍ତି ।

ସେହିପରି ନିଜ ଜୀବିକାକୁ ହରାଇଥିବା ଆଉ ଏକ ଚଳଚଂଚଳ ଗୋଷ୍ଠୀର ମଣିଷ ହେଲେ 'ଚକୁଳିଆ ପଣ୍ଡା' ।

ସତ୍ୟଯୁଗରେ ପରମବ୍ରହ୍ମ ପ୍ରଭୁ ଶ୍ରୀବିଷ୍ଣୁଙ୍କର କଥାଟିଏ । ସେତେବେଳେ ପ୍ରବଳ ପ୍ରତାପୀ ତଥା ମହା ଅଭିମାନୀ ମହାରାଜା ବଳି ସର୍ବଦା ଦାନ ଧର୍ମରେ ଲିପ୍ତ ରହନ୍ତି । ତାଙ୍କଠାରୁ ଦାନ ଗ୍ରହଣ କରିବେ ବୋଲି ପ୍ରଭୁ ବାମନ ଅବତାରରେ ଧରାବତରଣ କରିଥାନ୍ତି । ସେତେବେଳେ ତାଙ୍କ ବେଶଭୂଷା ଥିଲା ଏକ ଚକୁଳିଆ ପଣ୍ଡା ସଦୃଶ । ଅର୍ଥାତ ମୁଣ୍ଡରେ ଏକ ତାଳପତ୍ରରେ ନିର୍ମିତ

ଛତା, ହାତରେ କମଣ୍ଡଳୁ,କାନ୍ଧରେ ଭିକ୍ଷା ଝୁଲି, ବକ୍ଷ, ବାହୁ ଏବଂ କପାଳରେ ଚନ୍ଦନ ତିଳକ ଏବଂ କର୍ଣ୍ଣରେ କୁଣ୍ଡଳ । ତେଣୁ ସତ୍ୟଯୁଗଠାରୁ ଚକୁଳିଆ ପଣ୍ଡାଙ୍କର ପରମ୍ପରା ରହି ଆସିଛି ବୋଲି ବିଶ୍ୱାସ କରାଯାଏ ।

ପୁନଶ୍ଚ କଥିତ ଅଛି ଯେ, ଦ୍ୱାପର ଯୁଗରେ ଦୁର୍ଯ୍ୟୋଧନଙ୍କ ପିତା ଧୃତରାଷ୍ଟ୍ର ଓ ମାତୁଳ ଶକୁନିଙ୍କର କୁ-ପରାମର୍ଶରେ ପାଣ୍ଡବମାନଙ୍କ ପାଇଁ ଜଉଗୃହ ନିର୍ମାଣ କରିଥିଲେ ଯେଉଁଥିରେ କି ଅଗ୍ନି ସଂଯୋଗ କରିବା ଦ୍ୱାରା ପାଣ୍ଡବମାନେ ପୋଡି ହୋଇ ମୃତ୍ୟୁବରଣ କରିବେ । ତେଣୁ ଏହା ଥିଲା ଏକ ହତ୍ୟାର ଷଡଯନ୍ତ୍ର । କିନ୍ତୁ ସୌଭାଗ୍ୟବଶତଃ ସେମାନେ ତାହା ଜାଣିପାରିଥିଲେ ଏବଂ ସୁଡଙ୍ଗ କରି ସେଠାରୁ ଲୁଚି ପଳେଇଥିଲେ । ତାଙ୍କ ସହିତ ମାତା କୁନ୍ତୀ ମଧ୍ୟ ଥିଲେ । ମାତା କୁନ୍ତୀଙ୍କ ସମେତ ପଂଚୁପାଣ୍ଡବ ଜଙ୍ଗଲରେ ଛଦ୍ମବେଶରେ ରହୁଥିଲେ । ସେଠାରେ ମହାବଳୀ ଦ୍ୱିତୀୟ ପାଣ୍ଡବ ଭୀମ 'ଚକୁଳିଆ ପଣ୍ଡା' ବେଶ ଧାରଣ କରି ଭିକ୍ଷାବୃତ୍ତି କରୁଥିଲେ ବୋଲି ପୁରାଣ ବର୍ଣ୍ଣିତ ଅଛି ।

ଧଳାରଙ୍ଗର ଧୋତି, କାନ୍ଧରେ ଧଳାଗାମୁଛା, ମୁଣ୍ଡରେ ତାଳପତ୍ର ଛତା ଓ ହାତରେ ଭିକ୍ଷା ଝୁଲି ଧରି ମହାବଳୀ ଭୀମ ଭିକ୍ଷାବୃତ୍ତି କରନ୍ତି ବୋଲି ମହାଭାରତରେ ଲିଖିତ ଅଛି । ତେଣୁ ଚକୁଳିଆ ପଣ୍ଡାଙ୍କର ବଂଶ ଦ୍ୱାପର ଯୁଗରୁ ରହିଆସିଛି ବୋଲି କେତେକଙ୍କର ମତ ରହିଛି ।

ଏମାନେ ମଧ୍ୟ ପୁରପଲ୍ଲୀରେ ଦେଖାଯାଆନ୍ତି । ଏମାନେ ସାଧାରଣତଃ ବିଷ୍ଣୁଭକ୍ତ, ତଳସ୍ତରର ବ୍ରାହ୍ମଣ ଲୋକମାନେ ଏହି ଗୋଷ୍ଠୀରେ ଅନ୍ତର୍ଭୁକ୍ତ ଥାଆନ୍ତି । ମୁଣ୍ଡରେ ପଗଡି (ଗାମୁଛା) ଭିଡିଥାନ୍ତି, ହାତରେ ତାଳପତ୍ର ଛତା, ବେକରେ ରୁଦ୍ରାକ୍ଷ ମାଳ, ହାତରେ ତମ୍ବା କିମ୍ବା ପିତଳ ଡାଳ, କାନ୍ଧରେ ଭିକ୍ଷାଝୁଲି, ବାହୁ, ବକ୍ଷ ଓ କପାଳରେ ଚନ୍ଦନ ତିଳକରେ ସାଜସଜ୍ଜା ହୋଇ ଏମାନେ ଗ୍ରାମରେ ପରିକ୍ରମା କରନ୍ତି । କେତେକ ଚକୁଳିଆ ପଣ୍ଡା କେନ୍ଦେରା ବଜାଇ ଗୀତ ଗାଇ ରାସ୍ତାରେ ଯାଆନ୍ତି ।

ସୁମଧୁର କଣ୍ଠରେ କେନ୍ଦେରାରେ ସୁର ମିଶାଇ ଗୀତ ଗାନ କରି ଦାଣ୍ଡରେ ପରିକ୍ରମା କରନ୍ତି ।

କିନ୍ତୁ ଆଜିର ଅତ୍ୟାଧୁନିକ ଯୁଗରେ ହଜିଯାଇଛି ସେ କେନ୍ଦେରାର ମଧୁର ସ୍ୱର, ହଜିଯାଇଛି ସେ ଜାନୁଘଣ୍ଟିଆର ଘଣ୍ଟିର ଧ୍ୱନି । ଆଉ ଶୁଭୁନି ସେମାନଙ୍କର ରାମ, ପର୍ଶୁରାମର ଜୟ ଜୟକାର ଗୀତ ।

ଆଜିର ସମାଜରେ ଲୋକମାନେ ପାଶ୍ଚାତ୍ୟ ସଭ୍ୟତାକୁ ଅନୁସରଣ କରି ଏକ ଉଗ୍ର ଆଧୁନିକ ସଭ୍ୟତାକୁ ଆପଣାଉଛନ୍ତି । ଗ୍ରାମାଂଚଳ ଛାଡି ଲୋକ ସହରାଭିମୁଖୀ ହେବାର ଦେଖାଯାଉଚି । ଗ୍ରାମର ପରିବେଶ, ଗ୍ରାମର ସଂସ୍କୃତି ପରମ୍ପରା ଏବେ ଦେଖିବା ସ୍ୱପ୍ନ ହେଇଗଲାଣି । କିନ୍ତୁ ହଜିଯାଇଚି 'ଚକୁଳିଆ ପଣ୍ଡା'ର କେନ୍ଦେରାର ସ୍ୱର । 'ଜାନୁଘଣ୍ଟିଆ'ଙ୍କର ବଂଶ ପ୍ରାୟ ବିଲୁପ୍ତ ହୋଇସାରିଲାଣି ।

ଭୁବନେଶ୍ୱର



# ଷଡ଼୍‌ଦର୍ଶନର ପର୍ବ ଦୀପାବଳି ଓ କାଳୀପୂଜା

ପଣ୍ଡିତ ଅକ୍ଷୟ କୁମାର ପତି

### ବିଶ୍ୱ ଦରବାରର ଧର୍ମଧାରା ଝଲକ

ସମଗ୍ର ବିଶ୍ୱରେ ବିଭିନ୍ନ ଧର୍ମଧାରା ସମୟ-ସଂସ୍କୃତି-ସଂସ୍କାର, ଚାପରେ ଅଭିନିବିଷ୍ଟ ହୋଇ ସମାଜକୁ ଅଭିନବ ସଂସ୍କାର ବାର୍ତ୍ତା ପ୍ରଦାନ କରିଚାଲିଛି । ଜାତି-ଧର୍ମ-ଉଦାରତା, ବିଶ୍ୱଭ୍ରାତୃତ୍ୱ ବନ୍ଧନ ଏହାର ମୂଳମନ୍ତ୍ର ହେଲେ ମଧ, ସ୍ଥାନ-କ୍ଷେତ୍ର-ପରମ୍ପରା ବିଭିନ୍ନ ଶାଖା-ପ୍ରଶାଖା ପରିକଳ୍ପନା କରି ନିଜ ନିଜର, ମହିମା ଗରୀୟାନ ପ୍ରତିପାଦନ କରିବାକୁ ପଶ୍ଚାତ୍‌ପଦ ହେଉନାହିଁ । କାରଣ, ସମୟର ସ୍ରୋତ ଅଭିନବ ସମାଜଗଠନ କରିବା ପାଇଁ ନବ୍ୟ-ଭବ୍ୟ-ସଭ୍ୟତା ପ୍ରତିବନ୍ଧକ ମୁଦ୍ରା ତୋଳିଛି । ଏହା ହିଁ ବିଶ୍ୱସ୍ତରୀୟ ସ୍ଥିତିର ବୈଚିତ୍ର୍ୟମୟ ସଭ୍ୟତାର ବୈଶିଷ୍ଟ୍ୟ ।

### ଭାରତୀୟ ଧର୍ମଧାରା

ପୁଣ୍ୟଭୂମି ଭାରତ । ଧର୍ମଭାବ, ଭାରତୀୟମାନଙ୍କର ପ୍ରାଣତନ୍ତ୍ରୀର ବାର୍ତ୍ତା ଅଟେ । ସେ' ଦେଖେ ତା'ର ଜୀବନଚର୍ଯ୍ୟା ମଧ୍ୟରେ ଧର୍ମର ଅସ୍ତିତ୍ୱକୁ । ଜୀବନର ପ୍ରତ୍ୟେକ ମୁହୂର୍ତ୍ତରେ ପ୍ରତ୍ୟେକ ମୋଡ଼ରେ ଶୟନେ, ସପନେ ତା'ର କର୍ମମୟ ଜୀବନକୁ ଧର୍ମର ତରାଜୁରେ ମାପ କରିବାକୁ ପଶ୍ଚାତ୍‌ପଦ ହୁଏ ନାହିଁ । ତାହାର ଧର୍ମଧାରଣା ଏବଂ ମୀମାଂସା ଏହି ଯେ – ଦଶଟି କର୍ମେନ୍ଦ୍ରିୟ ଓ ଜ୍ଞାନେନ୍ଦ୍ରିୟ ସମଷ୍ଟି ରୂପକ ଜୀବନ ରଥରେ ସେ' ମନକୁ ସାରଥି ସଜାଇ ସଂସାର ବଡ଼ଦାଣ୍ଡରେ ଆଧ୍ୟାତ୍ମିକ ଭିତ୍ତିଭୂମି ସ୍ଥାପନ କରିବ । ଏଣୁ ଯଜୁର୍ବେଦରେ କୁହାଯାଇଅଛି –

''ମନୋଯଜ୍ଞେନ କଳ୍ପନ୍ତାମ ଆତ୍ମାଯଜ୍ଞେନ କଳ୍ପନ୍ତାମ୍'' ।



ଅର୍ଥାତ୍ – ମନକୁ ଯଜ୍ଞ ରୂପକ ମଙ୍ଗଳ କର୍ମରେ ନିଯୁକ୍ତ କରନ୍ତୁ ଆତ୍ମାକୁ ଯଜ୍ଞରୂପକ ମହତ କର୍ମରେ ବିନଯୋଗ କରନ୍ତୁ ।

### ଓଡ଼ିଶାର ଐତିହ୍ୟ

ବର୍ତ୍ତମାନ ପ୍ରାଗ୍-ଐତିହାସିକ ଯୁଗର ଓଡ଼ିଶା ପୃଷ୍ଠା ଉନ୍ମୋଚନ କରି ପରମ୍ପରାର ପର୍ଯ୍ୟାଲୋଚନା କରନ୍ତୁ । ଧର୍ମଧାରାର ସ୍ଥିତି ଯଥା ଓଡ଼ିଶାର ଧର୍ମଧାରାର ସ୍ଥିର ସିଦ୍ଧାନ୍ତ, ଉପାସନାର ଭିତ୍ତିଭୂମି କେବେ ଓ କିପରି ?

ଖ୍ରୀଷ୍ଟିୟ ଷଷ୍ଠ ଶତକରେ ଶାକ୍ତ ଧର୍ମ ପ୍ରସାର ଘଟି ମହିଷମର୍ଦ୍ଦିନୀ ତଥା ସପ୍ତମାତୃକା ମୂର୍ତ୍ତି ପୂଜାର ଅୟମାରମ୍ଭ ଘଟିଥିଲା । ତଦନ୍ତେ ଖ୍ରୀଷ୍ଟିୟ ଅଷ୍ଟମ-ନବମ ଶତାବ୍ଦୀରେ ଭୌମକରମାନଙ୍କ ଅମଳରୁ ଶୈବ-ଶାକ୍ତ ଧର୍ମ ତଥା ତାନ୍ତ୍ରିକ ବୌଦ୍ଧ ଧର୍ମ ମିଶ୍ରଣ ପ୍ରଭାବରୁ ଚତୁଷଠି ଯୋଗିନୀ ପୂଜା ପ୍ରଚଳିତ ହୋଇଥିଲା । ଏହି ଚଉଷଠି ଯୋଗିନୀ ପୂଜାରୁ କାଳୀକା ପୂଜାର ପରମ୍ପରା ଅୟମାରମ୍ଭ ଘଟିଥିବାର ଅନୁମାନ କରାଯାଏ । ସୁତରାଂ କାଳୀକା ପୂଜାର (ଓଡ଼ିଶାରେ) ଅୟମାରମ୍ଭ ସେହି ଭୌମକରମାନଙ୍କ ଅମଳରୁ ଅର୍ଥାତ ଖ୍ରୀଷ୍ଟିୟ ଅଷ୍ଟମ-ନବମ ଶତକରୁ ଘଟିଥିବାର ଅନୁମାନ କରାଯାଏ । ହିନ୍ଦୁ ସଂସ୍କୃତିର କର୍ମକାଣ୍ଡ ଉନ୍ମୋଚନ କଲେ ଚଉଷଠି ଯୋଗିନୀ ପୂଜାରେ କାଳୀକାଙ୍କ ସ୍ଥାନ ନବମରେ ଥିବାର ସୁସ୍ପଷ୍ଟ ପ୍ରମାଣ ମିଳେ । ଓଡ଼ିଶା ସଂସ୍କୃତି ଇତିହାସ କହେ, ଓଡ଼ିଶାର ଭୁବନେଶ୍ୱର ନିକଟବର୍ତ୍ତୀ ହୀରାପୁରର ଚଉଷଠି ଯୋଗିନୀ ପୀଠ ଭୌମକରମାନଙ୍କ କୀର୍ତ୍ତିକଳାପ ରୂପେ ସ୍ମରଣୀୟ ।

ପ୍ରସଙ୍ଗକ୍ରମେ କଳା-ସ୍ଥାପତ୍ୟ ମୂର୍ତ୍ତିପୂଜା ପ୍ରଗତିବାଦ ବିବର୍ତ୍ତନବାଦ ମଧ୍ୟରେ ଖ୍ରୀଷ୍ଟପୂର୍ବ ୨୫୦୦ବର୍ଷ ପୂର୍ବରୁ ହରପ୍ପା-ମହେଞ୍ଜୋଦାରୋ ସଭ୍ୟତାରୁ ଜନମାନସକୁ ସମୃଦ୍ଧ କରି ଆସିଥିଲେ ମଧ୍ୟ ପଞ୍ଚଦଶ ଶତାବ୍ଦୀରୁ ସାରଳା ଦାସଙ୍କ ଯୁଗରୁ ନବ୍ୟ-ଭବ୍ୟ-ମନୋରମ୍ୟ ରୂପରେଖ ପ୍ରାପ୍ତ ହୋଇଆସୁଅଛି । ସେହି ସମୟରୁ ଓଡ଼ିଶାର ଓଡ଼ିଆ ପରମ୍ପରା ଧର୍ମଧାରାର ସମୃଦ୍ଧି ଘଟି ଅଦ୍ୟାବଧି ପ୍ରଗତି ସୋପାନ ଅତିକ୍ରମ କରିଚାଲିଛି । ଏହିଠାରୁ ଓଡ଼ିଶାର ଧର୍ମଧାରାର ପରମ୍ପରାକୁ ପର୍ଯ୍ୟାଲୋଚନା ସ୍ଥଗିତ ରଖି ମୁଖ୍ୟ କଥାବସ୍ତୁ ଦୀପାବଳିକୁ ଆସନ୍ତୁ ।

ଦୀପ ଶବ୍ଦ ଆଲୋକ ଅଟେ । ଦୀପମାନଙ୍କ ସମାହାରକୁ ଦୀପାବଳି କହିଥାଉଁ ।

ପବିତ୍ର କାର୍ତ୍ତିକ ମାସ ଅମାବାସ୍ୟା ଦିନ ଦୀପାବଳି ପର୍ବ ପାଳିତ ହୋଇଥାଏ । ଏହିଦିନ ସନ୍ଧ୍ୟା ଉତ୍ତାରୁ ଆରମ୍ଭ ହୁଏ ଆନନ୍ଦ ଉଲ୍ଲାସର ଆଲୋକ ପର୍ବ । ଜାତି-ଧର୍ମ-ବର୍ଣ୍ଣ ନିର୍ବିଶେଷରେ ସମସ୍ତ ହିନ୍ଦୁ ସମ୍ପ୍ରଦାୟ ସାତପୁରୁଷଙ୍କୁ ଆବାହନ କରି ପିଣ୍ଡଦାନ ଶ୍ରାଦ୍ଧ ଆଲୋକବର୍ତ୍ତିକା ପ୍ରଦାନ କରିଥାନ୍ତି । ପିଣ୍ଡଦାନ ସମୟରେ ସମଗ୍ର ହିନ୍ଦୁ ସମାଜ କହେ-

''ପିତୃଲୋକଂ ପରିତ୍ୟଜ୍ୟ ଆଗତ୍ୟାଯେ ମହାଳୟେ
ଉଜ୍ଜ୍ୱଳ ଜ୍ୟୋତିଷାଂ ମାର୍ଗ ପ୍ରପଶ୍ୟନ୍ତୋ ବ୍ରଜନ୍ତୁ ତେ''

ଭାରତୀୟ ପରମ୍ପରାରେ ଛଅଟି ଦର୍ଶନତତ୍ତ୍ୱ ଦେଖିବାକୁ ମିଳେ ।

ଏହିଦିନ ଧର୍ମ-ଅର୍ଥ-କାମ-ମୋକ୍ଷ-ଲୋକାର୍ଥ ଏବଂ ତତ୍ତ୍ୱାର୍ଥ ଏହି ଛଅଟି ଦିଗ୍‌ଦର୍ଶନ (ଦର୍ଶନତତ୍ତ୍ୱ)ର ମୀମାଂସା ଘଟିଥାଏ । ସୁତରାଂ ଏହି ଦିନକୁ ପରମ ରହସ୍ୟମୟ ପରମତତ୍ତ୍ୱଯୁକ୍ତ ପରମୋତ୍କୃଷ୍ଟ ପରମାନନ୍ଦ ଦାୟକ ଦିବସ କୁହାଯାଏ । ବର୍ତ୍ତମାନ ଦୀପାବଳି ପର୍ବର ଷଡ଼ଦର୍ଶନ ସମ୍ପର୍କରେ ସଂକ୍ଷିପ୍ତ ଆଲୋଚନାକୁ ଆସନ୍ତୁ ।

ହିନ୍ଦୁଧର୍ମ ସଂସ୍କାର ସଂସ୍କୃତି, ସଙ୍କଳ୍ପ ମନନ କ୍ରିୟାରୁ କର୍ମକାଣ୍ଡସ୍ଥ ବେଦମନ୍ତ୍ରର ସମୃଦ୍ଧିଲାଭ ଘଟିଅଛି । ପ୍ରତ୍ୟେକ ପୂଜାପର୍ବାଣିରେ ବ୍ରାହ୍ମଣ ଆସି ମନ୍ତ୍ରପାଠ ନ କଲେ ବ୍ରତୀ ଯଜମାନର ସଂକଳ୍ପ ସିଦ୍ଧି ହୁଏ ନାହିଁ । ଏଣୁ ମନର ପ୍ରବଳ ଶୁଭେଚ୍ଛା ନାମ ସଂକଳ୍ପ ଏବଂ ମନ୍ତ୍ରର ମନନ କ୍ରିୟାରୁ ସୃଷ୍ଟି ହୋଇଥାଏ ଅଘ + ମର୍ଷଣ ପ୍ରକ୍ରିୟା । ବ୍ୟାକରଣରେ ଅଘ ମର୍ଷଣ ହିଁ ଅଘମର୍ଷଣ ଅଟେ । ଅନ୍ୟ ଭାଷାରେ କହିଲେ ମନ୍ତ୍ର ପଠନ ଶ୍ରବଣ ସମୟରେ ଶାରୀରିକ ତନ୍ତୁ ସମୂହର ଶକ୍ତିଶାଳୀ ଶବ୍ଦତରଙ୍ଗ ଏବଂ ବାୟୁମଣ୍ଡଳର କଂପନ ମାଧ୍ୟମରୁ ଜନ୍ମନିଏ ଅଘମର୍ଷଣ ପ୍ରକ୍ରିୟା । ଏହି ପ୍ରକ୍ରିୟାରୁ ମନ୍ତ୍ରର ପାବନୀଶକ୍ତି ଜାଗ୍ରତ ହୋଇ ଆଦେଶକୁ ସ୍ୱାଗତ କରିବାରୁ ସଙ୍କଳ୍ପ ସିଦ୍ଧି ଘଟିଥାଏ । ଏହା ହିଁ ପର୍ବପର୍ବାଣିର ସଫଳ ରୂପାୟନ ମାତ୍ର । ଏବେ ଷଡ଼ଦର୍ଶନର ସାମାନ୍ୟ କଥନକୁ ଧ୍ୟାନ ଦିଅନ୍ତୁ ।

୧. ଧର୍ମ (ଧୃ + ମ) କର୍ତ୍ତବ୍ୟକୁ ବୁଝାଏ । ପୁତ୍ ନାମକ ନରକରୁ ଉଦ୍ଧାର ପାଇଁ ପୁତ୍ର ଶବ୍ଦ ପ୍ରଶସ୍ତ ଅଟେ । ସୁତରାଂ ଆମ ସଂସ୍କୃତିରେ ପୁତ୍ର ପୌତ୍ରାଦିକ୍ରମେ ପାରମ୍ପରିକ ଭାବେ ଦୀପାବଳି (ପୟା ଶ୍ରାଦ୍ଧ) ବଂଶ ମର୍ଯ୍ୟାଦା ରକ୍ଷା କରି ପାଳନ କରାଯାଉଅଛି । ଏହା ହିଁ ଦୀପାବଳିରେ

ପୁତ୍ରର ପିତୃପୁରୁଷମାନଙ୍କ ପାଇଁ (ପୟାଶ୍ରାଦ୍ଧ) ପିତୃଯଜ୍ଞ ଏକ ଦାର୍ଶନିକ ତତ୍ତ୍ୱ ଅଟେ ।

୨. ଅର୍ଥ ସାଲ ତମାମି - ବର୍ଷ ଶେଷର ହିସାବ ନିକାଶରୁ ଧନତେରଶ (ଧନ୍ୱନ୍ତରୀ ଜୟନ୍ତୀ) ଭାବେ ଘୋଷଣା କରାଯାଇଅଛି । ଏହି ପର୍ବରେ ବ୍ରହ୍ମସ୍ୱରୂପିଣୀ ସର୍ବେଶ୍ୱର୍ଯ୍ୟଶାଳୀନୀ କାଳୀକା ଦେବୀ ଲକ୍ଷ୍ମୀ ରୂପରେ ବିରାଜମାନ ହୋଇଥାନ୍ତି । କଥିତ ଅଛି, ହିନ୍ଦୁମାନଙ୍କ ବ୍ରହ୍ମରନ୍ଧ୍ରରେ ଏହି ସମୟରେ କାଳୀକା ଦେବୀ ବିରାଜମାନ କରୁଥିବାରୁ ସେମାନେ ପୁରୋଧାଙ୍କୁ ଡକାଇ ପୁରୋଧାମାନଙ୍କ ଦ୍ୱାରା ତ୍ରିକୋଣ-ପଟକୋଣ-ନବକୋଣ ଅଙ୍କନ କରାଇ ଷଡ଼ାଙ୍ଗନ୍ୟାସ ପୂର୍ବକ ପ୍ରକୃତିରାଣୀଙ୍କୁ ଅର୍ଚ୍ଚନା କରିଥାନ୍ତି । ଏଥିପାଇଁ କାଳୀକାଙ୍କୁ ସତ୍ୱ ରଜ ତମ ତ୍ରିଗୁଣାତ୍ମିକା ଦେବୀ କୁହାଯାଏ । ଯେଉଁଠାରେ ପୟାଶ୍ରାଦ୍ଧ କରାଯାଏ ସେହି ସ୍ଥାନରେ ଯେଉଁ ଚକ୍ର ପୂଜା କରାଯାଏ, ତାହାକୁ ଷଡ଼ାଙ୍ଗ ସଂସ୍କାର ବା ଅର୍ଘ୍ୟ ସଂସ୍କାର କୁହାଯାଏ । ଏହି ଚକ୍ର ପୂଜା ବୌଦ୍ଧିକ ସଂସ୍କୃତିର ନିଦର୍ଶନ ତତ୍ତ୍ୱ ଅଟେ । ଭୌମକରମାନଙ୍କ ଅମଳରେ ଶୈବଶାକ୍ତଧର୍ମ ସହିତ ତାନ୍ତ୍ରିକ ବୌଦ୍ଧଧର୍ମର ମିଶ୍ରଣ ପରେ ଏହି ପ୍ରକ୍ରିୟା (ଚକ୍ରପୂଜା) ପାଳିତ ହୋଇଆସୁଅଛି । ଏଣୁ ଏହା ହିଁ ବୌଦ୍ଧ ଧର୍ମର ନିଦର୍ଶନ ଅଟେ ।

୩. କାମ- ଏଠାରେ କାମ ଅର୍ଥ କାମନାକୁ ନିଆଯାଇଛି । ଦୀପାବଳି ଏକ କାମନା ସିଦ୍ଧି ପାଇଁ ପ୍ରଶସ୍ତ ଦିନ ଅଟେ । ଏଥିପାଇଁ (କାମନା ସିଦ୍ଧି ପାଇଁ) ପାରମ୍ପରିକ ରୀତିରେ ପୌତ୍ରିକ କର୍ମ କରାଯାଏ । ତାନ୍ତ୍ରିକମାନେ ଏହି ଦିନକୁ କାଳରାତ୍ରି ପର୍ବ ପାଳନ କରି ତନ୍ତ୍ର ସିଦ୍ଧି, ପଣାଦାନ ଇତ୍ୟାଦି ଔପଚାରିକ କର୍ମ ସମ୍ପାଦନ କରିଥାନ୍ତି ।

୪. ମୋକ୍ଷ - ମୋକ୍ଷ ଅର୍ଥ ପରିତ୍ରାଣକୁ ବୁଝାଏ । ଅନ୍ୟ ଅର୍ଥରେ ଭଗବତ ପ୍ରାପ୍ତି ପାଇଁ କର୍ମଗୁଡ଼ିକୁ କୁହାଯାଏ । ସମଗ୍ର ଆର୍ଯ୍ୟାବର୍ତ୍ତରେ କାଳୀକା ପୂଜାଠାରୁ ପଞ୍ଚକ ପୂର୍ଣ୍ଣିମା ବା ରାହାସ ପୂର୍ଣ୍ଣିମା ପର୍ଯ୍ୟନ୍ତ ପ୍ରତ୍ୟେକ ପୁରପଲ୍ଲୀରେ ମଠ ମନ୍ଦିରମାନଙ୍କରେ ମାନବ ସମାଜ ମୋକ୍ଷକାମୀ ହୋଇ ମଙ୍ଗଳ ଆରତି କର୍ମ ଚାଲୁ ରଖିଥାଏ । ଜ୍ୱାଳାମୁଖୀ କାଳୀକାଙ୍କୁ ଶାନ୍ତ କରିବା ପାଇଁ ମଙ୍ଗଳ ଆରତି କର୍ମ ଏକ ଧାର୍ମିକ ଚେତନାର ମୋକ୍ଷର ପ୍ରୟାସ ମାତ୍ର । ତନ୍ତ୍ରତତ୍ତ୍ୱରେ କାଳୀକା ମନ୍ତ୍ର ଜାପକ ନିଜକୁ ଶିବମୟ କରାଇ ମୋକ୍ଷ ପ୍ରାପ୍ତି ହୋଇଥାଏ । ଏଣୁ ଏହିଦିନ ମୃତ୍ୟୁଲାଭ କରିଥିବା ବ୍ୟକ୍ତି ମୁକ୍ତିଲାଭ କରିଥାଏ ।

୫. ଲୋକାର୍ଥକ - ଲୋକ ରଞ୍ଜନ ବା ସର୍ବସାଧାରଣଙ୍କ ପ୍ରୀତି ସାଧନ ପାଇଁ ଉଦ୍ଦିଷ୍ଟ । ସୁତରାଂ ଆଚାଣ୍ଡାଳ ବ୍ରାହ୍ମଣ, ବୌଦ୍ଧ-ଜୈନ (ଜିନ ମତାବଲମ୍ବୀ) ସମସ୍ତ ସମ୍ପ୍ରଦାୟ ଏହି ଦିନକୁ ପାଳନ କରିଥାନ୍ତି । ଏହା ଭିନ୍ନ ପ୍ରଜାରଞ୍ଜନ ପାଇଁ ଲୋକତନ୍ତ୍ର ମଧ୍ୟ ସ୍ୱୀକୃତି ପ୍ରଦାନ କରିଅଛି । ଖ୍ରୀଷ୍ଟିୟ ସପ୍ତମ ଶତାବ୍ଦୀଠାରୁ ଚତୁର୍ଦ୍ଦଶ ଶତାବ୍ଦୀ ମଧ୍ୟରେ ଓଡ଼ିଶାରେ ଗଣେଶ ପୂଜା ଲୋକପ୍ରିୟତା ପରେ ଲୋକାର୍ଥ ଦର୍ଶନର ଅଭିବୃଦ୍ଧି ଘଟିଲା । ସୁତରାଂ ଦୀପାବଳିରେ ଗଣେଶ ଲକ୍ଷ୍ମୀ ଉପାସନା ଏକ ଲୋକାର୍ଥଦର୍ଶନର ମାନ୍ୟତା ପ୍ରାପ୍ତ ହେଲା । ଷଷ୍ଠ ଦର୍ଶନ ତତ୍ତ୍ୱାର୍ଥଦର୍ଶନ ସର୍ବଧର୍ମର ସମନ୍ୱୟରୁ ଉଦ୍‌ଭବ ଘଟିଥିଲା ସାରଳା ଦାସଙ୍କ ଯୁଗ ପଞ୍ଚଦଶ ଶତାବ୍ଦୀରୁ ତତ୍ତ୍ୱାର୍ଥ ଦର୍ଶନର ବିକାଶ ଘଟିଲା ।

୬. ତତ୍ତ୍ୱାର୍ଥ- ଷଷ୍ଠ ଦର୍ଶନ ଅତ୍ୟନ୍ତ ତତ୍ତ୍ୱପୂର୍ଣ୍ଣ ଅଟେ । ଉପରୋକ୍ତ ସମସ୍ତ ତଥ୍ୟର ମୀମାଂସାରୂପୀ ତତ୍ତ୍ୱ ବା ତଥ୍ୟ ପ୍ରଦାନ କରି ଭାବାର୍ଥ ଅଟନ୍ତି ।

କାଳୀକୋପନିଷଦ ଅନୁଯାୟୀ କ୍ରୀଂ, କ୍ରୀଂ, କ୍ରୀଂ, ହୁଂ, ହୁଂ, ହ୍ରୀଂ, ହ୍ରୀଂ, ଦକ୍ଷିଣ କାଳୀକେ କ୍ରୀଂ, କ୍ରୀଂ, କ୍ରୀଂ, ହୁଂ, ହୁଂ, ହ୍ରୀଂ, ହ୍ରୀଂ ସ୍ୱାହା । ଏ ରୂପ ବାଇଶ ଅକ୍ଷର ବିଶିଷ୍ଟ ମନ୍ତ୍ର ମହାବିଦ୍ୟା ମୋକ୍ଷଦାୟକ ସଂପତ୍ତି ଅଟନ୍ତି । କ୍ରୀଂ ବୀଜକୁ ତନ୍ତ୍ର ଭାଷାରେ କାମ ବୀଜ ବା ମୋକ୍ଷଦାୟକ କୁହାଯାଏ । ଏହି କ୍ରୀଂ ବୀଜର ଉତ୍ପତ୍ତି ସତ୍ୱ ରଜ ତମ ତ୍ରିଶକ୍ତିରୁ 'ଓଁ' 'କ'କାର + 'ର'କାର + 'ଈ'କାର + ଅନୁସ୍ୱାର ମିଳନରୁ ଉଦ୍‌ଭବ ଘଟିଅଛି । ତଦନ୍ତେ ଏହି କ୍ରୀଂ ବୀଜକୁ ତିନିଥର ଉଚ୍ଚାରଣ କରାଗଲା । କାରଣ ସଂକଳ୍ପ ତ୍ରିସ୍ତରୀୟ ଅଟନ୍ତି ଯଥା - କାୟିକ ବାଚିକ ମାନସିକ ଅଟନ୍ତି । ଏଣୁ ଜାପକ ମୋକ୍ଷ କାମନା ନେଇ ତିନିଥର

ଉଚ୍ଚାରିତ ହେଲା । ତଦନ୍ତେ ହୁଂ, ହୁଂ, ଦୁଇଥର ଉଚ୍ଚାରିତ ହେବ । କାରଣ ହୁଂ ବୀଜ କୁର୍ଚ୍ଚ ବୀଜ ଅଟନ୍ତି । ହୁଂ ବୀଜର ରୂପ ହ ଉ ଅନୁସାର ଏରୂପ ହୁଂ ବୀଜ ରୂପ ନେଲା । ତଦନ୍ତେ ହ୍ରୀଂ ବୀଜ ଦୁଇଥର ଆବୃତ୍ତି ହେବେ । ହ୍ରୀଂ ବୀଜକୁ ଭୁବନେଶ୍ୱରୀ ବୀଜ କୁହାଯାଏ । ଏହି ବୀଜର ରୂପ ହକାର ରକାର ଇକାର ଅନୁସାର ହ୍ରୀଂ ଅଟେ । ସୁତରାଂ ବର୍ତ୍ତମାନ ସୁଦ୍ଧା ମନ୍ତ୍ରର ରୂପ କ୍ରୀଂ ତିନିଥର ଉଚ୍ଚାରଣ ହୁଂ ବୀଜ ୨ଥର ଏବଂ ହ୍ରୀଂ ବୀଜ ଦୁଇଥର ଏ ରୂପ ମୋଟ ୩+୨+୨= ୭ ସାତ ବୀଜ ବା ଅକ୍ଷର ଆସିଲେ । ଏହି ସାତ ଅକ୍ଷର କାମବୀଜ କୁର୍ଚ୍ଚ ବୀଜ ଭୁବନେଶ୍ୱରୀ ବୀଜ ହ୍ରୀଂ ଅଟନ୍ତି । ଏଠାରେ ତ୍ରିଶକ୍ତିର ମିଳନ ଘଟିଲା । ତଦନ୍ତେ ଦକ୍ଷିଣ କାଳୀକା ଛଅ ଅକ୍ଷର । ଏ ରୂପ ୭+୬ =୧୩ ଅକ୍ଷର ସମଷ୍ଟି ହେଲା । ଏହାକୁ ୭+୭ = ୧୪ + ୬ (ଦକ୍ଷିଣକାଳୀକେ) ଏ ରୂପ ୨୦ଅକ୍ଷର ସମଷ୍ଟିକୁ ଆସିଲା । ତଦନ୍ତେ ଅଗ୍ନି ପତ୍ନୀସ୍ୱାହା ଦୁଇ ଅକ୍ଷର ମିଶି ୨୨ ଅକ୍ଷର ସମଷ୍ଟିରୁ ମୋକ୍ଷଦାୟକ କାଳୀକା ମନ୍ତ୍ର ରୂପ ପ୍ରକଟିତ ହେଲା । ଏହା କାଳୀକା ମନ୍ତ୍ରର ତତ୍ତ୍ୱ ଅଟେ ।

**ଶେଷାଂଶ**

ଚିନ୍ମୟ ଜଗତରେ ଚିନ୍ମୟୀ କାଳୀକାଙ୍କ ସ୍ଥିତିକୁ ଅନୁଧ୍ୟାନ କଲେ ବିସ୍ମିତ ହେବାକୁ ପଡ଼େ । ସେ' ଏକାଧାରରେ ଜ୍ଞାନ-ଅଜ୍ଞାନର ତାମସୀ ଜ୍ୱାଳାମୁଖି ନାୟିକା ଶକ୍ତି ଅଟନ୍ତି । ବ୍ୟାକରଣ ଶାସ୍ତ୍ରରେ କାଳ + ଈର ନିର୍ଦ୍ଦର୍ଶନର ପ୍ରତୀକ ଅଟନ୍ତି । ସତ୍ ଚିତ୍ ଆନନ୍ଦ ଶବ୍ଦ ଭେଦରେ ତ୍ରିବିଧ କଳ୍ପିତା ମହାମାୟୀ, ପ୍ରଗଲ୍‌ଭା ପ୍ରଚଣ୍ଡା ଦେବୀଶକ୍ତି ସମ୍ପନ୍ନା ଅସାଧାରଣ ମହାଶୟା ଅଟନ୍ତି । ତାଙ୍କ କଥା କୈବଲ୍ୟ ରହସ୍ୟମୟ ସୁଧାସିନ୍ଧୁର ପୀୟୁଷ ଧାରା ସଦୃଶ । ମହାନିର୍ବାଣ ତନ୍ତ୍ରରେ ତାଙ୍କୁ ଶିବ ସ୍ୱରୂପା ବର୍ଣ୍ଣନା କରାଯାଇ ଲଲାଟରେ ଶଶି ଚିହ୍ନର ନିରୁପଣ କରାଯାଇଅଛି । ଏହାର ତାତ୍ପର୍ଯ୍ୟ ଏହି ଯେ - ଶିବ ଜ୍ଞାନ ସ୍ୱରୂପ ଅଟନ୍ତି । କାଳୀ ପ୍ରଚଣ୍ଡା ପ୍ରଗଲ୍‌ଭା, ଅଜ୍ଞାନ-ତାମସୀ ନାୟିକା ସ୍ୱରୂପା ଅଟନ୍ତି । ଏତଦ୍‌ଭିନ୍ନ ମସ୍ତକସ୍ଥ ଶଶିଭୂଷଣ ସମୟ ରୂପ ଚନ୍ଦ୍ରକଳାର ପ୍ରତୀକ ସ୍ୱରୂପା ଅଟନ୍ତି । ଶ୍ରୀଚଣ୍ଡୀରେ ପ୍ରାଧାନିକ ରହସ୍ୟରେ କାଳୀକାଙ୍କୁ ଦଶ ନାମରେ ସମ୍ବୋଧନ କରାଯାଇଛି, ଯଥା - (୧) ମହାମାୟା (୨) ମହାକାଳୀ (୩) ମହାମାରୀ (୪) କ୍ଷୁଧା (୫) ତୃଷା (୬) ନିଦ୍ରା (୭) ତୃଷ୍ଣା (୮) ଏକବୀରାଟ (୯) କାଳରାତ୍ରି ଓ (୧୦) ଦୂରତ୍ୱୟା ।

ଦଦାମି ତବ ନାମାନି ଯାନି କର୍ମାଣି ତାନି ତେ, ମହାମାୟା, ମହାକାଳୀ, ମହାମାରୀ, କ୍ଷୁଧା-ତୃଷ୍ଣା, ନିଦ୍ରା, ତୃଷ୍ଣା, ଚୈକବୀରା, କାଳରାତ୍ରୀ ଦୂରତ୍ୟୟ ।

ସର୍ବଶେଷରେ ଏହି ମହାମାୟୀ କାଳୀକା ଦେବୀ ସଂକଟକାଳୀନ ସମୟରେ ମାନବ ସମାଜକୁ କୃପା କଟାକ୍ଷରେ ରକ୍ଷା କରନ୍ତୁ ଏହି ମୋର ବିନମ୍ର ପ୍ରାର୍ଥନା ।

**ସାରାଂଶ**

କାଳୀକା ଦେବୀ ଧର୍ମ ରକ୍ଷା ପାଇଁ ପ୍ରଚଣ୍ଡା ଜ୍ୱାଳାମୁଖୀ ରୂପରେ ଦୁଷ୍ଟ ସଂହାର କରି ଧର୍ମ ସଂସ୍ଥାପନ କରି ଅଛନ୍ତି । କାଳୀକା ପୂଜାରେ ଲକ୍ଷ୍ମୀପୂଜା ହେଉଥିବାରୁ ସେ' ମହାଲକ୍ଷ୍ମୀଙ୍କର ପ୍ରତୀକ ଦେବୀ ଅଟନ୍ତି । ତାଙ୍କର ଉପାସକମାନଙ୍କର କାମନା ସିଦ୍ଧି କରୁଥିବାରୁ ସେ ସିଦ୍ଧିଦାତ୍ରୀ ଅଟନ୍ତି । ତାଙ୍କ ମନ୍ତ୍ରରେ ମୋକ୍ଷ ପ୍ରାପ୍ତିର ମାର୍ଗ ଦର୍ଶନ ଥିବାରୁ ସେ ଏକାଧାରରେ ମୋକ୍ଷଦାତ୍ରୀ ଅଟନ୍ତି । ତାଙ୍କ ପ୍ରଚଣ୍ଡ ରୂପଚର୍ଯ୍ୟା । ଜନସମାଜମାନଙ୍କ ପାଇଁ ସନ୍ମାର୍ଗୀ ସଂଯମୀ ହେବା ପାଇଁ ଲୋକାର୍ଥ ତତ୍ତ୍ୱଦର୍ଶନ କାରିଣୀ ଅଟନ୍ତି । ସର୍ବଶେଷରେ ତତ୍ତ୍ୱପୂର୍ଣ୍ଣ ନାମକରଣ ପାଇଁ, ମନ୍ତ୍ରର ପାବନୀ ଶକ୍ତି ପାଇଁ ସର୍ବଜନସିଦ୍ଧାନ୍ତି ସର୍ବସତ୍ତ୍ୱ ଅଧିକାରିଣୀ ଅଟନ୍ତି । ସୁତରାଂ ଦୀପାବଳି ଏବଂ କାଳୀକା ଉପାସନା ଏକ ଷଡ଼ଦର୍ଶନ ପ୍ରତୀକ ପର୍ବ ଅଟେ ।

ଜୀବନ ଦର୍ଶନ ପରିଷଦ
ମାତୃମନ୍ଦିର, ସରପୁର
ଆନନ୍ଦବଜାର, ଭଦ୍ରକ
ପିନ୍ - ୭୫୬୧୧୬

# ଓଡ଼ିଶାର ବୈଭବ : ଭିତରକନିକା ଅଭୟାରଣ୍ୟ

**ଡକ୍ଟର କୃତ୍ତିବାସ ନାୟକ**

ପ୍ରକୃତିରାଣୀ ଆମର ଏହି ପୃଥିବୀକୁ ସରସ ସୁନ୍ଦର ଏବଂ ଐଶ୍ୱର୍ଯ୍ୟପୂର୍ଣ୍ଣ କରି ଗଢି ତୋଳିବାରେ କାର୍ପଣ୍ୟ ପ୍ରଦର୍ଶନ କରି ନାହାନ୍ତି । ସୁଦୀର୍ଘ ପର୍ବତମାଳା, ସୁଗଭୀର ସାଗର, ଅସଂଖ୍ୟ ନଦ-ନଦୀ, ଘନ ଅରଣ୍ୟ, ସୁଶୋଭିତ ଜଳପ୍ରପାତ, ଉଷ୍ଣ ପ୍ରସ୍ରବଣ, ସବୁଜ ତୃଣଭୂମି, କୋଟିକୋଟି ଜୈବିକ ବିବିଧତା ତଥା ସେମାନଙ୍କ ବାସୋପଯୋଗୀ ସ୍ଥାନ ସହିତ ସେମାନଙ୍କ ପାଇଁ ଖାଦ୍ୟ, ବସ୍ତ୍ର ଓ ସୁଖ-ସଂପଦ ଭରି ଦେଇଛନ୍ତି । ଏହି ସକଳ ସୌନ୍ଦର୍ଯ୍ୟର ଗନ୍ତାଘରକୁ ସାଇତି ରଖିବା ହେଉଛି-ପ୍ରତ୍ୟେକ ନାଗରିକର କର୍ତ୍ତବ୍ୟ ।

ଭାରତବର୍ଷରେ ସୁନା ଫଳେ, ମାଟିରୁ ମାଣିକ, ପଥରରୁ ହୀରା, ଶାମୁକାରୁ ମୋତି ମିଳିଥାଏ । ଭୂତଳ ଜଳ କେବଳ ଜୀବନ ନୁହେଁ, ଏହା ପ୍ରତ୍ୟେକ ପ୍ରାଣୀ ପାଇଁ ଅମୃତ ତୁଲ୍ୟ ହୋଇଥାଏ ।

ଯେତେପ୍ରକାର ସଂପଦ ପୃଥିବୀରେ ରହିଛି, ସେଥିମଧ୍ୟରୁ ଜଙ୍ଗଲ ସଂପଦ ହେଉଛି-ସବୁଠାରୁ ଗୁରୁତ୍ୱପୂର୍ଣ୍ଣ । ସୃଷ୍ଟିର ପ୍ରାରମ୍ଭରୁ ଏହି ଜଙ୍ଗଲ ହିଁ ସମଗ୍ର ବିଶ୍ୱର ଜୀବଜଗତକୁ ପରୋକ୍ଷ ଓ ପ୍ରତ୍ୟକ୍ଷ ଭାବରେ ଆଶ୍ରୟ ଦେଇଚାଲିଛି । ତା' ସଙ୍ଗେ ସଙ୍ଗେ ସେମାନଙ୍କୁ ଖାଦ୍ୟ, ପୋଷାକ ଓ ବାସସ୍ଥଳୀ ଯୋଗାଇ ଦେଇଚାଲିଛି । ଏହା ଜୀବନ ରୂପକ ଅମ୍ଳଜାନ ସୃଷ୍ଟି କରେ, ପୃଥିବୀର ଜଳବାୟୁକୁ ମଧ୍ୟ ନିୟନ୍ତ୍ରଣ କରେ । ତେଣୁ ପୂର୍ବକାଳରେ ଯେଉଁ ରାଜ୍ୟରେ ଯେତେ ଅଧିକ ଜଙ୍ଗଲ ସଂପଦ ରହୁଥିଲା, ସେ ରାଜ୍ୟକୁ ସେହି ଅନୁପାତରେ ସ୍ୱତନ୍ତ୍ର ସମ୍ମାନ ମିଳୁଥିଲା । ସେ ରାଜ୍ୟର ରାଜା ଜଣେ ଧନାଢ୍ୟ ରାଜନ ଭାବରେ ଗଣ୍ୟ ହେଉଥିଲେ ।

ସମ୍ପ୍ରତି ସମଗ୍ର ଭାରତବର୍ଷରେ ପାଞ୍ଚଟି ବିଶ୍ୱ ଐତିହ୍ୟ ସ୍ଥଳ, ୪୯୦ଟି ଅଭୟାରଣ୍ୟ ଓ ୯୬ଟି ଜାତୀୟ ଉଦ୍ୟାନ ରହିଛି । ଯାହା ଦେଶ ବିଦେଶର ପର୍ଯ୍ୟଟକମାନଙ୍କୁ ଆକର୍ଷିତ କରି ଆସୁଛି । ଯେଉଁଥିରେ ବିବିଧ ପ୍ରଜାତିର ପଶୁ-ପକ୍ଷୀ ଓ ବୃକ୍ଷ-ଲତା ରହି ଦର୍ଶକମାନଙ୍କ ମନକୁ ମୁଗ୍ଧ କରିଥା'ନ୍ତି ।

ଆମ ରାଜ୍ୟ ଓଡ଼ିଶା ପ୍ରାକୃତିକ ତଥା ଜଙ୍ଗଲ ସଂପଦରେ ଭରପୂର । କିନ୍ତୁ ଅତୀତରେ ଏହାକୁ ଉପଯୁକ୍ତ ଭାବରେ ସଂରକ୍ଷଣ କରାଯାଇ ନଥିବାରୁ ପର୍ଯ୍ୟାପ୍ତ ପରିମାଣରେ ଅମୂଲ୍ୟ ସଂପଦର ଅବକ୍ଷୟ ହେଇଯାଇଛି । ସଂପ୍ରତି ଓଡ଼ିଶାରେ ଯେଉଁ କେତୋଟି ଜଙ୍ଗଲ ସଂପଦ ରହିଛି, ସେଥିମଧ୍ୟରୁ କେନ୍ଦ୍ରାପଡ଼ା ଜିଲ୍ଲାର ଭିତରକନିକା ଲୁଣା ଜଙ୍ଗଲ ଓ ଅଭୟାରଣ୍ୟ ନାମ ଉଲ୍ଲେଖଯୋଗ୍ୟ । ଏହା ହେଉଛି- ସୁନ୍ଦରବନ ପରେ ଦେଶର ଦ୍ୱିତୀୟ ବୃହତ୍ତମ ଲୁଣା ଜଙ୍ଗଲ । ଏହା ମଧ୍ୟରେ ଅନେକଗୁଡ଼ିଏ ନଦୀ ଓ ଉପନଦୀ ପ୍ରବାହିତ ହେଉଛି । ଏହାର ବିଶାଳ ସବୁଜିମା, ଡାଙ୍ଗମାଳର କୁମ୍ଭୀର ପ୍ରଜନନ କେନ୍ଦ୍ର, ସାତଭାୟା ନିକଟସ୍ଥ ଗହୀର ମଥାର କଇଁଛ ପ୍ରସବଶାଳା, ଦଳବଦ୍ଧ ମୃଗ ସମାବେଶ, ଅଗଭୀର ଶ୍ୱେତପଦ୍ମ ପୁଷ୍କରିଣୀ, ଶିକାର ମଞ୍ଚ, ଏକୁଳା, ହାବାଳୀ ହଟ୍ଟୀ, ବରୁଣେଇ, କାଳି ଭଞ୍ଜଡିହା, ତାଳଚୁଆ ନଦୀର ସୁବିସ୍ତୃତ ଜଳବେଣୀ ପେଣ୍ଠ ବେଳାଭୂମିର ମନୋରମ ଦୃଶ୍ୟ,

ଯାହା ସୌନ୍ଦର୍ଯ୍ୟର ଗନ୍ତାଘର ହୋଇରହିଛି, ତାହା ଯେକୌଣସି ପର୍ଯ୍ୟଟକଙ୍କ ମନକୁ ମୁଗ୍ଧ କରିଦେଇପାରେ ।

ଦୀର୍ଘକାଳ ଧରି ଓଡ଼ିଶାର ଏହି ନୈସର୍ଗିକ ସଂପଦ ସର୍ବସାଧାରଣଙ୍କ ଦୃଷ୍ଟିର ଆଢୁଆଳରେ ରହିଯାଇଥିଲା । କନିକାର ବିଖ୍ୟାତ ଲୁଣା ଜଙ୍ଗଲ ଅବହେଳିତ ହୋଇ ପଡ଼ି ରହିଥିଲା । ୧୨୮୦ ମସିହାରେ କନିକା ରାଜ୍ୟ ଗଠନ ହେବା ପରଠାରୁ ଏହି ବୃହତ୍ ଲୁଣା ଜଙ୍ଗଲ କନିକା ରାଜାଙ୍କ ଅଧୀନରେ ରହି ଆସୁଥିଲା । ଏପରିକି ଦେଶ ସ୍ୱାଧୀନ ହେବା ପରେ ମଧ୍ୟ ଏହା ଜମିଦାରୀ ପ୍ରଥା ଅନୁସାରେ କନିକା ରାଜାଙ୍କ ଅଧୀନରେ ରହିଥିଲା ।

ଓଡ଼ିଶାର ପୂର୍ବ ଉପକୂଳରେ ପ୍ରବାହିତ ନଦୀଗୁଡ଼ିକ ମଧ୍ୟରୁ ବ୍ରାହ୍ମଣୀ, ବୈତରଣୀ, ଓ ଧାମରା ନଦୀଦ୍ୱାରା ସୃଷ୍ଟି ବୃହତ୍ ତ୍ରିକୋଣଭୂମି ହେଉଛି-ଭିତରକନିକାର ଲୁଣା ଜଙ୍ଗଲ । ବଙ୍ଗୋପସାଗର ଉପକଣ୍ଠରେ ପ୍ରବାହିତ ଏହି ନଦୀଗୁଡ଼ିକର ଜଳ ଲବଣାକ୍ତ । ପ୍ରତିଦିନ ଏଥିରେ ଜୁଆର ଉଠେ । ଏହି ନଦୀଗୁଡ଼ିକରେ ସମୁଦ୍ର ଜଳ ମିଶ୍ରଣ ଫଳରେ ସ୍ଥାନୀୟ ଅଞ୍ଚଳରେ ଲୁଣା ଜଙ୍ଗଲ ସୃଷ୍ଟି ହୋଇପାରିଛି । ତେଣୁ ଏହାକୁ ପୃଥିବୀର ଦ୍ୱିତୀୟ ବୃହତ୍ ଲୁଣା ଜଙ୍ଗଲ ଭାବରେ ମାନ୍ୟତା ପ୍ରଦାନ କରାଯାଇଛି । ଏହି ଜଙ୍ଗଲରେ ଥିବା ବୃକ୍ଷଲତାର ବିଶେଷ ଗୁଣ ରହିଛି । ହେନ୍ତାଳ ବୃକ୍ଷ ହିଁ ସମୁଦ୍ର ଜୁଆର ଓ ବାତ୍ୟା ସମୟରେ ହେଉଥିବା ସାମୁଦ୍ରିକ ଝଡ଼କୁ ପ୍ରତିରୋଧ କରିବାର କ୍ଷମତା ରଖିଥାଏ ।

ପୂର୍ବରୁ ସମୁଦାୟ ଲୁଣା ଜଙ୍ଗଲକୁ ତିନି ଭାଗରେ ବିଭକ୍ତ କରାଯାଇଥିଲା । ଯଥା-ଅଟକ ଜଙ୍ଗଲ, ରକ୍ଷିତ ଜଙ୍ଗଲ ଓ ଛାଡ଼ ଜଙ୍ଗଲ । ଏଗୁଡ଼ିକର ରକ୍ଷଣାବେକ୍ଷଣ ତଥା ସୁପରିଚାଳନା ଉଦ୍ଦେଶ୍ୟରେ ଏହାକୁ ୨୯ଟି ଜଙ୍ଗଲ ବ୍ଲକରେ ବିଭକ୍ତ କରାଯାଇଥିଲା । ସେଥିମଧ୍ୟରୁ ଡାଙ୍ଗମାଳ, ଭିତରକନିକା, କାଳି ଭଞ୍ଜଡ଼ିହା, ବରୁଣେଇ, ଗହୀରମଥା, ବନିପାହୀ ଥିଲା ପ୍ରମୁଖ ଜଙ୍ଗଲ ବ୍ଲକ । ଏଥିରେ ରାଜାଙ୍କର ପୂର୍ଣ୍ଣ ଅଧିକାର ଥିବାରୁ ସେ ଲୁଣା ଜଙ୍ଗଲକୁ ନିଜ ଇଚ୍ଛାରେ ବ୍ୟବହାର କରୁଥିଲେ । ଜଙ୍ଗଲରୁ ପଶୁ ଶିକାର କରି ମୂଲ୍ୟବାନ ଗଛଗୁଡ଼ିକୁ କାଟିଦେଇ ପାରୁଥିଲେ ।

ଗମନାଗମନର ଅସୁବିଧା କାରଣରୁ ଏବଂ ରାଜ୍ୟର ରାଜଧାନୀଠାରୁ ୧୫୦ କିଲୋମିଟର ଦୂରରେ ସମୁଦ୍ର କୂଳରେ ଅବସ୍ଥିତ ଥିବାରୁ ଏହି ଜଙ୍ଗଲକୁ କେହି ଗୁରୁତ୍ୱ ଦେଉ ନଥିଲେ ।

ଆଧୁନିକ ଯୁଗରେ ପ୍ରଚାର ପ୍ରସାରର ଭୂମିକା ଅତ୍ୟନ୍ତ ଗୁରୁତ୍ୱପୂର୍ଣ୍ଣ । କିନ୍ତୁ ଭିତରକନିକାର ବିଭବ ସଂପର୍କରେ ପ୍ରଚାର ପ୍ରସାର ମଧ୍ୟ ଠିକ୍ ଭାବରେ ହେଇପାରି ନଥିଲା । ଅବଶ୍ୟ କେତେଜଣ ବିଶିଷ୍ଟ କବି ଲେଖକ ସାମ୍ବାଦିକ ତଥା ପରିବେଶ ପ୍ରେମୀ ଓ ଜଙ୍ଗଲ ବିଶେଷଜ୍ଞ କନିକା ଲୁଣା ଜଙ୍ଗଲ ଓ ତା'ର ରୂପମାଧୁରୀ ସଂପର୍କରେ କିଛି କିଛି ଲେଖିଥିଲେ । କିନ୍ତୁ ତାହା ଯଥେଷ୍ଟ ନଥିଲା । ତେଣୁ ଏହାର ଉପଯୁକ୍ତ ବିକାଶ ବି ସମ୍ଭବ ହୋଇ ନଥିଲା ।

୧୯୫୧ ମସିହା ନଭେମ୍ବର ୨୬ ତାରିଖ ଦିନ ଜମିଦାରୀ ପ୍ରଥା ଉଚ୍ଛେଦ ଫଳରେ ଏହି ଲୁଣା ଜଙ୍ଗଲର ସୁରକ୍ଷା ଦାୟିତ୍ୱ ଓଡ଼ିଶା ସରକାରଙ୍କ ରାଜସ୍ୱ ବିଭାଗ ଉପରେ ନ୍ୟସ୍ତ କରାଯାଇଥିଲା । ପରବର୍ତ୍ତୀ କାଳରେ ଏହା ଜଙ୍ଗଲ ବିଭାଗକୁ ହସ୍ତାନ୍ତର କରାଗଲା । ୧୯୭୨ ମସିହାରୁ ବନ୍ୟପ୍ରାଣୀ ସୁରକ୍ଷା ଆଇନ ବଳରେ ଭିତରକନିକା ଲୁଣା ଜଙ୍ଗଲରେ ରହୁଥିବା ବନ୍ୟପ୍ରାଣୀମାନେ ସୁରକ୍ଷିତ ଭାବରେ ନିର୍ଭୟରେ ବିଚରଣ କରିପାରୁଛନ୍ତି । ପଶୁ-ପକ୍ଷୀମାନଙ୍କ ଶିକାର ସଂପୂର୍ଣ୍ଣ ଭାବେ ବାରଣ କରାଯାଇଛି ।

୧୯୭୫ ମସିହା ଅପ୍ରେଲ ମାସ ୨୨ ତାରିଖ ଦିନ ଏହି ଲୁଣା ଜଙ୍ଗଲକୁ ସରକାର ଅଭୟାରଣ୍ୟ ଭାବରେ ଘୋଷଣା କଲେ । ସେହିବର୍ଷ ପ୍ରଥମ କରି ଡାଙ୍ଗମାଳର କାଳି ଭଞ୍ଜଡିହା ନଦୀପଠାରେ କୁମ୍ଭୀର ପ୍ରଜନନ କେନ୍ଦ୍ର ସ୍ଥାପନ କରାଯାଇଥିଲା । ଧୀରେ ଧୀରେ ବିଭିନ୍ନ ନଦୀ ଓ ଉପନଦୀ ଉପରେ ମଜବୁତ ସେତୁ ନିର୍ମିତ ହେଲା । ଗମନାଗମନର ସୁବିଧା ଓ ସୁଗମ୍ୟ ରାସ୍ତା ନିର୍ମାଣ ହେବାରୁ ଏହା ସର୍ବସାଧାରଣଙ୍କ ଦୃଷ୍ଟିକୁ ଆସିପାରିଲା । ପରେ ପରେ ସେଠାରେ ଯାତ୍ରୀ ରହଣି ପାଇଁ ଅତିଥିଶାଳା ନିର୍ମାଣ ଓ ପରିଦର୍ଶନ ନୀତି ନିର୍ଦ୍ଧାରଣ ଫଳରେ ଏବେ ଭିତରକନିକା ଅଭୟାରଣ୍ୟ ଅନ୍ୟ ଅଭୟାରଣ୍ୟଗୁଡ଼ିକ ସହିତ ତୁଳନୀୟ ହୋଇପାରିଛି ।

କୁମ୍ଭୀର ବଂଶ ବୃଦ୍ଧି ପାଇଁ କୃତ୍ରିମ ପ୍ରଜନନ କାର୍ଯ୍ୟକ୍ରମ ମାଧ୍ୟମରେ ଗୋଟିଏ ବିରଳ ପ୍ରଜାତିର ଶଙ୍ଖୁଆ କୁମ୍ଭୀର ଛୁଆ ଜନ୍ମଲାଭ କରିଥିଲା । ତା'ର ନାମ ଗୌରୀ ରଖାଯାଇଥିଲା । ସେହି ଗୌରୀ ପାଇଁ ସ୍ୱତନ୍ତ୍ର ଭାବରେ ଗୋଟିଏ ଜଳଭଣ୍ଡାର ନିର୍ମାଣ କରାଯାଇଛି । ସେଥିରେ ରହି ଗୌରୀ ଅସଂଖ୍ୟ ପର୍ଯ୍ୟଟକଙ୍କୁ ଆମୋଦିତ କରିଚାଲିଛି । ଗୌରୀ କୁମ୍ଭୀର ହେଉଛି–ଭିତରକନିକା ଅଭୟାରଣ୍ୟର ଗର୍ବ ଓ ଗୌରବ ।

ଗହୀରମଥା ବାଲୁକା ଶଯ୍ୟାରେ ଏକ ସମୟରେ ଲକ୍ଷ ଲକ୍ଷ ସଂଖ୍ୟାରେ ପ୍ରଶାନ୍ତ ମହାସାଗରୀୟ ବୃତ୍ତାକାର ବିଦେଶୀ କଇଁଛମାନେ ସମ୍ମିଳିତ ଅଣ୍ଡାଦାନ କରନ୍ତି । ଏହିଦୃଶ୍ୟ ଅତ୍ୟନ୍ତ ମନୋରମ ହୋଇଥାଏ । ଏମାନେ ପ୍ରତିବର୍ଷ ଅକ୍ଟୋବର ମାସରେ ଦୀର୍ଘ ଜଳପଥ ଅତିକ୍ରମ କରି ଏଠାକୁ ଆସିଥା'ନ୍ତି । ସମୁଦ୍ର ଜଳରାଶିରେ ଯୋଡ଼ିହେଇ ସେମାନେ ଜଳକ୍ରୀଡ଼ା କରନ୍ତି । ଏହି ଅପୂର୍ବ ଦୃଶ୍ୟ ପର୍ଯ୍ୟଟକମାନଙ୍କୁ ଆମୋଦିତ କରିଥାଏ । ଏହି ସମସ୍ତ ବ୍ୟବସ୍ଥା ଦର୍ଶନୀୟ ତଥା ଉପଭୋଗ୍ୟ ହୋଇପାରିଥିବାରୁ ପ୍ରତିବର୍ଷ ଲକ୍ଷ ଲକ୍ଷ ପର୍ଯ୍ୟଟକ ଭିତରକନିକା ପରିଦର୍ଶନରେ ଆସିବାକୁ ଆଗ୍ରହୀ ହେଉଛନ୍ତି । ଫଳରେ ଭିତରକନିକା ଲୁଣା ଜଙ୍ଗଲ ଗୋଟିଏ ଜାତୀୟ ସ୍ତରର ପର୍ଯ୍ୟଟନ କେନ୍ଦ୍ରରେ ପରିଣତ ହୋଇପାରିଛି । ଏହାର ବୈଭବକୁ ସମଗ୍ର ବିଶ୍ୱବାସୀ ଉପଭୋଗ କରିପାରୁଛନ୍ତି । ୧୯୯୭ ମସିହା ସେପ୍ଟେମ୍ବର ୨୭ ତାରିଖଠାରୁ ଏହି ଗହୀରମଥା ଅଞ୍ଚଳକୁ ଭାରତ ସରକାର ସାମୁଦ୍ରିକ ଅଭୟାରଣ୍ୟ ଘୋଷଣା କରିଛନ୍ତି ।

ସଂପ୍ରତି ପର୍ଯ୍ୟଟକମାନେ ଭଦ୍ରକ ଜିଲ୍ଲାର ଚାନ୍ଦବାଲିଠାରୁ ଷ୍ଟିମର ଯୋଗେ ଜଳଯାତ୍ରା ମାଧ୍ୟମରେ ଭିତରକନିକାରେ ପ୍ରବେଶ କରିପାରୁଛନ୍ତି । ରାଜନଗରଠାରେ ପ୍ରବାହିତ ହଂସୁଆ ନଦୀ ଉପରେ ନିର୍ମିତ ସେତୁ ଅତିକ୍ରମ କରି ଗୁପ୍ତି ବାଟ ଦେଇ ଭିତରକନିକାକୁ ଯାଇପାରୁଛନ୍ତି । ପର୍ଯ୍ୟଟକମାନେ ରାଜନଗରରୁ ଉତ୍ତରାଭିମୁଖୀ ହୋଇ ଜରିମୂଳ ବାଟଦେଇ ଯାନବାହନରେ ଡାଙ୍ଗମାଳର କୁମ୍ଭୀର ଗବେଷଣା କେନ୍ଦ୍ରରେ ପହଞ୍ଚି ପାରୁଛନ୍ତି । ଏହି ଅଭୟାରଣ୍ୟଟି ବର୍ତ୍ତମାନ ସୌନ୍ଦର୍ଯ୍ୟ ପିପାସୁ, ପରିବେଶ ପ୍ରେମୀ, ପ୍ରକୃତିପ୍ରେମୀ ଓ ପଶୁପକ୍ଷୀ ପ୍ରେମୀମାନଙ୍କ ପାଇଁ ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇପାରିଛି ।

**ସହାୟକ ଗ୍ରନ୍ଥ**

୧.ଜିଜ୍ଞାସା– ନିରଞ୍ଜନ ଶତପଥି । ୧୪–୦୨–୨୦୨୦

୨. ଉତ୍କଳ ପ୍ରସଙ୍ଗ– ଅପ୍ରେଲ–ମେ–୨୦୨୦

୩. କନିକାଶ୍ରୀ– ଉଜିରବେଗ ସାହିତ୍ୟ ସଂସ୍କୃତି ପରିଷଦ, ରାଜକନିକା–୨୦୧୪

ଭି.ଆଇ.ଏମ୍–୫୫
ଶୈଳଶ୍ରୀ ବିହାର
ଭୁବନେଶ୍ୱର–୭୫୧୦୨୧



# ଆମ୍ବ ଫସଲରେ ପତ୍ରଡିଆଁ ପୋକ ଦମନ

**ଡକ୍ଟର ବିଷ୍ଣୁ ଚରଣ ଜେନା**

ସମସ୍ତ ପ୍ରକାର ଫଳ ମଧ୍ୟରେ ଆମ୍ବକୁ ଏହାର ସୁସ୍ୱାଦୁଯୁକ୍ତ ରସ ଯୋଗୁଁ ଫଳର ରାଜା ବୋଲି କୁହାଯାଏ । ଆମ୍ବ ରସ ଯେପରି ମନୁଷ୍ୟ ପାଇଁ ସେପରି ସ୍ୱାଦିଷ୍ଟ କୀଟ ପତଙ୍ଗ ପାଇଁ ମଧ୍ୟ ସ୍ୱାଦିଷ୍ଟ । ଆମ୍ବ ଫସଲକୁ ଆକ୍ରମଣ କରୁଥିବା ସମସ୍ତ ପୋକମାନଙ୍କ ମଧ୍ୟରେ ପତ୍ରଡିଆଁ ପୋକ ଅତୀବ କ୍ଷତିକାରକ । ଏହା ଏକ ଶୋଷକ ଜାତୀୟ ପୋକ । ପତ୍ରଡିଆଁ ପୋକର ସ୍ତ୍ରୀ ପୋକଟି ଜାନୁଆରୀ ମାସଠାରୁ ମାର୍ଚ୍ଚ ମାସ ପର୍ଯ୍ୟନ୍ତ ଆମ୍ବ ଗଛର ଫୁଲ କଢ଼ି, ବଉଳର ଡେମ୍ଫ ଏବଂ କଅଁଳିଆ ପତ୍ରରେ ସୂକ୍ଷ୍ମ ଚିରା ଦାଗ ସୃଷ୍ଟି କରି ସେଥିରେ ୧୦୦ରୁ ୨୦୦ ଅଣ୍ଡା ଦେଇପାରେ । ୪ରୁ ୭ ଦିନ ମଧ୍ୟରେ ଅଣ୍ଡାରୁ ଅର୍ଭକ ବାହାରି ୧୦ରୁ ୧୫ ଦିନ ମଧ୍ୟରେ ଖୁବ୍ କ୍ଷିପ୍ର ଗତିରେ ବଉଳ ଏବଂ ଶାଖା ପ୍ରଶାଖାରେ ବୁଲି ରସ ଶୋଷନ୍ତି । ଆମ୍ବ ବଗିଚାର ଛାଇ ଓ ସନ୍ତସନ୍ତିଆ ଜାଗାକୁ ସେମାନେ ଭଲ ପାଆନ୍ତି । ଏହି ପୋକଗୁଡ଼ିକ ଶୋଷକ ଜାତୀୟ ହେବାରୁ ଏମାନଙ୍କୁ ଚାଷୀମାନେ ଆମ୍ବ ଡାହାଣୀ କହିଥାଆନ୍ତି । ଏମାନଙ୍କ କ୍ଷତି ଯୋଗୁଁ ଆକ୍ରମିତ ସମସ୍ତ ବଉଳ ରସ ଶୂନ୍ୟ ହୋଇ ପୋଡିପୋଡି ଗଲାପରି ଜଣା ପଡ଼ନ୍ତି । ଏମାନଙ୍କ କ୍ଷତ ସ୍ଥାନରେ ଫିମ୍ପି ନାମକ ଏକ ସୂକ୍ଷ୍ମାତି ସୂକ୍ଷ୍ମ ଜୀବାଣୁ ଫସଲକୁ ଆକ୍ରମଣ କରେ । ପୋକ ଏବଂ ରୋଗର ଆକ୍ରମଣ ଯୋଗୁଁ ଆମ୍ବ ଗଛରେ ଫଳ ରହିପାରେ ନାହିଁ । ତେଣୁ ଫସଲଟି ସଂପୂର୍ଣ୍ଣ ରୂପେ ନଷ୍ଟ ହେବାର ଦୃଷ୍ଟାନ୍ତ ରହିଛି । ପୋକ ଏବଂ ରୋଗ କବଳରୁ ଫସଲକୁ ରକ୍ଷା କରିବା ପାଇଁ ଚାଷୀ ଭାଇମାନଙ୍କୁ ନିମ୍ନରେ କେତେକ ପଦ୍ଧତି ଅବଲମ୍ବନ କରିବା ପାଇଁ ପରାମର୍ଶ ଦିଆଯାଉଛି ।

* ରୋଗପୋକ ଆକ୍ରମଣ ପ୍ରତି ସହନଶୀଳତା ଗୁଣ ଥିବା କିସମ ଯଥା- ମଲ୍ଲିକା, ରାଜପୁରୀ, ତୋତାପୁରୀ, ଲାଙ୍ଗ୍ରା ଓ କେଶର ଆଦି କିସମ ଲଗାନ୍ତୁ ।
* ଆମ୍ବ ବଗିଚାରେ ଉପଲବ୍ଧ ହେଉଥିବା ଶୁଖିଲା ଘାସ, ପତ୍ର, କୁଟା, କାଠି ଓ ଅନ୍ୟାନ୍ୟ ଶୁଖିଲା ଅଦରକାରୀ ପଦାର୍ଥଗୁଡ଼ିକୁ ପୋଡ଼ି ଧୂଆଁ ସୃଷ୍ଟି କରନ୍ତୁ ।
* ଆମ୍ବ ବଗିଚାରେ ରହିଥିବା ପରାଙ୍ଗ ଭୋଜୀ ଜୀବ ଯଥା- ବୁଢିଆଣୀ, ଇନ୍ଦ୍ରଗୋପୀ ଭୃଙ୍ଗ ଓ କ୍ରାଇସୋପା ଆଦି ବିନାଶ ନ କରି ସୁରକ୍ଷା ଦିଅନ୍ତୁ ।
* ଆମ୍ବ କଷି ଓ ଚଣା ପ୍ରତି ନିରାପଦ ନିମ୍ବରୁ ପ୍ରସ୍ତୁତ କୀଟନାଶକ ଅଚ୍ୟୁକ (୦.୫%) କିମ୍ବା ନିମ୍ବପତ୍ର ଦ୍ରବଣ (୫%) କିମ୍ବା ନିମ୍ବ ମଞ୍ଜି ଦ୍ରବଣ (୪%) ବଉଳ ଉପରେ ସିଞ୍ଚନ କରନ୍ତୁ । ଏତଦ୍‌ବ୍ୟତୀତ ୧୦ ଲିଟର ପାଣିରେ ଇମିଡାକ୍ଲୋପ୍ରିଡ଼ ୦୪ ମିଲି ଲିଟର ମିଶାଇ ୧୦ ଦିନ ଅନ୍ତରରେ ଦୁଇ ଥର ସିଞ୍ଚନ କରନ୍ତୁ ।

---

ପୂର୍ବତନ ପ୍ରଫେସର ଓ ବିଭାଗୀୟ ମୁଖ୍ୟ
କୀଟତତ୍ତ୍ୱ ବିଭାଗ, ଓ.ୟୁ.ଏ.ଟି., ଭୁବନେଶ୍ୱର

# ସଚ୍ଚି ରାଉତରାୟଙ୍କ 'କବିତା ୧୯୮୭': ଏକ ମୁଗ୍ଧଦୃଷ୍ଟି

**ଦୀପ୍ତିମୟୀ ସାହୁ**



କବିତା ଅନୁଭୂତିସମ୍ପନ୍ନ ଆବେଗପ୍ରବଣ କବି ହୃଦୟର ମୂଳ ଅଭିବ୍ୟକ୍ତି । ସେହି ଅଭିବ୍ୟକ୍ତିରେ ଫୁଟିଉଠେ ସମାଜ ତଥା ମଣିଷର ଅନ୍ତରଙ୍ଗ ମୁହୂର୍ତ୍ତର ଛାଇଛଇଳ ରୂପଚିତ୍ର । ବାସ୍ତବ ହେଉ ଅବା ଅବାସ୍ତବ ହେଉ, ତାହା ତାଙ୍କ ସୃଜନଶୀଳତାର ସ୍ପର୍ଶରେ ତତ୍କାଳୀନ ସମୟର ପ୍ରତିଧ୍ୱନି ଦିଏ । ବିଭିନ୍ନ ବିଭାଗରେ ଲେଖନୀ ଚାଳନା କରି ଏହିପରି ସମୟର ଆବେଗକୁ ତନ୍ମଧ୍ୟରେ ବାନ୍ଧି ରଖିପାରିଥିବା ଜଣେ ସୁପ୍ରତିଷ୍ଠିତ ପ୍ରଥିତଯଶା କବିପୁରୁଷ ହେଲେ ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ । କବି, ଗାଳ୍ପିକ, ଔପନ୍ୟାସିକ ତଥା ସମାଲୋଚକ ଭାବରେ ସେ ଥିଲେ ଓଡିଆ ପ୍ରଗତିବାଦୀ ସାହିତ୍ୟ-ସାମ୍ରାଜ୍ୟରେ ଜଣେ ଅପ୍ରତିଦ୍ୱନ୍ଦ୍ୱୀ ସାହିତ୍ୟ-ସମ୍ରାଟ୍ । 'ପାଥେୟ'(୧୯୩୧), 'ଅଭିଯାନ'(୧୯୩୮), 'ବାଜିରାଉତ'(୧୯୪୧), 'ପଲ୍ଲିଶ୍ରୀ'(୧୯୪୧), 'ପାଣ୍ଡୁଲିପି'(୧୯୪୭), 'ହସନ୍ତ', 'ଅଭିଜ୍ଞାନ'(୧୯୪୮), 'ଭାନୁମତିର ଦେଶ', 'ସ୍ୱଗତ ୧୯୫୮', 'କବିତା ୧୯୬୨', 'କବିତା ୧୯୭୧', 'ଏସିଆର ସ୍ୱପ୍ନ'(୧୯୬୮), 'କବିତା ୧୯୬୯', 'କବିତା ୧୯୭୪', 'କବିତା ୧୯୮୩', 'କବିତା ୧୯୮୫' ପ୍ରଭୃତିର କବି ଭାବରେ ତାଙ୍କ ଗୌରବ ଏବେବି ରହିଛି ଅକ୍ଷୁଣ୍ଣ । ଦିନେ ନିଜକୁ ଏଇ ଧରା ଓ ଆକାଶର କବି ମନେକରୁଥିବା ରାଉତରାୟ ନିଜ କବିତାରେ ଶୁଣାଇଥିଲେ ସମୟର ପ୍ରାଣସ୍ପନ୍ଦନ । ମାତ୍ର ସ୍ୱାଧୀନତା ପରବର୍ତ୍ତୀ ଉତ୍ତର ଅଶୀ ଦଶକରେ ତାଙ୍କର ପ୍ରଗତିଶୀଳ ଉଦ୍ଦାମ ଚେତନା ଅପେକ୍ଷା କବିତାରେ ଜୀବନ, ଜଗତ, ସମୟକୁ ନେଇ ପ୍ରାୟୋଗିକ ପରୀକ୍ଷାଧର୍ମୀ ଦୃଷ୍ଟିକୋଣକୁ ପାଠକେ ଯତ୍ରତତ୍ର ଲକ୍ଷ୍ୟ କରନ୍ତି । ତଦନୁରୂପ ଆଲୋଚ୍ୟ 'କବିତା ୧୯୮୭' ତତ୍କାଳୀନ ସମୟର ଭିନ୍ନଭିନ୍ନ ଆଭିମୁଖ୍ୟକୁ ନେଇ ପରିକଳ୍ପିତ ।

ଅଦୃଶ୍ୟ ଭାବଜଗତର ନିଟୋଳ ସତ୍ୟରୂପ କବିତାରେ ହିଁ ଅନୁଭବ୍ୟ ହୁଏ । କବି ମନର ସଂଗୁପ୍ତ ଭାବନା ତନ୍ମଧ୍ୟରେ ପାଏ ସାର୍ଥକ ରୂପ । କବି ରାଉତରାୟଙ୍କ ଜୀବନ ଅପରାହ୍ନର କଥା କହୁଥିବା 'କବିତା ୧୯୮୭' ସଂକଳନଟିରେ ଦେଖିବାକୁ ମିଳିଥାଏ ବିବିଧ ଭାବାନୁରୂପର

ମୁକୁଳା ଅଭିବ୍ୟକ୍ତି । ଏହାର ରହିଛି ତିନୋଟି ବିଭାଗ, ଯଥା –

୧. ୧୯୮୫–୧୯୮୭ ମଧ୍ୟରେ ରଚିତ କବିତା (୨୧ଟି) ।

୨. ୧୯୩୦–୧୯୩୫ ମଧ୍ୟରେ ରଚିତ କୈଶୋର ବୟସର ବାଲ୍ୟରଚନା(୪୫ଟି) ।

୩. ପୂର୍ବାପର ପ୍ରସଙ୍ଗ(କବିଙ୍କ ସମ୍ପର୍କରେ କୃତି ଗବେଷକ ଏବଂ ସମାଲୋଚକଙ୍କ ସମାଲୋଚନା ସମୂହ)

ପ୍ରଗତିବାଦୀ ଅନୁସନ୍ଧିତ୍ସୁ ଦୃଷ୍ଟିକୋଣରେ ରସାଣିତ କିଛି କବିତା ସହ କୈଶୋର ବୟସରେ କଂଚା ହାତର କୋମଳ ସ୍ପର୍ଶ ପାଇ ହସି ଉଠିଥିବା ୪୫ଟି କବିତାକୁ ନେଇ ଏ ପୁସ୍ତକ (କବିତା ୧୯୮୭) ଏକ ଅନୁପମ କଳାକୃତି । ଏ ସମ୍ପର୍କରେ ସ୍ୱୟଂ କବି ପାଠକ ସମାଜକୁ ବିଶ୍ୱାସ ଦେଇ କହିଛନ୍ତି– 'ବାଲ୍ୟରଚନା ମଧ୍ୟରେ ବହୁ ସାମ୍ୟବାଦୀ ବା ମାର୍କସୀୟ କବିତା ରହିଛି, ଯାହା ଏ ସଂପର୍କୀୟ ବାଦବିବାଦରେ ଚିର ଯବନିକା ପକାଇବ ବୋଲି ଆଶା କରାଯାଏ । ଓଡିଆ ପ୍ରଗତି ସାହିତ୍ୟ ବା ମାର୍କସୀୟ ସାହିତ୍ୟର ଅଗ୍ରସୂରୀ ତଥା ପ୍ରବର୍ତ୍ତକ ଭାବରେ ତାଙ୍କୁ ଗ୍ରହଣ କରାଯିବାବେଳେ ଯେଉଁ ବାଦବିବାଦ ଉଠିଥିଲା ତାକୁ ନେଇ କବିଙ୍କ ଏହଭଳି ମନ୍ତବ୍ୟ ଯଥାର୍ଥ ମନେହୁଏ । ଏହି କବିତା ପୁସ୍ତକର ପୂର୍ବାପର ପ୍ରସଙ୍ଗରେ ସ୍ଥାନିତ ଡକ୍ଟର ମଥୁରାନାଥ ହୋତା, ଅଧ୍ୟାପକ ବୈଷ୍ଣବ ଚରଣ ସାମଲ, ଶ୍ରୀ ମହେଶ୍ୱର ମୂଳିଆ, ପ୍ରଫେସର ଡକ୍ଟର କାହ୍ନୁଚରଣ ମିଶ୍ର ଓ ଗୋବିନ୍ଦ ତ୍ରିପାଠୀ ପ୍ରମୁଖ ବିଶିଷ୍ଟ ସମାଲୋଚକଙ୍କର ପ୍ରଗତିଶୀଳ ଚିନ୍ତାନାୟକ ସଚ୍ଚିଦାନନ୍ଦ ରାଉତରାୟଙ୍କ ସଂପର୍କିତ ଯୁକ୍ତିମୂଳକ ପ୍ରାସଙ୍ଗିକ ଆଲୋଚନାଗୁଡ଼ିକ ଏହାର ସାର୍ଥକ ଦୃଷ୍ଟାନ୍ତ ।

ସମୂହର ଉନ୍ନତି ଥିଲା କବିଙ୍କର ସ୍ୱପ୍ନ । ଦୁର୍ବଳଙ୍କ ହୃଦୟର ଜ୍ୱଳନରେ ତାଙ୍କ ଆତ୍ମା ହେଉଥିଲା ଦଗ୍ଧିଭୂତ । ବ୍ୟାକୁଳ କବିପ୍ରାଣ ଛାତିର ଖେଦକୁ କବିତାରେ ବାଢୁଥିଲେ । ଦେଶାତ୍ମପ୍ରାଣ ଭାବ ଏବଂ ନବସୂର୍ଯ୍ୟୋଦୟର ସ୍ୱପ୍ନ ନେଇ ସେ ଭାରତବାସୀଙ୍କୁ କିଭଳି ଉତ୍ସାହମୂଳକ ମନ୍ତବ୍ୟ ଦେଇଛନ୍ତି ତା'ର ଗୋଟିଏ ଦ୍ୱଷ୍ଟାନ୍ତ ଦେଖନ୍ତୁନା–

'ଦେଶର ଦଶର ଡାକ ଶୁଣ ଆଜି
ଜାଗରେ ଭାରତବାସୀ
ଗୌରବମୟ ଆର୍ଯ୍ୟଭୂମିର
ହେ ପ୍ରାଚୀନ ଅଧିବାସୀ ।'

(ସ୍ୱାଧୀନ ସୂର୍ଯ୍ୟ, ପୃ.୫୭)

ମଣିଷର କଥା କହିଛି ତାଙ୍କର କବିତା । ଜନଜୀବନର ସାମୂହିକ ଉନ୍ନତିକଳ୍ପେ କବିଙ୍କର ପ୍ରଗତିଶୀଳ ବିଚାରବୋଧର ସ୍ୱାତନ୍ତ୍ର୍ୟ ମଧ୍ୟ ଥିଲା ଖୁବ୍ ଅଦ୍ଭୁତ । ତାଙ୍କ କବିତାରେ ଥିଲା ଅଗ୍ନିସ୍ଫୁଲିଙ୍ଗର ପ୍ରଚଂଡ ଶକ୍ତି । ଯୁବପ୍ରାଣର ଉନ୍ମତ୍ତ ଉତ୍ତାଳ ମୂର୍ଚ୍ଛନା ତୋଳି ଏକଦା ସେ ଆହ୍ୱାନ କରିଥିଲେ–

'ଯାହା ଅଛି ସାନ, ଯା ସମାପିକା
ପୋଡିଦିଅ ସବୁ ଜାଳି ମୃତ୍ୟୁ ଶିଖା
ଆଙ୍କୁ ନିରତେ ପୂର୍ଣ୍ଣର ଛବି
ତୁମରି ରକ୍ତ ତୂଳିକା ।'

(ବୃହତ୍ତର ଆହ୍ୱାନ, ପୃ.୫୯)

ଏହି ସମୟ ମଧ୍ୟରେ ସାମ୍ୟବାଦୀ ଚିନ୍ତାନାୟକଙ୍କ ଅନ୍ତରରୁ ଗୁଞ୍ଜାରି ଉଠିଛି ପ୍ରଳୟର ବଜ୍ରନାଦ । ପୁଞ୍ଜିପତି ଶୋଷକଗୋଷ୍ଠୀ ବିରୁଦ୍ଧରେ ସାଧାରଣ ମଣିଷ ହକ୍ ପାଇଁ ଏକକ ହେବାର ମାନ୍ତ୍ରିକ ଉଚ୍ଚାରଣ ମଧ୍ୟରେ କବିଙ୍କ ରଣଭେଦୀ ଶବ୍ଦ–ବାଦ୍ୟ ପ୍ରତ୍ୟେକ ମଣିଷର ହୃଦକନ୍ଦରରେ ପ୍ରତିଧ୍ୱନିତ ହୋଇଥିଲା । କିଶୋର ବୟସରେ ସୁଦ୍ଧା ସେ ରଣହୁଙ୍କାର ଦେଇ ସାଧାରଣ ମଣିଷଙ୍କ ପାଇଁ ଲେଖିଥିଲେ–

'ଆକାଶେ ବାରବାର ମୃତ୍ୟୁ ମାଦଳ !!
ଯାତ୍ରା କଲ ଆଜି ରୁଦ୍ର ପାଗଳ
ଝିଟିକା ଝମଝମ ଅଧୀରେ ଗଲା ଡାକି
ନୀରବେ ନଇଁ ଆସେ ଅଳସ ମୋର ଆଖି
ଅଶ୍ରୁ ସଜଳ । ରୁଦ୍ର ପାଗଳ ।'

(ପ୍ରଳୟ ଅଭିସାର–ପୃ.୬୦)

ସେହିପରି 'ଶ୍ରମିକର ଶ୍ରୀପଂଚମୀ'ରେ ସାଧାରଣ ଦୀନଦୁଃଖୀ ପ୍ରତି ବାଗ୍‌ଦେବୀଙ୍କ କୃପାହୀନ ଦୃଷ୍ଟି ଦେଖି

କ୍ଷୁବ୍ଧ କୈଶୋର କବିପ୍ରାଣର ଉନ୍ମାଦନା ଓ ଅଭିଯୋଗ ନିମ୍ନମତେ ପ୍ରକାଶ ପାଇଛି -

'ଏତେ ଦୂରେ ଥାଇ ସଦା ବୀଣାବାଈ
ମତ୍ତ ତୁମେ ତ ଚିର
ବୁଝିବ କେଉଁଠୁ ଧରଣୀ ମାଟିର
ବେଦନା ସୁପ୍ରଚୁର ।
ତୁମେ ମଉଆଳ ପାରିଜାତମାଳ
ସଜ ସୁରଭିର ମଦେ
ମାଟିର ବେଦନା ମରଇ ଆକୁଳେ
ତୁମରି କୋମଳ ପଦେ ।
ଆଜି ସେ ଦିନ ତ ନାହିଁ
ଆଜି ଚଉଦିଗେ ଚିର ବାସ୍ତବ ଶଙ୍ଖ ଉଠୁଛି ବାଇ ।'
(ଶ୍ରମିକର ଶ୍ରୀପଂଚମୀ, ପୃ. ୭୧)

ଏହିପରି 'ଅନୁରୋଧ', 'ବୃହତ୍‌ର ଆହ୍ୱାନ', 'ଅଗ୍ନିପୂଜାରୀ', 'ପ୍ରଭାତେ', 'ଗାନ', 'ଯାତ୍ରୀ' ଓ 'ଅଗ୍ନି-ପୂଜାରୀ' ପ୍ରଭୃତି କବିତାରେ ତାଙ୍କର ପରାଧୀନତାଗ୍ରସ୍ତ ଦେଶବାସୀଙ୍କୁ ସ୍ୱାଧୀନତା ପ୍ରାପ୍ତି ନିମନ୍ତେ ମନରେ ଅଖଣ୍ଡ ବିଶ୍ୱାସ ଧାରଣ ପାଇଁ ଆତ୍ମନିବେଦନ, ସମାଜର ଉନ୍ନତିକଳ୍ପେ ଦୃଢ଼ ଅକାଂକ୍ଷା ଏବଂ ସାମାଜିକ ମଣିଷ ପ୍ରତି ସଚେତନ ଦୃଷ୍ଟିପାତ ପାଇଁ ପ୍ରଚଂଡ଼ ଆହ୍ୱାନ ପ୍ରକାଶ ପାଇଛି । 'ଖାଦ୍ୟ' କବିତାରେ ତତ୍କାଳୀନ ସମାଜର ବାସ୍ତବତାକୁ ଦର୍ଶାଇ ସେ କହିଛନ୍ତି-

'ମୃତ୍ତିକାର ରୁକ୍ଷ ତନୁ କରି ରୋମାଂଚିତ
ମନ୍ଥର ଅଶ୍ରୁତ ପ୍ରାୟ କ୍ରୁର ପ୍ରତିଧ୍ୱନି
ଆକାଶେ ତୋଳିଛି ଫଣା ନିର୍ମମ ଘୋଷଣା
ଖାଦ୍ୟ ଲୋଡ଼ା! ରୁଟି ଲୋଡ଼ା!
ଲୋଡ଼ା ପୁଣି ଶୁଚି, ସ୍ୱାସ୍ଥ୍ୟ, ଆୟୁ
ଜୀଇଁବାର ଲାଗି ଲୋଡ଼ା
ନିରୁଦ୍‌ବେଗ ଦସ୍ୟୁର ଆକାଂକ୍ଷା ।'

କବି ଆଧୁନିକ ମଣିଷର ଦୈନ୍ୟବୋଧ, ବିକାଶ ନାମରେ ଠକାମି ସାଙ୍ଗକୁ ବିପଥଗାମୀ ମଣିଷର ଅଭାବନୀୟ କର୍ମକୁ ତୀବ୍ର ନିନ୍ଦା କରିଛନ୍ତି 'ତମକୁ ହିଁ କହୁଛି', 'ବରଦାନ', 'ଅଭିଶାପ' ଆଦି କବିତାଗୁଡ଼ିକରେ । ଅନୁଭବ ସାପେକ୍ଷ ଜୀବନର ସତ୍ୟତା ତାଙ୍କ ଦୃଷ୍ଟିରେ ବେଶ୍ ପରୀକ୍ଷାଧର୍ମୀ-

'ଏ ଦିନ ରହିବ ନାହିଁ
ଜୀବନଟା ଖାଲି ଯେ ଜଞ୍ଜାଳ
ହସଠାରୁ ଲୁହ ବେଶି
ସପନରୁ ସତ ମୁଂଡ଼ ଝାଳ ।'
(ପହିଲି ରଜ)

ବାଲ୍ୟରଚନା ଅନ୍ତର୍ଭୁକ୍ତ ତାଙ୍କ କବିତାଗୁଡ଼ିକରେ ପଲ୍ଲୀପ୍ରୀତି, ଆଧ୍ୟାତ୍ମିକ ପିପାସାବୋଧ, ରୋମାଂଟିକ୍ ପ୍ରେମପ୍ରଣୟ, ମୃତ୍ୟୁପ୍ରତି ଏବଂ ମାନବପ୍ରତି ସମ୍ବେଦନଶୀଳ ଦୃଷ୍ଟିଭଙ୍ଗୀ ଆଦି ପ୍ରକାଶ ପାଇଛି । ସ୍ମୃତି ଛଳଛଳ ରୋମାଂଟିକ୍ ଭାବପ୍ରବଣର ନିବିଡ଼ପଣ ପ୍ରିୟାକୁ ବିଦାୟ ଦେବାବେଳେ କବିଙ୍କ ଆତ୍ମାନୁଭୂତିରୁ ଶବ୍ଦଫୁଲଗୁଡ଼ିକ ନିମ୍ନମତେ ଝରିପଡ଼ିଛି-

'ଶିରୀହୀନ ରୁକ୍ଷ ସେହି ପୀୟୂଷ ପ୍ରଭାତେ
ମେଲାଣି ଦେବାକୁ ହେଲା ପ୍ରିୟାକୁ ମୋହର
ଘାଟ-ଶିଳା ପାଶେ
ଭିଡ଼ା ଥିଲା ନାଆ...
ସେଦିନ ସେ ପଉଷ ସକାଳେ ।' (ମେଲାଣି)

'ସପନେ', 'ଭାଦ୍ର ଅତିଥି', 'ବର୍ଷାବିରହୀ' ,'ଆଜି ଦୁଃଖର ରାତେ', 'ଆସ ଗୋ', 'ପଥିକ', 'କେବେ ??', 'କ୍ଷଣିକା', 'ନୂପୁର ବାଜେ' ପ୍ରଭୃତି କବିତାଗୁଡ଼ିକ ଏହି ଚେତନାକୁ ନେଇ ଆତ୍ମପ୍ରକାଶ କରିଛନ୍ତି । ଏସବୁରେ କବି କେତେବେଳେ ସବୁଜମନସ୍କ ହୋଇ ପ୍ରେମପ୍ରଣୟର ଭାଷା ବୁଣିଛନ୍ତି ତ ପୁଣି କେତେବେଳେ ତନ୍ମଧ୍ୟରେ ଆତ୍ମସ୍ଥ ହୋଇ ସବୁଜ କବିଗଣଙ୍କ ପରି ଅଦେହୀର ସନ୍ଧାନ କରିଛନ୍ତି ।

ତାଙ୍କ କବିତା ମାନବୀୟ ସମ୍ବେଦନାରେ ପରିପୂର୍ଣ୍ଣ । ହୃଦୟରେ ସର୍ବଦା ମଣିଷଙ୍କ ପ୍ରତି ଗଭୀର ଅନୁରାଗ ଥିଲା ତାଙ୍କର । ସଦା ସାମ୍ୟବାଦର ମନ୍ତ୍ର ଫୁଙ୍କୁଥିବା କବି ଜଗତର ନରନାରୀଙ୍କ କଷଣ ଶୋଷଣ ଦେଖି ଗଭୀର ବ୍ୟଥା

ପାଇଛନ୍ତି । ସେମାନଙ୍କର ଏ ଦୟନୀୟତାରେ ଭଗବାନଙ୍କ ନିରବତା ଦେଖି ତାଙ୍କୁ ଅସ୍ୱୀକାର କରି ଲେଖିଛନ୍ତି-

ଭଗବାନ ଅଛ କାହିଁ
ଆକାଶ ପବନ ଗର୍ଜି ମୋ କାନେ
କହି ଯାଏ ନାହିଁ ନାହିଁ ।
ଯଦି ମୁଁ ଫେରାଏ ଆଜି ବେନି ଆଖି
ତହିଁ ଦେଖେ ଖାଲି ଦୀନ, ନିରିମାଖି
ଅନ୍ନ ବିହୁନେ ମଣିଷର ଆତ୍ମା
କରୁଅଛି ହାଇ ହାଇ ।
(ଭଗବାନ ଅଛ କାହିଁ, ପୃ.୬୭)

'ମାନବ' ଏବଂ 'ମାଟିର ପତଙ୍ଗ' କବିତାରେ ଏହି ଚେତନା ଅଧିକ ବଳିଷ୍ଠ । ପୁନଶ୍ଚ ଈଶ୍ୱରଙ୍କ ପ୍ରତି ଏକନିଷ୍ଠତା, ଏକାଗ୍ରତା, ଆକୁଳ ପ୍ରାର୍ଥନାଦି 'ଯେବେ', 'ଆରତି', 'କେବେ', 'ଆବାହନ', 'ଅଳି', 'ଜୀବନ ବେଣୁ', 'ସଂସାର ପଥେ', 'ଅଭିସାରେ', 'ଗାନ', 'ଶେଷଗୀତି' ଓ 'ଭାଦ୍ରଅତିଥି' କବିତାଗୁଡ଼ିକରେ ହୋଇଛି ମୂଳ ପରିପ୍ରକାଶ । ସାଂସାରିକ ସୁଖ ମଣିଷକୁ ପୂର୍ଣ୍ଣତା କିମ୍ବା ତୃପ୍ତି ଦେଇପାରେନି । ସବୁ ସତ୍ତ୍ୱେ ମଧ୍ୟ ମଣିଷର ଇଚ୍ଛା ଥାଏ ଅପୂର୍ଣ୍ଣ । ସେଇ ଅପୂର୍ଣ୍ଣତା ଭିତରେ ଭଗବାନଙ୍କୁ ସନ୍ଧାନ କରିବାର ଚିରଆନନ୍ଦ ସେ ଅନୁଭବ କରେ । ନିଜ ମନପ୍ରାଣର ଭେଳାକୁ ଭସାଇ ଦିଏ ପରମାତ୍ମାଙ୍କ ଉଦ୍ଦେଶ୍ୟରେ । ଭକ୍ତପ୍ରାଣ କବିଆତ୍ମା ଏ ସଂପର୍କରେ କହେ-

'ଅସୀମ ଜୀବନ ଦରିଦ୍ରତା ମଧ୍ୟେ
ସରବ ସମ୍ପଦ ପାଇବି ମୁଁ ଯେବେ
ଶୂନ୍ୟତା ମଧ୍ୟେ ପୂର୍ଣ୍ଣତା ସଖା
(ଯେବେ) ଖୋଜିବି ଆନନ୍ଦ ଭରେ ।'
(ଯେବେ)

ପୁନଶ୍ଚ,
'ସୁଖର ଦିନ ସରିଛି ମୋର ଆସିଛି ଦୁଃଖ ବେଳା
ତୁମରି ଆଗେ ଭସାଇ ଦିଏ ଜୀର୍ଣ୍ଣ ମୋର ଭେଳା ।'
(ଦୁଃଖର ଦିନ)

ତାଙ୍କ କବିତାରେ ଅତୀନ୍ଦ୍ରିୟ ଭାବନାର ରୂପାୟନ ବେଳେ ଆମେମାନେ ଓଡ଼ିଆ ସାହିତ୍ୟର ପ୍ରଗତିଶୀଳ ଜନ୍ମଦାତାଙ୍କୁ ନୁହେଁ ବରଂ ସାଂସାରିକ ବନ୍ଧନରୁ ମୁକ୍ତିକାଂକ୍ଷୀ ଜଣେ ଅନାସକ୍ତ କବିପୁରୁଷଙ୍କୁ ଭେଟୁ । ଯେ କି ପଂଚସଖା କବି ଦୃଷ୍ଟିରେ ସଂସାରର ନଶ୍ୱରତାକୁ ଦର୍ଶାଇ କହନ୍ତି-

'ତିନି ନଈ ଯହିଁ ବହୁଛି ଉଜାଣି
ବଟବୃକ୍ଷେ ତିନି ହଂସ
ଯେଉଁ ତିନିବାୟ ଚଳାଏ ନାହାଟି
ହେବ ଶେଷେ ଅଣଚାଷ
ତଡ଼ିଦେବ ମୂଳ ଉଡ଼ିଯିବ ଡାଳ
ଉପୁଡ଼ି ପଡ଼ିବ ବୃକ୍ଷ ।'
(ମୋହମୁଦ୍‌ଗର)

ଧର୍ମକୁ ବଂଚିବାର ମାଧ୍ୟମ ଓ କର୍ମକୁ ହତିଆର ମନେକରୁଥିବା କବି ରାଉତରାୟ ପୁରାଣ ତଥା ପ୍ରାଚୀନ ଓ ନବଚେତନାର ସଚ୍ଛପ୍ରାଣ-ସାହିତ୍ୟ ସ୍ରଷ୍ଟାଙ୍କ ସଦୃଶ ମଣିଷର ଜନ୍ମମୃତ୍ୟୁର ରହସ୍ୟମୟ ଦିଗଗୁଡ଼ିକ ସଂପର୍କରେ ସ୍ୱ-ଦୃଷ୍ଟିକୋଣକୁ ଦେଇଛନ୍ତି ସାର୍ଥକ ରୂପ । ମଣିଷର ମାନ-ଅଭିମାନ, ଯଶ-ସମ୍ମାନ, ପୁରସ୍କାର ଓ ପ୍ରତିଷ୍ଠାଦି ସବୁ ତୁଚ୍ଛ । ତା'ର ଏ ଲୋଭ, ମିଛ ଅହଂକାର, ଆତ୍ମବଡ଼ିମାକୁ ମହାକାଳ-ମୃତ୍ୟୁ ଝାଡୁଦାର ହୋଇ ଦିନେ ଓଳେଇନିଏ । କବିଙ୍କ ଭାଷାରେ-

'ପବନ କରୁଛି ତାର କାମ
ସବୁକିଛି ନେଉଛି ଉଡ଼ାଇ
ମହାକାଳ ଝାଡୁଧରି ବସିଛି କୋଣରେ
ସଭାଶେଷେ ସବୁକିଛି ନେବାକୁ ଉଡ଼ାଇ ।'
(ରବୀନ୍ଦ୍ର ମଂଡ଼ପ)

ପ୍ରାପ୍ତି-ନିଶାରେ ମଣିଷର ସଂଘର୍ଷ ଥାଏ ଅବ୍ୟାହତ । ଉପଭୋଗ ମନସ୍କ ମଣିଷର ଆତ୍ମଗର୍ବ ଏବଂ ବିଶ୍ୱ ସହ ତା'ର ଅର୍ଥନୈତିକ ଦ୍ୱନ୍ଦ୍ୱର ଚିତ୍ର ଦେଖିବାକୁ ମିଳେ 'ଶେଷଯୁଦ୍ଧ' କବିତାରେ । ଏହିପରି ଦେଖିଲେ-ପୁଞ୍ଜିପତିଙ୍କୁ ବିରୋଧ କରୁଥିବା ତଥା ଭଗବାନଙ୍କ ଶ୍ରେଷ୍ଠ

ବରଦାନ କଲମର ଜୟଗାନ(ବରଦାନ), ମଣିଷଙ୍କୁ ଯୁଦ୍ଧଖୋର ମନୋଭାବରୁ ନିବୃତ୍ତ ପାଇଁ ଆହ୍ୱାନ (ତମକୁ ହିଁ କହୁଛି), କ୍ଷମତାଧିକାରୀ ସରକାରୀ କର୍ମଚାରୀଙ୍କ ଅକ୍ଷମ ଶାସନ ନୀତି ବିରୁଦ୍ଧରେ ତୀବ୍ର ବ୍ୟଙ୍ଗ (ନିର୍ମଳ ନିଳୟ), ଖଣ୍ଡବିଖଣ୍ଡିତ ସମୟର ଚିତ୍ର (ବାଲିଆପାଳ), ଅତୀତ ପ୍ରତି ଅନୁରାଗ (କ୍ଷତିପୂରଣ), କାବ୍ୟନିନ୍ଦୁକଙ୍କ ପ୍ରତି କଟାକ୍ଷ (ସନ୍ଧିପୂଜା), ଖଳଲୋକ ଦ୍ୱାରା ଉଜୁଡ଼ା ବାଲିଆପାଳର ଚିତ୍ର(ବାଲିଆପାଳ), ଅଫେରା ଅତୀତର ସୁଖଦ ସ୍ମୃତିଚାରଣ (ସ୍ମୃତି), ନିଜତ୍ୱର ସନ୍ଧାନ (ପରିଚୟ), ଆଧିଭୌତିକ ରହସ୍ୟମୟାଦି ବିବିଧ ଦିଗକୁ ସ୍ପର୍ଶ କରିଛି ତାଙ୍କର କବିତାରାଜି । 'ମହାପ୍ରୟାଣ' (ଡକ୍ଟର ହରେକୃଷ୍ଣ ମହତାବ ସ୍ମରଣେ), 'ଚଉପହରା', 'ଚାଇଁବସା' ପ୍ରଭୃତି କବିତାଗୁଡ଼ିକ ସ୍ୱତନ୍ତ୍ର ଭାବଧର୍ମ ନେଇ ପ୍ରକାଶ ପାଇଛନ୍ତି ।

ଉତ୍ତର ଅଶୀ କାବ୍ୟଶୈଳୀରେ ଚିତ୍ରକଳ୍ପ, ପ୍ରତୀକାଦିର ପ୍ରୟୋଗାତ୍ମକ ବିଶେଷତା କବିଙ୍କ ଏହି ରଚନାରେ ବାରି ହୋଇପଡ଼େ । କବିତାର ସ୍ୱରୂପ କଳ୍ପନାବେଳେ କବିଙ୍କର ଶବ୍ଦରେ ଅଙ୍କା ଗୋଟିଏ ଚିତ୍ରରୂପର ଦୃଷ୍ଟାନ୍ତ ଏହିପରି–

'...ତା' ମୁହଁଟି ୟୁନିଭାରସିଟି ପରି/ଶାନ୍ତ ଓ ଚଂଚଳ
କଟି ତା'ର ଏକ ଉପନଦୀ
ଆଖି ତା'ର ପଦ୍ମପତ୍ର ଜଳ ।
ଆଉ କେବେ ପଲ୍ଲୀବାଳା ହୋଇ
ଦୁଇହାତେ ମାଣଗେଣ୍ଡୁ ଡାଳକୁ ଆଡ଼େଇ
ଯାଏ ନଦୀ ତୀରେ ମାଠିଆ କାଖେଇ... ।'
(କବିତାର ଜନ୍ମଦିନେ)

ଅନୁଭୂତିସିକ୍ତ କବିଙ୍କ ବାର୍ତ୍ତା ପାଠକ ସମାଜକୁ ବାନ୍ଧି ରଖିବାରେ ହୋଇଛି ସକ୍ଷମ । ଏଥିରେ ଥିବା କବିଙ୍କ ନିର୍ଭୀକ ପଣିଆ, ସାମ୍ୟବାଦ ଚେତନା, ସ୍ୱଦେଶାନୁରାଗ, ଅପାଙ୍ଗ ସମାଜ ପ୍ରତି ମର୍ମଭେଦୀ କଟାକ୍ଷ, ମହଳ ସ୍ୱପ୍ନର ସଂଗୁପ୍ତ ମୂର୍ଚ୍ଛନା, ଅକୃତ୍ରିମ ନିର୍ମଳ ଅନୁଭବ ସର୍ବୋପରି ସଚେତନ କବି ଦୃଷ୍ଟିର ସାର୍ବଜନୀନ ବାର୍ତ୍ତାଦି ପାଠକର ଦୃଷ୍ଟି ଆକର୍ଷଣ କରେ । 'କବିତା-୧୯୮୭' ସ୍ୱାଧୀନତା ପରବର୍ତ୍ତୀ ସମୟରେ ଆତ୍ମପ୍ରକାଶ କରିଥିଲେ ମଧ୍ୟ ସବୁଜ ଚେତନା, ପ୍ରଗତିଶୀଳ ଆଭିମୁଖ୍ୟ ଓ ସ୍ୱାଧୀନୋତ୍ତର ଭାବପୁଞ୍ଜିର ଏକ ମନ୍ମୟ ଆଲେଖ୍ୟ, ଏହାକୁ ନିଃସନ୍ଦେହରେ ଗ୍ରହଣ କରାଯାଇପାରେ ।

**ସହାୟକ ଗ୍ରନ୍ଥସୂଚୀ**

୧. ରାଉତରାୟ ସଚ୍ଚିଦାନନ୍ଦ, କବିତା-୧୯୮୭, ଦିଗନ୍ତ ପ୍ରକାଶିନୀ, କଟକ, ୨ୟ ସଂସ୍କରଣ-୧୯୯୨ ।

୨. ରାଉତରାୟ ସଚ୍ଚି, ସାହିତ୍ୟ ବିଚାର ଓ ମୂଲ୍ୟବୋଧ ।

୩. ଶତପଥୀ ନିତ୍ୟାନନ୍ଦ, ସବୁଜରୁ ସାଂପ୍ରତିକ, ଗ୍ରନ୍ଥମନ୍ଦିର, କଟକ, ୨ୟ ସଂସ୍କରଣ-୧୯୮୫ ।

୪. ଶତପଥୀ ପ୍ରଫେସର ନିତ୍ୟାନନ୍ଦ, ସତୁରୀରୁ ସହସ୍ରାବ୍ଦୀ, ପ୍ରାଚୀ ସାହିତ୍ୟ ପ୍ରତିଷ୍ଠାନ, କଟକ, ୨ୟ ସଂସ୍କରଣ-୨୦୧୦ ।

ଅତିଥି ଅଧ୍ୟାପିକା
ଓଡ଼ିଆ ଭାଷା-ସାହିତ୍ୟ ବିଭାଗ
ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର



# ସତ୍ୟବାଦୀର ସାଧକ : ପଞ୍ଚସଖା

ସୁଚିତ୍ରା ବେହେରା

ଜୀବନରେ ସାଧନା କହିଲେ ଏକ ସୁଦୀର୍ଘ ଲକ୍ଷ୍ୟକୁ ବୁଝାଏ । ବ୍ୟକ୍ତିଗତ ସୁଖ ଓ ସ୍ୱାର୍ଥକୁ ତ୍ୟାଗ କରି ସାମୂହିକ କଲ୍ୟାଣ ପାଇଁ ନିଷ୍ଠାପର କର୍ମରେ ବ୍ରତୀ ହୋଇ ସାଧନା ପଥରେ ଗତି କରିବା ଏତେ ସହଜ ଓ ସରଳ କାର୍ଯ୍ୟ ହୋଇନଥାଏ । ତଥାପି ଏଇଭଳି ସାଧନା ପଥରେ ଅଗ୍ରସର ହୋଇଥିବା କେତେଜଣ ଯୋଗଜନ୍ମା ମହାପୁରୁଷମାନଙ୍କ ମଧ୍ୟରେ ପଞ୍ଚସଖା ଯଥା- ପଣ୍ଡିତ ଗୋପବନ୍ଧୁ ଦାସ, ପଣ୍ଡିତ ନୀଳକଣ୍ଠ ଦାସ, ଆଚାର୍ଯ୍ୟ ହରିହର ଦାସ, କୃପାସିନ୍ଧୁ ମିଶ୍ର ଓ ଗୋଦାବରୀଶ ମିଶ୍ର ଆମର ଚିରନମସ୍ୟ । ବ୍ୟକ୍ତିଗତ ସ୍ୱାର୍ଥକୁ ପରିତ୍ୟାଗ କରି ଦେଶ ଓ ଜାତିର ଉନ୍ନତି ପାଇଁ ଯେଉଁ ସାଧନାକୁ ସେମାନେ ଜୀବନର ବ୍ରତ ରୂପେ ଗ୍ରହଣ କରି ନେଇଥିଲେ, ତାହା ସେମାନଙ୍କୁ ଉତ୍କଳ ଭୂମିର ଅମର ସାଧକ ରୂପେ ପରିଚିତ କରିଦେଲା ଯୁଗ ଯୁଗକୁ ।

ପବିତ୍ର ଉତ୍କଳ ଭୂମିର ମାଟି, ପାଣି, ପବନ, ପରିବେଶ ଆଦିର ମହକରେ ତଲ୍ଲୀନ ହୋଇଥିଲା ପଞ୍ଚସଖାଙ୍କ ଉଦାର ହୃଦୟ । ପ୍ରଚଣ୍ଡ ସାଧନା ପାଇଁ ଗନ୍ତବ୍ୟ ସ୍ଥଳ ପାଲଟିଥିଲା ସତ୍ୟବାଦୀ ବନ ବିହାର । ସେଇଠାରୁ ଆରମ୍ଭ ହୋଇଥିଲା ସେବା, ଶିକ୍ଷକତା, ଦେଶ ପାଇଁ ସଂଗ୍ରାମର ଲକ୍ଷ୍ୟ, ଭଲ ମଣିଷ ଗଢିବାର ପ୍ରୟାସ ଆଦି ବିଭିନ୍ନ ସାଧନା । ସତ୍ୟ ଓ ଅହିଂସା ପଥର ଯାତ୍ରୀ ହୋଇ ସତ୍ୟବାଦୀର ସାଧକମାନେ ଦିଗ୍‌ଦର୍ଶନ ଦେଇଚାଲିଥିଲେ ।

**ସତ୍ୟବାଦୀରେ ସାଧନା-** ସତ୍ୟବାଦୀଠାରେ ବିଦ୍ୟାଳୟଟିଏ ପ୍ରତିଷ୍ଠା କରିବା ପାଇଁ ଭକ୍ତକବି ମଧୁସୂଦନ ରାଓଙ୍କ ପରାମର୍ଶରେ ସ୍ଥାନଟିକୁ ଚୟନ କରିଥିଲେ ପଣ୍ଡିତ ଗୋପବନ୍ଧୁ । ୧୯୦୯ ମସିହାରେ ସତ୍ୟବାଦୀରେ ସ୍କୁଲ୍ ଆରମ୍ଭ ହୋଇଥିଲା । ସମସ୍ତ ସ୍ଥାନ ମଧ୍ୟରେ ସେ ଏହି ସତ୍ୟବାଦୀକୁ ବାଛିଥିଲେ ନିଜର କର୍ମଭୂମି କରି । ଏହି ବନବିହାର ଥିଲା ତାଙ୍କର ମାନସ ସନ୍ତାନ ଏବଂ ପଣ୍ଡିତ ନୀଳକଣ୍ଠଙ୍କର ସ୍ୱ ହସ୍ତ ପାଳିତ ଏକ ଜୀବନ୍ତ ଅନୁଷ୍ଠାନ । ଏଇଠାରେ ନିଃସର୍ଗ ପ୍ରକୃତି କୋଳରେ ମନୁଷ୍ୟର ଅନ୍ତର ପ୍ରକୃତିକୁ ଏକ ମହତ୍ତର ଭାବାଲୋକକୁ ଉନ୍ନୀତ କରିବା ପାଇଁ ମହାନ୍ ସାଧନା ଆରମ୍ଭ ହୋଇଥିଲା ବିଂଶ ଶତକର ଆଦ୍ୟ ପାଦରେ । ଶିକ୍ଷା ଓ ଶାନ୍ତି, ପ୍ରଗତି, ପ୍ରଗତି ଓ ମାନବ ମୈତ୍ରୀର ପଟ୍ଟଭୂମିରେ ଉଗ୍ର ଜାତିପ୍ରୀତିର ଶକ୍ତିକୁ ବିଶ୍ୱ ପ୍ରାଣତାର ମହାନ୍ ଆଦର୍ଶରେ ରୂପାନ୍ତରିତ କରିବା ପାଇଁ ସାଧନାର ପୀଠ ଥିଲା ସତ୍ୟବାଦୀ ବନବିହାର ।

ସତ୍ୟବାଦୀ ବନବିହାର କେବଳ ମାତ୍ର ଏକ ବିଦ୍ୟାଳୟ ନଥିଲା, ଏହା ଥିଲା ଏକ ଜୀବନ୍ତ ଅନୁଷ୍ଠାନ ଏବଂ ସମ୍ପୂର୍ଣ୍ଣ ସମାଜ । ଗୋଟାଏ ସମ୍ପୂର୍ଣ୍ଣ ସମାଜ ଗଠନ ପାଇଁ ଯେଉଁ ନିଷ୍ଠା, ସାହସ ଓ ଧୈର୍ଯ୍ୟର ପ୍ରୟୋଜନୀୟତା ରହିଥାଏ । ସେ ସବୁକିଛି ପଞ୍ଚସଖା ସାଧକଙ୍କ ଭିତରେ ଏକାକାର ହୋଇଥିଲା । ପରେ ତାହା ଲକ୍ଷ୍ୟ ସାଧନ ହେବା ଦିଗରେ ଦ୍ରୁତ ଗତିରେ ଅତିକ୍ରମ କରିଥିଲା । ମଧୁବାବୁ ସ୍ୱତନ୍ତ୍ର ଉତ୍କଳ ପ୍ରଦେଶର ଯେଉଁ ସ୍ୱପ୍ନ ଦେଖିଥିଲେ, ସେଇ ସ୍ୱପ୍ନକୁ ସାର୍ଥକ କରିବା ପାଇଁ ଓ ସାଂସ୍କୃତିକ ଭିତ୍ତିରେ ନବ ଉତ୍କଳ ଗଠନର ଆଭିମୁଖ୍ୟ ନେଇ ଗୋପବନ୍ଧୁ ପ୍ରମୁଖ ଏହି ବନବିଦ୍ୟାଳୟ ପ୍ରତିଷ୍ଠା କରିଥିଲେ । ସମୟକ୍ରମେ ତାହା ଧୀରେ ଧୀରେ କାର୍ଯ୍ୟକାରୀ ହୋଇଥିଲା ।

**ଶିକ୍ଷକତା**

ସତ୍ୟବାଦୀ ବନବିଦ୍ୟାଳୟର ମୂଳ ଲକ୍ଷ୍ୟ ଥିଲା ସହରରୁ ଶିକ୍ଷିତ ସାଧାରଣଙ୍କ ମନକୁ ପଲ୍ଲୀମୁଖୀ କରିବା । ଶିକ୍ଷାର ରୀତିନୀତି ବଦଳାଇବା ଲକ୍ଷ୍ୟରେ ସତ୍ୟବାଦୀ ସ୍କୁଲ୍‌ର ପ୍ରତିଷ୍ଠା ଗ୍ରାମରେ କରାଯାଇଥିଲା । ସତ୍ୟବାଦୀ ସ୍କୁଲ ଏବଂ ପଞ୍ଚସଖା ସାଧକଙ୍କ ଜୀବନ ଏକ ସୂତ୍ରରେ ବନ୍ଧା ହୋଇଥିଲା । ଏହି ସାଧନା ପୀଠରେ ରହି ସେମାନେ ଉତ୍‌ଥାନ-ପତନ ମଧ୍ୟ ଦେଇ ସତ୍ୟବାଦୀ ସ୍କୁଲ ଓ କଲେଜର ଅଗ୍ରଗତି କ୍ଷେତ୍ରରେ ପ୍ରୟାସ ଚଳାଇଥିଲେ । ସତ୍ୟବାଦୀର ଛାତ୍ରମାନେ ବ୍ୟବହାରିକ ଜୀବନରେ କିପରି କୃତିତ୍ୱ ଅର୍ଜନ କରିପାରିବେ ଓ ମାତୃଭୂମିର ପ୍ରଗତି କ୍ଷେତ୍ରରେ ଅଗ୍ରସର ହେବେ, ସେଥିପାଇଁ ପଞ୍ଚସଖା ସାଧକ ସତତ ଚେଷ୍ଟିତ ଥିଲେ । ମାତୃଭୂମିର ସେବାରେ ଆତ୍ମନିୟୋଗ ପାଇଁ ସେମାନଙ୍କୁ ଏଠାରେ ଉପଦେଶ ଦିଆଯିବା ସହିତ ଭାରତର ଇତିହାସ, ସଂସ୍କୃତି, ବୀରମାନଙ୍କ ଆତ୍ମତ୍ୟାଗର କାହାଣୀ ସମ୍ପର୍କରେ ଶିକ୍ଷା ଦେଉଥିଲେ ।

ବି.ଏ. ଏବଂ ବି.ଏଲ୍. ପାଶ କରି ପଣ୍ଡିତ ଉତ୍କଳମଣି ଗୋପବନ୍ଧୁ ପ୍ରଥମେ ନୀଳଗିରିରେ ଶିକ୍ଷକତା ଆରମ୍ଭ କରିଥିଲେ । ପରେ ପରେ ସତ୍ୟବାଦୀ ସ୍କୁଲ ସ୍ଥାପନ କରିଥିଲେ । ପ୍ରଧାନ ଅଧ୍ୟାପକ କୃପାସିନ୍ଧୁ ମିଶ୍ର ସହକାରୀ ସଂପାଦକ ରୂପେ ବିଦ୍ୟାଳୟର କମିଟି ସଦସ୍ୟ ଥିଲେ । ଛାତ୍ରମାନଙ୍କ ପ୍ରାଣରେ ସ୍ୱଦେଶ ପ୍ରୀତିର ପ୍ରସାର ପାଇଁ ଇତିହାସ ସମ୍ପର୍କରେ ପ୍ରତି ସପ୍ତାହରେ କୃପାସିନ୍ଧୁଙ୍କ ନେତୃତ୍ୱରେ ଏକ ପାଠଚକ୍ର ଆୟୋଜନ କରାଯାଇ ପ୍ରବନ୍ଧମାନ ପଠିତ ହେଉଥିଲା । ଜାତିର ଅତୀତର ସ୍ମୃତି ରୋମନ୍ଥନରେ ଛାତ୍ରମାନଙ୍କ ମନରେ ସ୍ୱଦେଶାନୁରାଗ ପାଇଁ ଏକ ଅନୁକୂଳ ବାତାବରଣ ସୃଷ୍ଟି କରାଯାଉଥିଲା । ୧୯୧୧ ଅକ୍ଟୋବର ମାସରେ ନୀଳକଣ୍ଠ ସତ୍ୟବାଦୀରେ ଯୋଗ ଦେଇଥିଲେ । ଏମ୍.ଏ ପାଶ କରି ନୀଳକଣ୍ଠ ସତ୍ୟବାଦୀରେ ଯୋଗ ଦେଲା ପରେ ଏହି ବନବିଦ୍ୟାଳୟକୁ ଏକ ଉଚ୍ଚ ଇଂରାଜୀ ବିଦ୍ୟାଳୟ କରିବାର ପ୍ରୟାସ ହୋଇଥିଲା । ମାସିକ ଚାଳିଶ ଟଙ୍କା ବେତନରେ ସେ ରହିଥିଲେ । ଏକାଧାରରେ ସେ ପ୍ରଧାନ ଶିକ୍ଷକ ଓ ଛାତ୍ରାବାସର ପରିଚାଳକ ଥିଲେ । ନୀଳକଣ୍ଠଙ୍କ ପରେ ଏକାଡ଼େମୀ ସ୍କୁଲର ଶିକ୍ଷକତା ଛାଡ଼ି ଏଠାକୁ ଆସିଥିଲେ ହରିହର ଦାସ । ସେ ମଧ୍ୟ ଚାଳିଶ ଟଙ୍କା ବେତନରେ ଶିକ୍ଷକତା କରୁଥିଲେ । ପଣ୍ଡିତ ଗୋଦାବରୀଶ ମିଶ୍ର ଏମ୍.ଏ ସାଙ୍ଗକୁ ବି.ଟି. ପାଶ କରି ୧୯୧୩ ଅପ୍ରେଲରେ ସତ୍ୟବାଦୀ ବିଦ୍ୟାଳୟରେ ଯୋଗ ଦେଇଥିଲେ । ୧୯୧୪ ମସିହାରେ କୃପାସିନ୍ଧୁ ମିଶ୍ର ଏଠାରେ ଶିକ୍ଷକ ଭାବେ ଯୋଗ ଦେଇଥିଲେ ।

ସତ୍ୟବାଦୀର ପଞ୍ଚ ସାଧକ ଗୋପବନ୍ଧୁ, ନୀଳକଣ୍ଠ, ଗୋଦାବରୀଶ, କୃପାସିନ୍ଧୁ ଓ ହରିହର ମଣିଷ ଗଢ଼ିବାର ମହାବ୍ରତରେ ବ୍ରତୀ ହୋଇଥିଲେ । ପଣ୍ଡିତ ହରିହର ଶିକ୍ଷକତା କରିବା ସହ ଛାତ୍ରାବାସର ଅଧୀକ୍ଷକ ମଧ୍ୟ ଥିଲେ । ପଣ୍ଡିତ ଗୋପବନ୍ଧୁଙ୍କର ବ୍ୟକ୍ତିତ୍ୱର ପ୍ରଭାବରେ ସେ ଜୀବନରେ ମହତ୍ତର ଲକ୍ଷ୍ୟ ହାସଲ ପାଇଁ ପ୍ରତିଶ୍ରୁତିବଦ୍ଧ ହୋଇଥିଲେ । ସେ ଥିଲେ ସର୍ବଦା ଶ୍ରେୟମାର୍ଗର ପ୍ରକୃତ ସାଧକ । ଛାତ୍ରମାନଙ୍କ ସହିତ ପ୍ରତ୍ୟେକ ବ୍ୟକ୍ତିକୁ ମଧ୍ୟ ଭଲ ମଣିଷ ହେବା ପାଇଁ ଉପଦେଶ ଓ ଆଶୀର୍ବାଦ ଦେଉଥିଲେ । ଛାତ୍ର ଓ ଶିକ୍ଷକଙ୍କ ନୈତିକ ଉନ୍ନତି ପ୍ରତି ନୀଳକଣ୍ଠଙ୍କ ଦୃଷ୍ଟି ଥିଲା ତୀକ୍ଷ୍ଣ ଓ ଗୁରୁତ୍ୱପୂର୍ଣ୍ଣ । ପଣ୍ଡିତ ଗୋପବନ୍ଧୁ ନବ ଗଠିତ ବିହାର-ଓଡ଼ିଶା ପ୍ରଦେଶର ଲାଟ୍ ସଭାକୁ ସଭ୍ୟ ରୂପେ ମନୋନୀତ ହୋଇ ଗଲା ପରେ ସତ୍ୟବାଦୀ ସ୍କୁଲ୍‌ର ପ୍ରତ୍ୟକ୍ଷ ଦାୟିତ୍ୱ ରହିଥିଲା ପଣ୍ଡିତ ନୀଳକଣ୍ଠଙ୍କ ଉପରେ ।

ସ୍କୁଲର କୌଣସି କାର୍ଯ୍ୟରେ କେହି ଅବହେଳା ପ୍ରଦର୍ଶନ କରୁଥିବାର ଦେଖିଲେ ସେ ତୁରନ୍ତ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରୁଥିଲେ । ଜଣେ ଆଦର୍ଶ ଶିକ୍ଷକ ଭାବେ ନୀଳକଣ୍ଠ ଛାତ୍ରମାନଙ୍କୁ ଉଚିତ କର୍ମପଥରେ ଯିବାକୁ ଉପଦେଶ ଦେଉଥିଲେ ।

୧୯୨୧ ମସିହା ଜାନୁଆରୀ ୨୨ ତାରିଖରେ ସତ୍ୟବାଦୀ ବନବିଦ୍ୟାଳୟକୁ ଏକ ଜାତୀୟ ବିଦ୍ୟାଳୟରେ ପରିଣତ କରିଥିଲେ ପଣ୍ଡିତ ଗୋପବନ୍ଧୁ । ସତ୍ୟବାଦୀର ସାଧକମାନେ କୁସଂସ୍କାରଗ୍ରସ୍ତ ସମାଜର ବଡ଼ ବିରୋଧୀ ଥିଲେ । ମାତ୍ର ସମାଜ ଚଳଣିରେ ଯାହା ନିତ୍ୟ ଓ ସତ୍ୟ, ବୃହତ୍ତର, ସମାଜ ଜୀବନକୁ ନିୟନ୍ତ୍ରଣ କରିବା ପାଇଁ ଯେଉଁ

ସକଳ ସାମାଜିକ ଆଚାର ଓ ଧର୍ମୀୟ ନିଷ୍ଠା ପ୍ରୟୋଜନ, ତାହାର ସେମାନେ ପୃଷ୍ଠପୋଷକତା କରୁଥିଲେ । ସତ୍ୟବାଦୀରେ ଶିକ୍ଷକ ଓ ଛାତ୍ର କେବଳ ଶିକ୍ଷା ଗ୍ରହଣ ସମୟକୁ ବାଦ୍ ଦେଲେ ଅନ୍ୟସବୁ ସମୟରେ ଏକତ୍ର ବସୁଥିଲେ । ବଗିଚାରେ କାମ କରିବା ସମୟରେ କାନ୍ଧକୁ କାନ୍ଧ ମିଶାଇ ପରସ୍ପର ଏକଜୁଟ୍ ହୋଇ ସହକର୍ମୀ ଭଳି କାମ କରୁଥିଲେ । ଏହା ବ୍ୟତୀତ ଭୋଜନ ସମୟରେ ମଧ୍ୟ ଶିକ୍ଷକ ଓ ଛାତ୍ର ଏକତ୍ର ଗୋଟାଏ ସ୍ଥାନରେ ବସି ଭୋଜନ କରୁଥିଲେ । କୌଣସି ସଂକୀର୍ଣ୍ଣ ମନ ନେଇ କାର୍ଯ୍ୟ କରିବାର କାପୁରୁଷ ପଣ ସତ୍ୟବାଦୀ ସାଧକଙ୍କଠାରେ ପରିଲକ୍ଷିତ ହୋଇନଥିଲା ବରଂ ସମଭାବାପନ୍ନ ମନୋଭାବରେ ସାଧନା ପଥରେ ଅଗ୍ରସର ହେଉଥିଲେ ।

**ସେବା**

ସତ୍ୟବାଦୀର ପଞ୍ଚ ସାଧକ କେବଳ ଶିକ୍ଷକତା କ୍ଷେତ୍ରରେ ନୁହେଁ, ନିଷ୍ଠାପର ମନୋଭାବ ନେଇ ପ୍ରତ୍ୟେକଙ୍କର ସେବା ଯତ୍ନ କରିବାରେ ତିଳେମାତ୍ର କୁଣ୍ଠାବୋଧ ହେଉନଥିଲେ । ସେବା ଥିଲା ସେମାନଙ୍କ ଜୀବନର ପରମ ବ୍ରତ । ଜାତି, ବର୍ଣ୍ଣ, ଧର୍ମ ନିର୍ବିଶେଷରେ ପ୍ରତ୍ୟେକଙ୍କର ସେବାରେ ନିଜକୁ ଉତ୍ସର୍ଗ କରି ଦେଇଥିଲେ । ସୁସ୍ଥ ମଣିଷ ସମାଜ ଗଠନ ଦିଗରେ ଏହା ଏକ ସାଧନା ଥିଲା ପଞ୍ଚ ସଖାଙ୍କ ପାଇଁ । ସତ୍ୟବାଦୀର ସାଧକ ଋଷିପ୍ରତିମ ଆଚାର୍ଯ୍ୟ ହରିହରଙ୍କର ସେବା ଥିଲା ଅତୁଳନୀୟ । ଛାତ୍ରମାନଙ୍କୁ ନିଜର ସନ୍ତାନ ଭଳି ସେ ସ୍ନେହ କରୁଥିଲେ । ଅଜୀର୍ଣ୍ଣ, ଅମାଶୟ, ଜ୍ୱର କିମ୍ବା କାଛୁ କୁଣ୍ଡିଆ ହେଲେ ସେ ରାତି ଅନିଦ୍ରା ରହି ସ୍ୱ ହସ୍ତରେ ସେବା କରୁଥିଲେ । ନିୟମିତ ଔଷଧ ସେବନ କରାଇବା, ନିମ୍ବଛାଲି ସଂଗ୍ରହ କରି ସେଥିରେ କାଛୁକୁଣ୍ଡିଆ ପରିଷ୍କାର କରିବା, ମଲମ ଲଗାଇବା, ଜଳପଟି କପାଳରେ ପକାଇବା ଆଦି ସେବା କାର୍ଯ୍ୟ ସେ ଅସୁସ୍ଥ ଛାତ୍ରଙ୍କ ପାଇଁ କରୁଥିଲେ । ସତ୍ୟବାଦୀର ଆଦର୍ଶ ଶିକ୍ଷକ ତଥା ଜନନାୟକ ନୀଳକଣ୍ଠ ମଧ୍ୟ ସେବାରେ ମହାନତା ଦର୍ଶାଇଥିଲେ ସମଗ୍ର ଉତ୍କଳ ଖଣ୍ଡରେ । ପାଖ ଗାଁମାନଙ୍କରେ ହଇଜା, ବସନ୍ତ ବ୍ୟାପିଲେ ନୀଳକଣ୍ଠ ସେମାନଙ୍କୁ ଘେନି ରୋଗୀ ସେବାରେ ନିୟୋଜିତ ରହୁଥିଲେ । ୧୦୦ରୁ ଊର୍ଦ୍ଧ୍ୱ ହଇଜା ରୋଗୀଙ୍କର ସେବା କରିବା ସହିତ ପଥି ମଧ୍ୟ ଯୋଗାଇ ଦେଉଥିଲେ । ସେବାକୁ ପରମ ବ୍ରତ ରୂପେ ଗ୍ରହଣ କରିଥିବା ଆଉ ଜଣେ ଶ୍ରେଷ୍ଠକର୍ମୀ ହେଲେ ଗୋପବନ୍ଧୁ । ବ୍ରାହ୍ମଣୀ ବନ୍ୟା, ବୈତରଣୀ ବନ୍ୟା ସମୟରେ ଦୁର୍ଗତ ମଣିଷମାନଙ୍କ ପାଖକୁ ଯାଇ ଆହାର ଓ ସାହାଯ୍ୟ ଯୋଗାଇ ଦେବାରେ ନିରଳସ କର୍ମ କରୁଥିଲେ ସେ । ଦୁଃଖୀ, ଅସହାୟଙ୍କର ସେବା କରିବା ପାଇଁ ସେ ବ୍ୟକ୍ତିଗତ ସୁଖ, ସ୍ୱାର୍ଥ ସବୁକୁ ତ୍ୟାଗ କରିଦେଇଥିଲେ ।

କୃପାସିନ୍ଧୁ ଓ ଗୋଦାବରୀଶ ମିଶ୍ର ମଧ୍ୟ ଗୋପବନ୍ଧୁଙ୍କ ଆଦର୍ଶରେ ଅନୁପ୍ରାଣିତ ହୋଇ ସହଯୋଗ କରିବାକୁ ଅଗ୍ରସର ହେଉଥିଲେ । ସେବା ପାଇଁ କୌଣସି ଭେଦାଭେଦ, କୌଣସି ଅସୂୟା ଭାବ ସେମାନଙ୍କ ମନରେ ତିଳେମାତ୍ର ପରିଲକ୍ଷିତ ହୋଇନଥିଲା । ସେଥିପାଇଁ ସେମାନଙ୍କୁ ମହାନ୍ ସେବକ ରୂପେ ବିବେଚନା କରାଯାଉଥିଲା ।

**ସଂଗ୍ରାମ**

ସତ୍ୟ, ଅହିଂସା, ତ୍ୟାଗର ପୂଜାରୀ ସତ୍ୟବାଦୀ ସାଧକ ଗୋଷ୍ଠୀ । ଜୀବନ ଯାଉ ପଛେ, କିନ୍ତୁ ସାଧନାର ଏଇ ସୁଦୀର୍ଘ ପଥରୁ ଓହରି ଆସିବାର କୌଣସି ଅଭିଳାଷ ସେମାନଙ୍କ ମନ ଓ ପ୍ରାଣରେ ସ୍ଥାନ ପାଇନଥିଲା । ବରଂ ଆତ୍ମ ଉତ୍ପୀଡ଼ନ ମଧ୍ୟରେ ଦେଶ ଓ ଦଶ ପାଇଁ ଅନେକ କିଛି କରିବାର ବାଂଛିତ ପରିକଳ୍ପନା ଆଖିରୁ ନିଦ ହଜାଇ ଦେଇଥିଲା । ଉତ୍କଳର ଆଇନ୍ ଅମାନ୍ୟ ଆନ୍ଦୋଳନରେ ଆଚାର୍ଯ୍ୟ ହରିହରଙ୍କୁ ଛଅ ମାସ ସଶ୍ରମ କାରାଦଣ୍ଡ ଭୋଗିବାକୁ ପଡ଼ିଥିଲା । ପଣ୍ଡିତ ନୀଳକଣ୍ଠ କଂଗ୍ରେସର ଲବଣ ସତ୍ୟାଗ୍ରହରେ ଯୋଗ ଦେଇ ଓ ପୁରୀ ଜିଲ୍ଲାରେ ଏଇ ଆନ୍ଦୋଳନ ଚଳାଇ ଏକଦା କାରାବରଣ କରିଥିଲେ । ହଜାରୀବାଗ୍ ଜେଲ୍‌ରେ ଛଅ ମାସ ଜେଲ୍ ଦଣ୍ଡ ଭୋଗିଥିଲେ । ତଥାପି ମଧ୍ୟ ସ୍ୱଦେଶ ପ୍ରେମ ତାଙ୍କର ଊଣା ହୋଇନଥିଲା । ନୀଳକଣ୍ଠଙ୍କ ବୈପ୍ଳବିକ ମନୋବୃତ୍ତି ଦେଶାତ୍ମବୋଧରେ ଉଦ୍‌ବୁଦ୍ଧ ହୋଇ ସୁନାଗରିକ ଗଢିବାର ଲକ୍ଷ୍ୟରେ ଅଟଳ ରହିଥିଲା । ସତ୍ୟ, ଅହିଂସା ଓ ଧର୍ମର ଅବତାର ପଣ୍ଡିତ ଗୋପବନ୍ଧୁ ସ୍ୱାଧୀନତା ସଂଗ୍ରାମରେ

ସଂଗ୍ରାମ କରି କାରାବରଣ କରିଥିଲେ । ୧୯୨୩ ମସିହା ଜାନୁଆରୀ ମାସରୁ ୧୯୨୪ ମସିହା ଜୁନ୍ ମାସ ପର୍ଯ୍ୟନ୍ତ ଅସହଯୋଗ ଆନ୍ଦୋଳନ ଯୋଗୁଁ କାରାବରଣ କରିଥିଲେ । ସେ ଥିଲେ ଆଜୀବନ ବିପ୍ଳବୀ । ସତ୍ୟବାଦୀର ସାଧକଙ୍କ ଭିତରେ ଦେଶ ଓ ଜାତି ପାଇଁ ସଂଗ୍ରାମ କରିଥିବା ଆଉ ଦୁଇ ଜଣ ସ୍ୱାଧୀନତା ସଂଗ୍ରାମୀ ଥିଲେ ପଣ୍ଡିତ ଗୋଦାବରୀଶ ଓ କୃପାସିନ୍ଧୁ ମିଶ୍ର । ସ୍ୱଦେଶ ପ୍ରେମ ଓ ଜାତୀୟତାବୋଧରେ ଉଦ୍‌ବୁଦ୍ଧ ସଂଗ୍ରାମୀ ପଞ୍ଚ ସାଧକ ପ୍ରାଣ ସତ୍ୟ ଓ ଅହିଂସାର ପଥରେ ଅହରହ ବିପ୍ଳବ କରି ଦେଶ ସେବକ ପାଲଟିଥିଲେ ।

**ସାହିତ୍ୟ**

ସଂସ୍କାରମୂଳକ ବୈପ୍ଳବିକ ଚିନ୍ତା ସତ୍ୟବାଦୀ ସାଧକଙ୍କ ସାହିତ୍ୟର ପ୍ରାଣ ପ୍ରକାଶକ ଧର୍ମ । ଏହି ସାହିତ୍ୟ ହେଉଛି ମାନବିକବୋଧର ସାହିତ୍ୟ । ସେବା, ତ୍ୟାଗ, ପ୍ରେମ, ନୀତି, ଆଦର୍ଶ, କର୍ମ ଓ ଧର୍ମ ଉପରେ ସତ୍ୟବାଦୀ ଯୁଗ ଦେଇଥିବା ଗୁରୁତ୍ୱ ସାହିତ୍ୟରେ ପ୍ରକାଶିତ । ଓଡ଼ିଶାରେ ସମାଜ ସଂସ୍କାର ଆନ୍ଦୋଳନର ବହ୍ନି ପ୍ରଜ୍ୱଳିତ କରି ଓ ତାହାକୁ ସାହିତ୍ୟର ଆଙ୍ଗିକ ଓ ଆତ୍ମିକ ରୂପ ସମ୍ପଦରେ ପରିପୂର୍ଣ୍ଣ କରି ସତ୍ୟବାଦୀର ସାହିତ୍ୟ ସୃଷ୍ଟି ଗତିମୁଖର ହୋଇଥିଲା । ପଞ୍ଚସାଧକ ଯେହେତୁ କର୍ମଯୋଗୀ ଓ ଆଦର୍ଶ ଶିକ୍ଷକ ଥିଲେ ସେଇ ହେତୁ ସେମାନଙ୍କ ସାହିତ୍ୟ ଜାତୀୟ ଚେତନାରେ ଉଦ୍‌ବୁଦ୍ଧ ତଥା ସଂସ୍କାର ଧର୍ମୀ ହୋଇଥିଲା । ସ୍ୱାଧୀନତା ସଂଗ୍ରାମରେ ସଂଗ୍ରାମୀ ଜୀବନ ବିତାଇବା ସମୟରେ ମଧ୍ୟ କାରାଗାରରେ ରହି ଅନେକ ସାହିତ୍ୟ ରଚନା କରିଥିଲେ । ବୈପ୍ଳବିକ ଚିନ୍ତାଧାରା ଭିତରେ ବି ଏକ ମାନବବାଦ ଓ ଉଦାରଚେତା ରୂପକଳ୍ପ ସ୍ୱତଃସ୍ଫୂର୍ତ୍ତ ଭାବେ ପ୍ରତିଭାତ ହେଉଥିଲା, ଯାହାକି ସାହିତ୍ୟିକ ପ୍ରାଣର ପରିଚୟ ଦେଉଥିଲା ।

ପଣ୍ଡିତ ଗୋପବନ୍ଧୁଙ୍କର କାବ୍ୟ ଓ କବିତା ଭିତରେ 'ଅବକାଶ ଚିନ୍ତା', 'କାରା କବିତା', 'ବନ୍ଦୀର ଆତ୍ମକଥା', 'ଧର୍ମପଦ', 'ନଚିକେତା ଉପାଖ୍ୟାନ' ଓ 'ଗୋ ମାହାତ୍ମ୍ୟ' ଆଦି ପ୍ରମୁଖ ସୃଷ୍ଟି । ସେଇଭଳି ନୀଳକଣ୍ଠଙ୍କର 'ପ୍ରଣୟିନୀ, 'କୋଣାର୍କେ', 'ଦାସ ନାଏକ' 'ଖାରବେଳ' ଓ 'ଭକ୍ତିଗାଥା', ଗୋଦାବରୀଶ ମିଶ୍ରଙ୍କର 'ଆଲେଖିକା', 'କଳିକା', 'ଚୟନିକା', 'କିଶଳୟ', 'କୁସୁମ', 'ଗୀତାୟନ ଓ ଗୀତିଗୁଚ୍ଛ' ଆଦି ଶ୍ରେଷ୍ଠ କୃତି । ପଣ୍ଡିତ କୃପାସିନ୍ଧୁ ମିଶ୍ର ଥିଲେ ମୁଖ୍ୟତଃ ଜଣେ ପ୍ରାବନ୍ଧିକ । ତାଙ୍କର 'ଅଦୃଷ୍ଟ ବାଦ', 'ହିନ୍ଦୁର ସମାଜ ବିଧାନ', 'ରାଜଭକ୍ତି', 'ଲୀଳା' ପ୍ରଭୃତି ବିଶେଷ ସୃଷ୍ଟି । ଗୋଦାବରୀଶ ମିଶ୍ରଙ୍କର ଶ୍ରେଷ୍ଠ ନାଟକ- 'ପୁରୁଷୋତ୍ତମ ଦେବ' ଓ 'ମୁକୁନ୍ଦଦେବ', ଗଳ୍ପ- 'ପଞ୍ଚାବୀର', 'ଗଳ୍ପମାଳା', ଆତ୍ମଜୀବନୀ- 'ଅର୍ଦ୍ଧ ଶତାବ୍ଦୀର ଓଡ଼ିଶା ଓ ତହିଁରେ ମୋ ସ୍ଥାନ', ଉପନ୍ୟାସ- 'ଅଠର ଶହ ସତର', 'ଅଭାଗିନୀ, 'ନିର୍ବାସିତା' 'ଘଟାନ୍ତର', 'ପୁଆଣି ଘର', 'ବିସର୍ଜନ', 'କଙ୍କାଳର ଆର୍ତ୍ତନାଦ' ଇତ୍ୟାଦି । ଗଦ୍ୟ ସୃଷ୍ଟି ଭିତରେ ନୀଳକଣ୍ଠଙ୍କର 'ଆର୍ଯ୍ୟଜୀବନ', 'ରାଧାନାଥ ଓ ଉତ୍କଳ ସାହିତ୍ୟ' (ସମାଲୋଚନା), 'ଓଡ଼ିଆ ସାହିତ୍ୟର କ୍ରମ ପରିଣାମ', 'ଓଡ଼ିଆ ଭାଷା ଓ ସାହିତ୍ୟ', 'ସଂସ୍କୃତି ଓ ସଂସ୍କୃତି', 'ଆଧୁନିକ ଜୀବନ' ଏବଂ 'ଶ୍ରୀମଦ୍ ଭଗବତ୍ ଗୀତାର ଭୂମିକା' ଅନ୍ୟତମ । ସାହିତ୍ୟ ସାଧନା ଦିଗରେ ସତ୍ୟବାଦୀ ସାଧକ ଗୋଷ୍ଠୀଙ୍କର ଭାବନାର ସୂଚୀପତ୍ର ଥିଲା 'ସତ୍ୟବାଦୀ ପତ୍ରିକା' । ପଣ୍ଡିତ ଗୋପବନ୍ଧୁଙ୍କର ସମ୍ପାଦନାରେ ଏହି ପତ୍ରିକା ପ୍ରକାଶିତ ହେଉଥିଲା । ଯେଉଁଥିରେ ରାଜନୀତି, ଦର୍ଶନ, ସଂସ୍କୃତି, ସାହିତ୍ୟ ଏବଂ ଇତିହାସ ଆଦି ସମ୍ବନ୍ଧୀୟ ସମସ୍ତ ବିଷୟ ପ୍ରକାଶିତ ହେବା ସହ ସତ୍ୟର ସନ୍ଧାନ ଓ ସମସ୍ୟାର ସମାଧାନ ନିମନ୍ତେ ମହାନ୍ ଭୂମିକା ନିର୍ବାହ କରିଥିଲା ।

ସତ୍ୟବାଦୀ ଯୁଗ ଥିଲା ସତ୍ୟ ପାଇଁ ବିପ୍ଳବର ଯୁଗ । ସତ୍ୟବାଦୀ ସାହିତ୍ୟ ଥିଲା ସମାଜ ସଂସ୍କାର, ଦେଶାତ୍ମବୋଧ, ପ୍ରେମ, ତ୍ୟାଗ ଓ ବାସ୍ତବ ଚେତନାର ସାହିତ୍ୟ । ସତ୍ୟବାଦୀର ସାଧକ ଥିଲେ ଧର୍ମ, ନ୍ୟାୟ ଓ ଅହିଂସା ପଥର ସାଧକ । ତାଙ୍କର ସାଧନା ଥିଲା ଅନନ୍ୟ- ସାମୂହିକ କଲ୍ୟାଣର ସାଧନା ଏବଂ ଦେଶ ଓ ଜାତି ପାଇଁ ନିଷ୍ଠାପର କଠୋର ସାଧନା ।

ପ୍ଲଟ୍ ନଂ-୧୩୬/୮୫୦
ବ୍ରହ୍ମେଶ୍ୱର ପାଟଣା, ଭୁବନେଶ୍ୱର-୧୮

# ଓଡ଼ିଶାର ଲୋକ ସଂସ୍କୃତି ଓ ପରମ୍ପରା

ଡକ୍ଟର ହିମାଦ୍ରୀ ତନୟା ମିଶ୍ର

ସଂସ୍କୃତି ପରିସର ବଡ଼ ବ୍ୟାପକ । ବ୍ୟାଖ୍ୟାକାରମାନେ ସଂସ୍କୃତିର ଅନେକ ଅର୍ଥ ନିର୍ଣ୍ଣୟ କରିଛନ୍ତି । ସେମାନଙ୍କ ମଧ୍ୟରୁ କେତେକ ଏହାକୁ ଗୋଟିଏ ନିର୍ଦ୍ଦିଷ୍ଟ ମାନବ ଗୋଷ୍ଠୀର ପରମ୍ପରା ବୋଲି କହୁଥିବାବେଳେ ଅନ୍ୟ କେତେକ ଏହାକୁ ମାନବ ଜାତିର ଜୀବନଚର୍ଯ୍ୟା ବୋଲି ଅଭିହିତ କରିଥାନ୍ତି । ପୁନଶ୍ଚ କେତେକ ଏହାକୁ ସଭ୍ୟତାର ରୂପାନ୍ତର ବୋଲି ପ୍ରଖ୍ୟାପନ କରୁଥିଲାବେଳେ କେତେକ ଏହାକୁ ହେତୁବାଦ ବୋଲି ମତବ୍ୟକ୍ତ କରିଥାନ୍ତି । ସଂସ୍କୃତିର ବ୍ୟୁତ୍ପତ୍ତିଗତ ଅର୍ଥ ହେଉଛି ସମ୍ + କୃ + ତି । ଯେଉଁ କୃତି ମାନବ ସମାଜର ସମ୍ୟକ୍ ଅଭିବୃଦ୍ଧି ସାଧନ ମାଧ୍ୟମରେ ମାନବକୁ ଆଧ୍ୟାତ୍ମିକ, ସାମାଜିକ, ରାଜନୈତିକ ପ୍ରଭୃତି କ୍ଷେତ୍ରରେ ପ୍ରତିଷ୍ଠିତ କରାଇଥାଏ ତାହା ହିଁ ସଂସ୍କୃତି । ଏହି ପରିପ୍ରେକ୍ଷୀରେ ପାଶ୍ଚାତ୍ୟ ଚିନ୍ତ ନାୟକ କହିଛନ୍ତି – “Not only art is the back-bone of the culture, but also it is the real social mirror of the human civilization.” ଏକ ପକ୍ଷରେ ସଂସ୍କୃତି ମାନବ ଜୀବନର ଏକ ନିରବଚ୍ଛିନ୍ନ ସମୁନ୍ନତିର ପ୍ରବାହ ହୋଇଥିବାସ୍ଥଳେ ମାନବ ଜୀବନ ସଂସ୍କୃତିର ପରିପ୍ରକାଶ ମାତ୍ର । ସମଗ୍ର ମାନବ ଜୀବନର ନିବିଡ଼ତମ ସ୍ୱପ୍ନ, ସଂଭାବନା, ଆବେଗ ଓ ଆକୁଳତାର ସତ୍ୟ ପ୍ରକାଶ ହେଉଛି ସଂସ୍କୃତି । କଳା, ଭାସ୍କର୍ଯ୍ୟ, ସ୍ଥାପତ୍ୟ, ସଙ୍ଗୀତ ଓ ସାହିତ୍ୟର ଆଧାରରେ ଏହା ବିବିଧ ଚେତନାକୁ କଳାତ୍ମକ ରୂପେ ଅନୁବନ୍ଧିତ ଥାଏ । ସଂସ୍କୃତି ହେଉଛି ମାନବଜାତିର ଜୀବନୀଶକ୍ତି । ସଂସ୍କୃତିକୁ ଆଧାର କରି ଜାତି ଉନ୍ନତ ତଥା ସମୃଦ୍ଧ ହୋଇଥାଏ । ସଂସ୍କୃତି ବ୍ୟତିରେକ ମାନବଜାତିର ଅସ୍ତିତ୍ୱ ଅକଳ୍ପନୀୟ । ମନୁଷ୍ୟ ଜନ୍ମଠାରୁ ମୃତ୍ୟୁ ପର୍ଯ୍ୟନ୍ତ ଷୋଡ଼ଶ ସଂସ୍କାର ମାଧ୍ୟମରେ ତା'ର ଖାଦ୍ୟପେୟ, ବେଶ-ଭୂଷା, ବିବାହ ଓ ମୃତାହ ଆଦି ଚଳଣିର କ୍ରିୟା ଯାହାକି ଆଚାରସଂଗତ ହୁଏ ତାହା ହିଁ ମାନବ ସମାଜରେ ଉନ୍ନତ ରୁଚିବୋଧରେ ଯେତେବେଳେ ପରିମାର୍ଜିତ ହୁଏ, ସେତେବେଳେ ତାହା ସଂସ୍କୃତି କୁହାଯାଏ । ଗୋଟିଏ ନିର୍ଦ୍ଦିଷ୍ଟ ମାନବଗୋଷ୍ଠୀ ଉପରେ ଆଧ୍ୟାତ୍ମବାଦର କ୍ରିୟାଶୀଳ ପ୍ରଭାବକୁ ସଂସ୍କୃତି କୁହାଯାଏ । ବହୁ ଉପାସନାବାଦର ସୃଷ୍ଟି ହେଲା ପରି ପୃଥିବୀରେ ମାନବ ସଭ୍ୟତାର ଉନ୍ମେଷ କାଳରୁ ଗୋଟିଏ ସଂସ୍କୃତିରୁ ଅନେକ ସଂସ୍କୃତିର ଉଦ୍ଭବ ଓ ବିକାଶ ହୋଇଛି ।

### ଲୋକ ସଂସ୍କୃତିର ସଂଜ୍ଞା ଓ ସ୍ୱରୂପ

ଲୋକ ଶବ୍ଦର ଅର୍ଥ 'ଗଣ' ବା 'ଜନତା'କୁ ବୁଝାଏ । ପଲ୍ଲୀରୁ ନଗରୀ ପର୍ଯ୍ୟନ୍ତ ବସବାସ କରିଆସୁଥିବା ଜନତାମାନଙ୍କର ସଂସ୍କୃତିକୁ ଲୋକ ସଂସ୍କୃତି କୁହାଯାଏ । 'ଲୋକ' ବା 'ଗଣ'ର ଇଂରାଜୀ ପ୍ରତିଶବ୍ଦ ହେଉଛି folk । ଏହି folk ଶବ୍ଦଟି ଏଙ୍ଗଲୋ – ସାକ୍ସନ୍ ଶବ୍ଦ foreରୁ ସୃଷ୍ଟି । ଗବେଷକମାନଙ୍କ ମତ ଅନୁସାରେ ଜର୍ମାନ ଭାଷାର ମୂଳ ଶବ୍ଦ volk-skundeର ପରିବର୍ଦ୍ଧିତ ରୂପ folk । ଗବେଷକ ଚାର୍ଲେସ୍ ଉରିକ୍ଙ୍କ ମତରେ 'ପ୍ରାଗ୍ ଐତିହାସିକ ଯୁଗରେ ଗୋଷ୍ଠୀଗତ ଜୀବନ ନିର୍ବାହ କରୁଥିବା ଆଦିମ ଅଧିବାସୀଙ୍କ

ସଂଘବଦ୍ଧ ସାମାଜିକ ସଂଗଠନ, ଯେଉଁମାନେ କି ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ନିମ୍ନବର୍ଗର ସାଧାରଣ ଜନଗୋଷ୍ଠୀ ଭାବେ ପରିଚିତ । ସେହିମାନଙ୍କୁ ହିଁ folk ଭାବରେ ଗ୍ରହଣ କରାଯାଇଛି । 'ଲୋକ ସଂସ୍କୃତିର ବିଶାରଦ ଆର୍.ଆର୍. ମାରେଟ୍ 'folk' ଶବ୍ଦକୁ 'ଗଣ ସଂସ୍କୃତି' ଗ୍ରହଣ କରିଛନ୍ତି । ଗୋଷ୍ଠୀ ଜୀବନର ପରିଭାଷା ଗଣ ସଂସ୍କୃତି । ପ୍ରାଚୀନ ଜନଜାତିଙ୍କ ବୃତ୍ତି, ଧର୍ମ ବା ଜାତ ଦୃଷ୍ଟିରୁ ପରିଲକ୍ଷିତ ହେଉଥିବା ସମୂହ ପରମ୍ପରାକୁ ଲୋକ ସଂସ୍କୃତି କୁହାଯାଏ । ଅର୍ଥାତ୍ ଲୋକକୃତ ହିଁ ଲୋକ ସଂସ୍କୃତି । ଆରଚେର୍ ଟୟଲଙ୍କ ମତରେ, 'ଲୋକ ସଂସ୍କୃତି ହେଉଛି ମୌଖିକ ରୀତିରେ ବା ପ୍ରଥାରେ ଅଥବା ଚଳଣି ମାଧ୍ୟମରେ ଗଢ଼ିଆସୁଥିବା ଉପାଦାନ ।' ଏଗୁଡ଼ିକ ଲୋକଗୀତ, ଲୋକକାହାଣୀ, ନାଁ ଦିଆ, ପ୍ରବାଦ, ପ୍ରବଚନ, ଓଷାବ୍ରତ, ଢଗଢ଼ମାଳି ବା ସୈଖିକ ଧାରାରେ ପ୍ରଚଳିତ ଅନ୍ୟ ଉପାଦାନ ହୋଇପାରେ । ଏହା ପାରମ୍ପରିକ ବିଶ୍ୱାସ ମଧ୍ୟ ହୋଇପାରେ । ଜୋନ୍ସଙ୍କ ମତରେ, 'ଉଭୟ ଆଦିମ ଓ ସଭ୍ୟ ଜାତିର ପାରମ୍ପରିକ ସୃଷ୍ଟି ହିଁ ଲୋକ ସଂସ୍କୃତି । ଏଗୁଡ଼ିକ ଛନ୍ଦୋୟିତ ଶବ୍ଦ ଅଥବା ଗଦ୍ୟମୟ ଭାଷାରେ ପ୍ରକାଶ ପାଇଥାଏ ।' ମାକ୍ ଏଡୱାର୍ଡ଼ ଲିଟ୍‌ଙ୍କ ମତରେ 'ବିଭିନ୍ନ ପ୍ରଥା, ବିଶ୍ୱାସ, ଚଳଣି, କାହାଣୀ, ଯାଦୁ, ପବାଦ–ପ୍ରବଚନ ଓ ଗୀତ ଆଦିକୁ ଚିହ୍ନିତ କରିବା ପାଇଁ ଏହା ଏକ ପର୍ଯ୍ୟାୟବାଚୀ ଶବ୍ଦ । ସଂକ୍ଷେପରେ କହିଲେ କୌଣସି ଅକୃତ୍ରିମ, ସଂହତି, ଜନଗୋଷ୍ଠୀର ସଂଗୃହୀତ ଜ୍ଞାନର ପ୍ରକାଶଭଙ୍ଗୀ ବା ଜ୍ଞାନ ସମ୍ପଦ ।'

୧୯୮୭ ମସିହାର ୟୁନେସ୍କୋ କମିଟି ମତରେ ଲୋକ ସଂସ୍କୃତି ହେଉଛି ଗୋଷ୍ଠୀ କୈନ୍ଦ୍ରିକ, ପରମ୍ପରାଶ୍ରୟୀ ବ୍ୟକ୍ତି ସମୂହର ସୃଷ୍ଟି । ଯେଉଁଥିରେ କି ଉକ୍ତ ଗୋଷ୍ଠୀର ସାଂସ୍କୃତିକ ସ୍ୱାତନ୍ତ୍ର୍ୟ ତା'ର ଆଶା–ଆକାଂକ୍ଷା ରୂପରେ ବହୁଳ ଭାବରେ ପ୍ରତିଫଳିତ ହୋଇଥାଏ । ସେହି ସଂସ୍କୃତିର ମାନ ଓ ମୂଲ୍ୟବୋଧ ମୌଖିକ ରୀତିରେ ଅନୁକରଣ ଦ୍ୱାରା ପ୍ରସାରିତ ହୋଇଥାଏ । ଏହା ଭାଷା, ସାହିତ୍ୟ, ସଙ୍ଗୀତ, ନୃତ୍ୟ, ଖେଳ, ପୁରାଣ କଥା, କ୍ରିୟାକର୍ମ କଥା, ପ୍ରଥା, ହସ୍ତଶିଳ୍ପ, ସ୍ଥାପତ୍ୟ ଓ ଅନ୍ୟାନ୍ୟ କଳା ରୂପରେ ପ୍ରକାଶ ପାଇଥାଏ । ଲୋକ ସଂସ୍କୃତିର ବ୍ୟାପକ ପରିସର ପ୍ରତି ଦୃଷ୍ଟି ଦେଲେ ଏହାର ସ୍ୱରୂପ ଅଧିକ ସ୍ପଷ୍ଟ ହେବ । ଲଣ୍ଡନର ଫୋକ୍‌ଲୋର ସୋସାଇଟି ଲୋକ ଉପାଦାନର ଏକ ଦୀର୍ଘ ତାଲିକା ଦେଇଛନ୍ତି । ମୁଖ୍ୟତଃ ଅନଗ୍ରସର ଶ୍ରେଣୀର ପାରମ୍ପରିକ ଅନୁଷ୍ଠାନ, ସାମାଜିକ ପ୍ରଥା, ବିଶ୍ୱାସ ସାଧାରଣତଃ ସଜୀବ ଓ ନିର୍ଜୀବ ପ୍ରକୃତି ବିଷୟକ, ଲୋକଚଳଣି ଓ ମଣିଷ ସୃଷ୍ଟ ବସ୍ତୁ ବିଷୟକ ଅପ୍ରାକୃତ ଜଗତ ଓ ତା' ପ୍ରତି ମଣିଷର ପ୍ରତିକ୍ରିୟା ସମ୍ପର୍କିତ ଯାଦୁ ଓ ଡାହାଣୀ ବିଦ୍ୟା ବିଷୟକ, ଭୂତ–ପ୍ରେତ ଓ ପରୀ ବିଷୟକ, କୁହୁକ, ମନ୍ତ୍ର, କବଚ, ଭାଗ୍ୟ, ଶକୁନ ବିଷୟକ, ରୋଗ ଓ ମୃତ୍ୟୁ ବିଷୟକ ହୋଇପାରେ । ପୁଣି ବିବାହ, ଉତ୍ତରାଧିକାର, ଶୈଶବ, ବୟଃପ୍ରାପ୍ତି, ଶବସତ୍କାର, ବିଭିନ୍ନ ଉତ୍ସବ, ଯୁଦ୍ଧ ବିଗ୍ରହ, ଶିକାର, ମାଛଧରା, ଗୋପାଳନ, ଚାଷକାର୍ଯ୍ୟ ଆଦି ସହିତ ଜଡ଼ିତ ବିଭିନ୍ନ ପ୍ରଥା ଓ କ୍ରିୟାକର୍ମ ମଧ୍ୟ ଏହା ଅନ୍ତର୍ଗତ । ପୁରାଣ, କାହାଣୀ, କିମ୍ବଦନ୍ତୀ, ଗୀତ, ନୃତ୍ୟ, ପ୍ରବାଦ, ପ୍ରବଚନ, ନାଁ ଦିଆ, ପିଲା ଭୁଲାଣୀ ଗୀତ ଓ ସ୍ଥାନୀୟ କିମ୍ବଦନ୍ତୀ ମଧ୍ୟ ଏହାର ଅନ୍ତର୍ଭୁକ୍ତ । ଏଗୁଡ଼ିକ କେବଳ ଲୋକଙ୍କ ସ୍ମୃତିରେ ଗଢ଼ି ଆସୁଥିଲେ ହିଁ ଏଗୁଡ଼ିକ ଲୋକ ସଂସ୍କୃତି ଅନ୍ତର୍ଗତ ।

ଏତଦ୍‌ବ୍ୟତୀତ ପ୍ରଚଳିତ ଥଟ୍ଟା ତାମସା, ମନ୍ତ୍ର, ଆଶୀର୍ବାଦ, ଲୋକ ଔଷଧି, ବାଦ୍ୟ, ଯନ୍ତ୍ର, ସଙ୍ଗୀତ, ବ୍ୟକ୍ତି ବା ସ୍ଥାନର ନାମକରଣ ଖାଦ୍ୟ, ସୀବନ ଶିଳ୍ପ, ଗୃହ ନିର୍ମାଣ, ବାଡ଼ଘେରା ଆଦିକୁ ମଧ୍ୟ ଆଲାନ୍ ଡାଣ୍ଡିଜ୍ ଲୋକ ସଂସ୍କୃତିର ଅନ୍ତର୍ଗତ କରିଛନ୍ତି । ହସ୍ତଶିଳ୍ପ, ଲୋକକଳା, କାରିଗରୀ କଳା, ଚାଷ ପ୍ରଣାଳୀ, ସମ୍ବାଦ ପ୍ରେରଣ କୌଶଳ ଆଦିକୁ ମଧ୍ୟ ଲୋକ ସଂସ୍କୃତିର ଅନ୍ତର୍ଗତ କରାଯାଏ । ଲୋକ ସଂସ୍କୃତିର ବ୍ୟାପକତା ଏଥିରୁ ଅନୁମତି ହୋଇଥାଏ ।

**ଲୋକ ସଂସ୍କୃତିର ପୃଷ୍ଠଭୂମି ଓ ପରମ୍ପରା**

ସଂଘର୍ଷ ଭିତରେ ମଣିଷ ବଞ୍ଚି ରହିବାର ଆକୁଳତାରୁ ଜନ୍ମ ନେଇଥିଲା ଗୋଷ୍ଠୀ ଜୀବନ ଓ ପରେ ସମାଜ ।

ସମାଜ ଓ ସାମାଜିକ ଜୀବନ ନିର୍ବାହର ପରିକଳ୍ପନାରୁ ଦିନେ ପ୍ରତିଷ୍ଠିତ ସମାଜ ଓ ଲୋକ ପରମ୍ପରା ଭିତରୁ ଆତ୍ମପ୍ରକାଶ କରିଥିଲା ଲୋକ ସଂସ୍କୃତି । ପ୍ରାୟ ଖ୍ରୀ.ପୂ. ୩୦୦୦ ବର୍ଷ ପୂର୍ବେ ଭାରତବର୍ଷରେ ଲୋକ ସଂସ୍କୃତିର ମୂଳଦୁଆ ପଡ଼ିଥିଲା । ଓଡ଼ିଆ ଲୋକ ସଂସ୍କୃତିର ପ୍ରାଚୀନତା ଭରତମୁନିଙ୍କ ନାଟ୍ୟଶାସ୍ତ୍ରରେ ଉଡ୍ର ବିଭାଷା ସମ୍ପର୍କରେ ଉଲ୍ଲେଖ ରହିଥିବା କଥାରୁ ଜଣାପଡ଼େ । ଓଡ଼ିଶାର ଲୋକ ସଂସ୍କୃତିର ଉନ୍ମେଷ କାଳ ସମ୍ଭବତଃ ଖ୍ରୀ.ପୂ. ୧୦୦୦ ବର୍ଷରୁ ଅଧିକ ପ୍ରାଚୀନ । ସାମାଜିକ ନୀତିନିୟମରେ, ଧର୍ମରେ, ସଭ୍ୟତାର ବିକାଶରେ ମଣିଷର ଜୀବନଯାପନ ପ୍ରଣାଳୀରେ ଲୋକ ସଂସ୍କୃତି ପ୍ରକାଶ ପାଏ । ଲୋକ ସଂସ୍କୃତିର ଏକ ବିଶିଷ୍ଟ ଧାରା ହେଲା ଲୋକ ସଂସ୍କାର ଓ ଲୋକାଚାର । ଲୋକ ସଂସ୍କୃତି ମଧ୍ୟରୁ ଗୋଟିଏ ଜାତିର ଆଶା, ନିରାଶା, ସୁଖ, ଦୁଃଖ, ବିଶ୍ୱାସ, ଅବିଶ୍ୱାସ, ଚାଲିଚଳଣି, ରୀତି ଓ ପରମ୍ପରାର ଲୁକ୍କାୟିତ ଇତିହାସ ମିଳିଥାଏ । କୌଣସି ଜାତିର ପ୍ରାଣସ୍ପନ୍ଦନ ଜାଣିବା ପାଇଁ ଏହାର ଲୋକ ସଂସ୍କୃତିର ଅନୁଶୀଳନ ନିତାନ୍ତ ଆବଶ୍ୟକ । ଲୋକବିଶ୍ୱାସ ଓ ଲୋକପ୍ରଥା ଏହି ଲୋକ ସଂସ୍କୃତିର ଅନ୍ୟ ଏକ ସ୍ତମ୍ଭ ସଦୃଶ । ଲୋକ ସଂସ୍କୃତି ହେଉଛି ଏକ ଗୁଣାତ୍ମକ ଆସ୍ପର୍ଦ୍ଧା, ସାମୂହିକ ଓ ବ୍ୟକ୍ତିଗତ ଜୀବନରେ ଆବିଷ୍କାରର ପ୍ରେରଣା, ଏହା ସର୍ବଦା ସୀମିତ, ସ୍ଥିର । ଅଚଞ୍ଚଳ ନୁହେଁ । ନୂତନତାର ମୂଲ୍ୟରେ ଏବଂ ନୂତନତାର ବ୍ୟାପକତାରେ ସମୃଦ୍ଧ । ଏହା ଭାରତୀୟ ସଂସ୍କୃତି ଓ ଲୋକ ସଂସ୍କୃତିର ଏକ ସମ୍ମିଳିତ ରୂପ । ଲୋକ ସଂସ୍କୃତି ସାଧାରଣ ଲୋକ ସମାଜରେ ପ୍ରବାହିତ ଓ ମଙ୍ଗଳ ବିଧାନ ଲାଗି ଅଭିପ୍ରେତ । ଆଦିବାସୀଙ୍କଠାରୁ ଆରମ୍ଭ କରି ପଲ୍ଲୀନଗରର ଶିକ୍ଷିତ, ଅର୍ଦ୍ଧଶିକ୍ଷିତ, ଅଶିକ୍ଷିତ ଜନତା ପର୍ଯ୍ୟନ୍ତ ସମସ୍ତେ ଏହାର ପର୍ଯ୍ୟାୟଭୁକ୍ତ । ଏମାନଙ୍କ ପରମ୍ପରା ଓ ସଂସ୍କୃତିକୁ ଲୋକ ସଂସ୍କୃତି କୁହାଯାଏ । ଏହା ଜନତା ଜନାର୍ଦ୍ଦନର ଶାଶ୍ୱତ ଓ ସାରସ୍ୱତ ସମ୍ପତ୍ତି । ଶ୍ରୁତିରୁ ଶ୍ରୁତିରୁ, ବର୍ଷ ବର୍ଷର ଅଭିଜ୍ଞତାରୁ, ଶହ ଶହ ବର୍ଷର ପୁରୁଷାନୁକ୍ରମରେ ଅବାରିତ ଧାରାରେ ଅନୁଭୂତିକୁ ନେଇ ଗତି କରିଆସୁଛି ।

## ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲୋକ ସଂସ୍କୃତି

କୌଣସି ଅଞ୍ଚଳର ପ୍ରାଚୀନ ଐତିହ୍ୟ, ସାଂସ୍କୃତିକ ପରମ୍ପରା, ଭୌଗୋଳିକ ଅବସ୍ଥିତି, ଅର୍ଥନୈତିକ ଓ ସାମାଜିକ ବ୍ୟବସ୍ଥା, ଆଞ୍ଚଳିକ ଭାଷା ତଥା ଲୋକଜୀବନର ବାସ୍ତବ ରୂପ ଜାଣିବାକୁ ହେଲେ ସେହି ଅଞ୍ଚଳର ଲୋକ ସଂସ୍କୃତି ସମ୍ପର୍କରେ ଅବଗତ ହେବା ସର୍ବାଦୌ ଆବଶ୍ୟକ । କାରଣ ଏକ ଶାସନାଧୀନ ବିସ୍ତୃତ ଅଞ୍ଚଳ ଏହି ସବୁ ଦୃଷ୍ଟିରୁ ସର୍ବଦା ଏକ ଓ ଅଭିନ୍ନ ନୁହେଁ । 'ଦେଶକେ ଫାଙ୍କ, ନଈକେ ବାଙ୍କ' କିମ୍ବା 'କୋଶ କୋଶ ମୋ ପାନି – ଚାଏର କୋଶ ମେ ବାନୀ' ନ୍ୟାୟରେ ଆଞ୍ଚଳିକ ସ୍ୱାତନ୍ତ୍ର୍ୟ ଅବଶ୍ୟ ପରିଲକ୍ଷିତ ହୋଇଥାଏ । ଊନବିଂଶ ଶତାବ୍ଦୀର ଶେଷାର୍ଦ୍ଧ ପୂର୍ବରୁ ଓଡ଼ିଶାରେ ଲୋକସାହିତ୍ୟ ଅଧ୍ୟୟନ ଦିଗରେ କୌଣସି ପ୍ରୟାସ ହୋଇନଥିଲା । ୧୯୬୮ ମସିହାରେ ଜନ୍ ବୀମସ୍ ଓଡ଼ିଶାରେ ଲୋକସାହିତ୍ୟ ଓ ଅଧ୍ୟୟନ ଆରମ୍ଭ କରିଥିଲେ । ପରେ ୧୯୭୬ରୁ ପଣ୍ଡିତ କପିଳେଶ୍ୱର ନନ୍ଦଶର୍ମା, ଗୋବିନ୍ଦ ରଥ, ନୀଳମଣି ବିଦ୍ୟାରତ୍ନ, ଅପର୍ଣ୍ଣା ପଣ୍ଡା, ଭଗବାନ ହୋତା, ନିତ୍ୟାନନ୍ଦ ସାହୁ, ଜଗନ୍ନାଥ ସିଂହ ପ୍ରମୁଖ ଲୋକସାହିତ୍ୟ ଅଧ୍ୟୟନ ଦିଗରେ ନିଷ୍ଠାପର ଉଦ୍ୟମ ଚଳାଇଥିଲେ । ଶ୍ୟାମସୁନ୍ଦର ମହାପାତ୍ର, ମୁନ୍‌ସୀ ଖେଶ ମଜିଦ, ଚନ୍ଦ୍ରଶେଖର ବାହିନୀପତି, ଗୋପାଳଚନ୍ଦ୍ର ପ୍ରହରାଜ, କୁଞ୍ଜବିହାରୀ ଦାଶ, ବନେଇ ଦାଶ, କବିଭୂଷଣ ସ୍ୱପ୍ନେଶ୍ୱର ଦାଶ ପ୍ରମୁଖ ୧୯୫୫ ଭିତରେ କେବଳ ଢଗ–ଢ଼ମାଳି, ପ୍ରବାଦ–ପ୍ରବଚନ ଆଦି ଲୋକବାଣୀ ସଂଗ୍ରହରେ ପ୍ରବୃତ୍ତ ହୋଇଥିଲେ । ଏହିପରି ଭାବରେ ଓଡ଼ିଶାର ବିଭିନ୍ନ ଅଞ୍ଚଳର ଲୋକ ସଂସ୍କୃତିକୁ ସଂଗ୍ରହ କରାଯିବାର ସତତ ପ୍ରୟାସ ଆଜି ସଫଳ ହୋଇପାରିଛି ।

ଭୌଗୋଳିକ ଅବସ୍ଥାନ ଦୃଷ୍ଟିରୁ ଓଡ଼ିଶା ମାନଚିତ୍ରରେ ପଶ୍ଚିମ ଓଡ଼ିଶାର ଅବସ୍ଥିତି, ଓଡ଼ିଶାର ଅନ୍ୟାନ୍ୟ ଅଞ୍ଚଳଠାରୁ

ବିଶାଳ । ଓଡ଼ିଶାର ସୁନ୍ଦରଗଡ଼, ସମ୍ବଲପୁର, ବଲାଙ୍ଗିର, କଳାହାଣ୍ଡି, ବଉଦ, ଫୁଲବାଣୀର କେତେକାଂଶକୁ ନେଇ ଚିହ୍ନିତ ପଶ୍ଚିମ ଓଡ଼ିଶା । ପୂର୍ବେ ଏହାର ନାମ ଥିଲା 'ଦକ୍ଷିଣ କୋଶଳ' । ବଣ-ପାହାଡ଼, ନଈ-ନାଳ ପରିବେଷ୍ଟିତ ଏହି ଅଞ୍ଚଳ ମୁଖ୍ୟତଃ ଆଦିବାସୀ, ହରିଜନଙ୍କ ବ୍ୟତୀତ କେତେକ ଉଚ୍ଚବର୍ଗର ଲୋକମାନେ ମଧ୍ୟ ସୁଦୂର ଅତୀତରୁ ବସବାସ କରି ଏହି ଅଞ୍ଚଳର ସଂସ୍କୃତି ସହିତ ଆପଣାକୁ ପ୍ରାୟତଃ ସାମିଲ କରିଦେଇଛନ୍ତି । ମୂଳ ପ୍ରଜାତିକ ଗୋଷ୍ଠୀ ଏହି ବହିରାଗତଙ୍କ ଦ୍ୱାରା ପ୍ରଭାବିତ ହୋଇଥିଲେ ହେଁ ଆପଣାର ମୂଳ ସଂସ୍କୃତିକୁ ଆଦୌ ଛାଡ଼ିନାହାନ୍ତି । ବରଂ ସାଂସ୍କୃତିକ, ଭାଷାତାତ୍ତ୍ୱିକ ତଥା ସର୍ବୋପରି ଲୋକଜୀବନ ଅନୁସାରେ ଏହି ବିଶାଳ ଭୂଖଣ୍ଡ ତା'ର ସ୍ୱତନ୍ତ୍ର ବଜାୟ ରଖିଛି । ସଂଗୃହୀତ ଲୋକସାହିତ୍ୟର ଉପାଦାନଗୁଡ଼ିକ ଭିତ୍ତିକରି ଗବେଷଣା ପଦ୍ଧତିର ଅନୁସରଣରେ ନିବନ୍ଧଟିକୁ ଯଥାକ୍ରମେ ଲୋକଗୀତ, ଲୋକକାହାଣୀ, ଢଗଢ଼ମାଳି ଓ ନାଚ ବା ଲୋକ ନାଟକ ଏମିତି ପାଞ୍ଚଟି ଅଧ୍ୟାୟରେ ବିଭକ୍ତ କରାଯାଇଛି । ପଶ୍ଚିମ ଓଡ଼ିଶାରେ ମୌଖିକ ଲୋକ ପରମ୍ପରାରେ ପ୍ରଚଳିତ ଗୀତଗୁଡ଼ିକୁ ସାଧାରଣତଃ ସମସ୍ତେ 'ଗୀତ' କହିଥାନ୍ତି । ବିଭିନ୍ନ ପର୍ବପର୍ବାଣିରେ ସେଠାକାର ଜନସାଧାରଣ ସଂସ୍କାରଧର୍ମୀ ଓ ଉଦ୍ଦେଶ୍ୟମୂଳକ ସଂଗୀତ ଗାନ କରିବାର ମର୍ଯ୍ୟାଦା ବଢ଼ାଇଥାନ୍ତି । ଏହାଛଡ଼ା ସେମାନେ କ୍ରୀଡ଼ା ଗୀତ, ଶ୍ରମଗୀତ, ନାନାବାୟା ଗୀତ, ଶୃଙ୍ଗାର ବିଷୟକ ଗୀତ, ବାରମାସୀ ଗୀତ ଏହିପରି ଅନେକ ଲୋକଗୀତ ପଶ୍ଚିମ ଓଡ଼ିଶାର ଲୋକ ପରମ୍ପରାରେ ପ୍ରଚଳିତ ରହିଛି । ଅନେକ ଅଲୌକିକ କାହାଣୀ, ପୁରାଣ କଥା ମଧ୍ୟ ଦେଖିବାକୁ ମିଳିଛି । ଲୋକବାଣୀ ଏ ଅଞ୍ଚଳର ଏକ ବିଶିଷ୍ଟ ଦିଗ । ସାଧାରଣ ଜନଜୀବନରେ କଥା କଥାକେ ପ୍ରବାଦ, ପ୍ରବଚନ, ଚର୍ଚ୍ଚା, ନାୟିକା ପ୍ରଭୃତିରେ ଲୋକଉକ୍ତିର ବହୁଳ ପ୍ରୟୋଗ ଦେଖିବାକୁ ମିଳେ । ଏ ଅଞ୍ଚଳର ଲୋକଉକ୍ତିର ପ୍ରାଧନ ଆକର୍ଷଣ ହେଲା 'ବଖାନି' । ଓଡ଼ିଶାର ଅନ୍ୟ ଅଞ୍ଚଳରେ ଏହାକୁ 'ନାଁ ଦିଆ' କହୁଥିବାବେଳେ ପଶ୍ଚିମ ଓଡ଼ିଶାରେ ଏହାକୁ 'ବଖାନି', 'ଉକାନି' ବା 'ଧନ୍ଦା' ବୋଲି କୁହାଯାଏ । ଏହି 'ବଖାନି' ମୁଖ୍ୟତଃ ପ୍ରାଣୀ, ଖାଦ୍ୟ, ଗୃହୋପକରଣ, କୃଷି ସମ୍ବନ୍ଧୀୟ, ବୃକ୍ଷଲତା, ଫଳପୁଷ୍ପ ସମ୍ବନ୍ଧୀୟ ଅଟେ । ପଶ୍ଚିମ ଓଡ଼ିଶାର ବିଶେଷ ଆକର୍ଷଣ ହେଉଛି ଲୋକନାଟକ । ପାରମ୍ପରିକ ରୀତିରେ ଅନୁଷ୍ଠିତ ପଶ୍ଚିମ ଓଡ଼ିଶାର ଲୋକ ନାଟକଗୁଡ଼ିକରେ ଲୋକଧର୍ମିତା, ରଙ୍ଗମଞ୍ଚର ପରିକଳ୍ପନା ନେପଥ୍ୟର ବ୍ୟବସ୍ଥା, ଲୋକ ସଂସ୍କୃତିର ସମାବେଶ, ସଙ୍ଗୀତ ଓ ବାଦ୍ୟଯନ୍ତ୍ରର ବ୍ୟବସ୍ଥା ସହ ଚରିତ୍ର ଓ ଦର୍ଶକଙ୍କ ସମ୍ବନ୍ଧ ଏଥିରେ ଦେଖିବାକୁ ମିଳେ, ଯାହା ଅତ୍ୟନ୍ତ ଉଚ୍ଚକୋଟୀର ମନେହୁଏ । ପଶ୍ଚିମ ଓଡ଼ିଶାର ସାଧାରଣ ଜନତା ପୂଜାପାର୍ବଣ ଉପରେ ଅଧିକ ଗୁରୁତ୍ୱ ଦେଇଥାନ୍ତି । ଏହି ଅଞ୍ଚଳରେ ପାଳିତ ହୋଇଥାଏ ବିଭିନ୍ନ ଓଷା ଯଥା- ଭାଇ ଜୀଉଁତିଆ ଓଷା, କଳସ ଓଷା, ଡାଲଖାଇ ଓଷା, ନୂଆଖାଇ, ବେଙ୍ଗଲୀ ଓଷା । ଏହା ସହ ପର୍ବପର୍ବାଣି, ପୋଡ଼ମରା, ବିହନଛିନ୍ନା, ସେମ୍ବିଯାତ୍ରା, ମହୁଲଯାତ୍ରା, କାନ୍ଦୁଲ ଯାତ୍ରା, ଶୁଖିଲା ଯାତ୍ରା ପ୍ରଭୃତିରୁ ସେଠାକାର ଲୋକ ସଂସ୍କୃତିର ନିଚ୍ଛକ ପରିଚୟ ପ୍ରଦାନ କରିଥାଏ ।

କଳାହାଣ୍ଡିର ଲୋକ ସଂସ୍କୃତି ମୁଖ୍ୟତଃ ଏକ ଆଦିବାସୀ ଅଧ୍ୟୁଷିତ ଅଞ୍ଚଳ ରୂପେ ବହୁ କାଳରୁ ପରିଚିତ ଅଟେ । ମାତ୍ର ସମୟ କ୍ରମେ ସେଠାରେ ଆର୍ଯ୍ୟଗୋଷ୍ଠୀର ବ୍ରାହ୍ମଣ, କ୍ଷତ୍ରିୟ, ଗରୁଡ଼, ପାଇକ, କୁଲତା, ବୈରାଗୀ, ଦୋଷୀ, ଭୋଲିଆ, କୁରମୀ, ମାଳୀ, ତେଲୀ, ସୁନାରୀ, ସାପୁଆ, ଶୁଣ୍ଡୀ, କଲରା, ଭଣ୍ଡାରୀ, କେଉଟ, ବଙ୍କା ପ୍ରଭୃତି ଜାତିର ଲୋକେ ବାସ କରନ୍ତି । ନିକଟ ଅତୀତରେ ମାରୁଆଡ଼ି, ସିନ୍ଧୀ, ଗୁଜୁରାଟୀ, ଶିଖ୍, ମୁସଲମାନ, କୁମୁଟୀ ଆଦି ଲୋକେ ବ୍ୟବସାୟ ସୂତ୍ରରେ ଆସି ଏହି ଜିଲ୍ଲାରେ ସ୍ଥାୟୀ ଭାବରେ ବସବାସ କରିଥିଲେ । ବର୍ତ୍ତମାନ ଏହି ଜିଲ୍ଲାରେ ମୁଖ୍ୟତଃ ୪୬ ପ୍ରକାରର ଆଦିବାସୀ ବସବାସ କରିଥାନ୍ତି । ଏହି ଅଞ୍ଚଳର ପ୍ରତ୍ୟେକ ଜାତି ଓ ଜନଜାତିର ଗୋତ୍ର ଓ ବର୍ଗ ରହିଛି । ଆଦିବାସୀ ସମ୍ପ୍ରଦାୟର ବର୍ଗ

ବିଭାଜନ ପୂର୍ବରୁ ଆଲୋଚିତ । ସେହିପରି ବ୍ରାହ୍ମଣଙ୍କ ଓଡ଼ିଆ/ ଝାଡୁଆ, ସାରୁଆ / ଲରିଆ ଇତ୍ୟାଦି । ମାଳି ଜାତିରେ ସେହିପରି ବରିଆ / ଲିଆହରା କୋଶଲିଆ ଇତ୍ୟାଦି । ଗଉଡ଼ମାନଙ୍କ ଭିତରେ ମଗଧା / ଲରିଆ / ଝରିଆ / କୋଶଲିଆ ଇତ୍ୟାଦି । ଏହିପରି ପ୍ରତ୍ୟେକ ଜାତିରେ ବିଭାଜନ ଭେଦ ଦେଖାଯାଏ । ଏହି ଅଞ୍ଚଳରେ ଏକ ବିହାରୀ ଓ ବହୁପତ୍ନୀ ପରିବାର ଦେଖାଯାନ୍ତି । ଏହାଛଡ଼ା ବହୁ ବିବାହ, ବାଲ୍ୟ-ବିବାହ, ବିଧବା ବିବାହ ପରିଦୃଷ୍ଟ ହୁଏ । ଆଦିବାସୀ କଥା ଅନ୍ୟ କେତେକ ସହାବସ୍ଥାୟୀ ଜାତିରେ ଏକ ରୈଖିକ ବଂଶର ଆଧାରରେ ଗଠିତ ପିତୃବଂଶୀୟ ପରିବାରର ଏକତା ରକ୍ଷା ପାଇଁ 'levirate and sarorate' ବିବାହ ହୁଏ । ଆଦିବାସୀ ସମ୍ପ୍ରଦାୟରେ ଗୋତ୍ର ଅନୁଯାୟୀ ବଂଶର ଭୂମି ବଣ୍ଟନ ଓ ଗୋତ୍ରଭିତ୍ତିକ ଦେବଦେବୀ ଭାଗ ବଣ୍ଟନ ହୁଏ । ଏ ଅଞ୍ଚଳରେ ସ୍ୱ ଗୋତ୍ର ବିବାହ ନାହିଁ । ଏହି ଅଞ୍ଚଳରେ ଆଦିବାସୀମାନଙ୍କର ଉଦୁଲିଆ ବିଭା, ଘିଚା (ଟାଣିନେଇ ବିବାହ କରିବା), ପଇସାମୁଣ୍ଡି ଆଦି ବିବାହ ରହିଛି । ଗ୍ରାମଗୁଡ଼ିକରେ ଆଦିବାସୀ ସମ୍ପ୍ରଦାୟର ଲୋକମାନେ ମୁଖିଆ ଭାବେ ବିବେଚିତ ହୋଇଥାନ୍ତି । ଏବେ ବି ପ୍ରାୟ ଶତକଡ଼ା ପଚାଶ ଭାଗ ଗ୍ରାମରେ ଦେଖିବାକୁ ମିଳେ । ଏଠାକାର ପ୍ରତ୍ୟେକ ଗ୍ରାମରେ ଆଦିବାସୀ ମୁଖ୍ୟ ଗଉନ୍ତିଆ ରହିଥିବାବେଳେ, ଆର୍ଯ୍ୟ ଗୋଷ୍ଠୀର ଶାସକ ଶାସନ କଲାବେଳେ ବ୍ରାହ୍ମଣ, ମୁସଲମାନ, ପାଇକ, କରଣ, ମାଳୀ, ତେଲୀ, ଗଉଡ଼ ଆଦି ଜାତିର ମଧ୍ୟ ସେମାନେ ଗଉନ୍ତିଆ ହୋଇଥିବାର ଦେଖାଯାଏ । ଗଉନ୍ତିଆ, ପୂଜକ ଓ ବିହାରୀଙ୍କୁ ନେଇ ତଥା ଗ୍ରାମର ପାଞ୍ଚ-ସାତ ଜଣ ସିଆନ (ବୟୋବୃଦ୍ଧ) ଲୋକଙ୍କୁ ନେଇ ବଇଦ, ଗୁଣିଆ ନରିହା (ଗଉଡ଼), ଚଉକିଆ, ବାଦ୍ୟକାରମାନେ ସମବାୟରେ ଗ୍ରାମ୍ୟ ସଙ୍ଗଠନ କରାଯାଇଥାଏ । ଗ୍ରାମର ସାମୂହିକ କାର୍ଯ୍ୟ 'ପଞ୍ଚ' ଦ୍ୱାରା ହିଁ ସମ୍ପୂର୍ଣ୍ଣ କରାଯାଇଥାଏ । ସେହିପରି ପାରିବାରିକ ଧର୍ମାଚାର ବିଷୟରେ କଳାହାଣ୍ଡିର ସଂସ୍କୃତି ସ୍ୱତନ୍ତ୍ର ଅଟେ । ପରିବାରରେ ଜନ୍ମ, କିଣା ବର, ବିବାହ, ଶ୍ରାଦ୍ଧକ୍ରିୟା ଓ ଡୁମା ଆବାହନ ରୀତିକୁ ଏହି ଅଞ୍ଚଳର ମୁଖ୍ୟ ପାରିବାରିକ ଧର୍ମାଚାର ବୋଲାଯାଇପାରେ । କୌଣସି ପରିବାରରେ ଜନ୍ମିତ ଶିଶୁଟି କେଉଁ ପୂର୍ବପୁରୁଷଙ୍କ ଆତ୍ମା ଅବତୀର୍ଣ୍ଣ ହୋଇ ଆସିଅଛି, ତାହା ଜାଣିବା ପାଇଁ ଏକ ପ୍ରକ୍ରିୟା ରହିଛି । ବିବାହ କାଳରେ ଯୋଗଖୁଟା (ମହୁଲ ଗଛର ଡାଳ) ଓ ଯୋଗକାଶ (ଶର) ରଖିବାର ସାଙ୍କେତିକ ଅର୍ଥ ଜଙ୍ଗଲରୁ ଶିକାର ଓ ଖାଦ୍ୟ ସଂଗ୍ରହ କରି ପୁରୁଷ ସ୍ତ୍ରୀର ପେଟ ପୋଷିବ । ଶ୍ରାଦ୍ଧକ୍ରିୟା ମୃତ ବ୍ୟକ୍ତିର ତିନିଦିନର କ୍ରିୟା ଦଶା ରୂପେ ପରିଚିତ । ମୃତ ବ୍ୟକ୍ତିର ଆତ୍ମା 'ଡୁମା' ଆବାହନ ରୀତି ବଡ଼ ଜଟିଳ ଓ ସାଙ୍କେତିକ ।

ସାମାଜିକ ଧର୍ମାଚାର ଦୃଷ୍ଟିରୁ ବର୍ଷ ମଧ୍ୟରେ ଯେତେ ପର୍ବପର୍ବାଣି ଉତ୍ସବ ସବୁ ପାଳନ ହୁଏ, ସେସବୁ ଗ୍ରାମର ସମସ୍ତ ବ୍ୟକ୍ତିଙ୍କୁ ନେଇ ଏକ ନିର୍ଦ୍ଦିଷ୍ଟ ସ୍ଥାନରେ ପାଳନ କରାଯାଇଥାଏ । ଏହି ଅଞ୍ଚଳର ପର୍ବତ ସବୁ ଏକ ଏକ ଦେବତାର ଆସ୍ଥାନ । ଏହି ଅଞ୍ଚଳର ପର୍ବପର୍ବାଣିକୁ 'ଯତରା' ବୋଲି କହିଥାନ୍ତି । ଏହି ଅଞ୍ଚଳର ଲୋକ ସଂସ୍କୃତିକୁ ମୁଖ୍ୟତଃ ଦୁଇ ଭାଗରେ ବିଭକ୍ତ କରାଯାଇଛି, ଯଥା- କୃଷିଭିତ୍ତିକ, ଧର୍ମଭିତ୍ତିକ । ଏହି ଅଞ୍ଚଳର ଅର୍ଦ୍ଧେକ ଲୋକ ଖାଦ୍ୟ ସଂଗ୍ରହ କରି ବଞ୍ଚୁଥିବାବେଳେ ପ୍ରକୃତି ସହିତ ଏକାତ୍ମ ହୋଇ ମଧ୍ୟ ଜୀବନ ଅତିବାହିତ କରିଥାନ୍ତି । ଏଠାକାର ଲୋକେ ଚେତନାର ମୌଳିକ କବି ବୃତ୍ତିର ସ୍ୱାଭାବିକ ଆତ୍ମପ୍ରକାଶ, ଏକାନ୍ତ ମନୋଜ୍ଞ ଓ ଭାବବ୍ୟଞ୍ଜକ ଗୀତି ଗାନ କରିଥାନ୍ତି । ଜୀବନର ଦୁଃଖଦ ବିଷକୁ ନୀଳକଣ୍ଠ ପରି ପାନକରି ଅରଣ୍ୟ ସଙ୍ଗୀତ ଗାଇ ବାଦ୍ୟ ନୃତ୍ୟ ମଧ୍ୟରେ ଜୀବନକୁ ସରସ ସୁନ୍ଦର କରି ବଞ୍ଚିବା ପାଇଁ ଏଠାକାର ମଣିଷ ଦିନେ ମାତ୍ର କାର୍ପଣ୍ୟ କରେ ନାହିଁ । ଦିବସରେ ରୁକ୍ଷ କଠୋର କର୍ମକ୍ଳାନ୍ତ ଜୀବନରେ ବ୍ୟସ୍ତ ଥାଇ ମଧ୍ୟ ଚନ୍ଦ୍ର ଜ୍ୟୋତ୍ସ୍ନାର ରଜନୀର କମନୀୟ ସବୁଜ ପ୍ରକୃତି ମଞ୍ଚରେ ପ୍ରେମିକ ପ୍ରେମିକା ଓ ସଙ୍ଗୀତରେ ନିମଗ୍ନ ହୋଇ କଳ୍ପନା ବିଭୋରକୁ ଗ୍ରହଣ କରି ସ୍ୱତଃ ନାଚି ଉଠେ । ତେଣୁ ଲୋକ ଜୀବନରେ ବାସ୍ତବ ଓ କଳ୍ପନା ଯେପରି ଏକ ମୁଦ୍ରାର ଦୁଇଟି ପାର୍ଶ୍ୱ । ସେହିପରି ଶ୍ରମ ଓ

ପ୍ରେମ ସେହିପରି ଦୁଇଟି ପାର୍ଶ୍ୱ । ପଲ୍ଲୀର ଆବାଳବୃଦ୍ଧବନିତାର ସର୍ଜନଶୀଳ ଚେତନାରୁ ବାଧା ବନ୍ଧନହୀନ ଯେଉଁ ଗୀତ, ଗାଥା, କଥା, ଢଗଢ଼ମାଳି, ଛଟା ଆଦି ଅବିରତ ଝରିପଡ଼େ, ତା'ର ସୌରଭର ତୁଳନା ନାହିଁ । କଳାହାଣ୍ଡିର ଲୋକଗୀତକୁ ମୋଟାମୋଟି ଭାବରେ ଆମୋଦ ପ୍ରମୋଦଭିତ୍ତିକ, କ୍ରୀଡ଼ାଭିତ୍ତିକ, କର୍ମଭିତ୍ତିକ, ପାରିବାରିକ, ସାମାଜିକ ଆଚାର, ଚଳଣିଭିତ୍ତିକ, ଧର୍ମାନୁଷ୍ଠାନଭିତ୍ତିକ, ପୌରାଣିକ ଜ୍ଞାନଭିତ୍ତିକ ତଥା ନୃତ୍ୟକାଳୀନ ଗୀତ ରୂପେ ବିଭକ୍ତ କରାଯାଇପାରେ । ଲୋକଗୀତରେ ପଲ୍ଲୀକବିର କବି ବୃତ୍ତିଟି କିପରି ପ୍ରକୃତି ବର୍ଣ୍ଣନା ମଧ୍ୟରେ ପ୍ରେମିକ ଓ ପ୍ରେମିକାଙ୍କ ନିବୃତ୍ତ ମିଳନକୁ ବ୍ୟତୀତ କରିଅଛି । ଉଦାହରଣ-

'ରସରକେଲିରେ ଉଦଉଦା ଉଦାଲଜନ୍
ଡଙ୍ଗର ଡଲୁ ଉଦ୍‌ଲା
କାରପୁଟ ନିଙ୍ଗଲ ପାନି, କଇଁ ଫୁଲ ଫୁଟିଲା
ଯେନ୍ ଗଛର ପତର କିରେ ବଉଲ
ସେ ଗଛେନେ ଫୁଟିଲା କି ରସରକେଲିରେ ।'

ଏହି ଅଞ୍ଚଳର ବାଳିକାମାନଙ୍କ କ୍ରୀଡ଼ାଭିତ୍ତିକ ଗୀତଗୁଡ଼ିକ ବରିଆ, ବାଙ୍ଗରୀ, କଳାକୋକିଲ ଓ ଜୀରା ଲବଙ୍ଗ ଆଦି ନାମରେ ନାମିତ । କର୍ମଭିତ୍ତିକ ଗୀତ ସ୍ୱରୂପ ହଳିଆ ଗୀତ, ଶଗଡ଼ିଆ ଗୀତ ଇତ୍ୟାଦି । ସେହିପରି ସାମାଜିକ ଓ ପାରିବାରିକ ଚଳଣିଭିତ୍ତିକ ଗୀତଗୁଡ଼ିକରେ ମା'ମାନଙ୍କ ପିଲାବୁଲା ଗୀତ, ପିଲା ଶୁଆ ଗୀତ, କାନ୍ଦଣା ଗୀତ, ଜ୍ଞାତିକୁଟୁମ୍ବଙ୍କ ମୃତ୍ୟୁ ଉଦ୍ଦେଶ୍ୟରେ ଶୋକ ଗୀତ ଇତ୍ୟାଦିରେ ପଲ୍ଲୀ ନାରୀର ଜୀବନ ତୀବ୍ର ବେଦନାବୋଧ ସହିତ ଆଞ୍ଚଳିକ, ପାରିବାରିକ ଓ ସାମାଜିକ ଚଳଣି ଚିତ୍ର ସୁସ୍ପଷ୍ଟ । ଏହା ବ୍ୟତୀତ ଲୋକଚଳଣି କଥା, ଲୋକକଥା, ଲୋକଗଳ୍ପ, କିମ୍ବଦନ୍ତୀମୂଳକ, ମିଥ୍, ଲୋକନୃତ୍ୟ, ଲୋକ ନାଟକର ସ୍ଥାନ ଓଡ଼ିଶାରେ ସ୍ୱତନ୍ତ୍ର ଅଟେ ।

ଖଡ଼ିଆଳ ଅଞ୍ଚଳର ଲୋକ ସଂସ୍କୃତି ମଧ୍ୟ ଖୁବ୍ ପୁରାତନ । ଖଡ଼ିଆଳ ଅଞ୍ଚଳ ବର୍ତ୍ତମାନ ନୂଆପଡ଼ା ନାମରେ ପରିଚିତ । ଏହି ଖଡ଼ିଆଳ ରାଜ୍ୟର ଚତୁଃପାର୍ଶ୍ୱରେ ସମ୍ବଲପୁର, ଭବାନୀପାଟଣା, ରାଇରଙ୍ଗପୁର ଓ ବଲାଙ୍ଗୀର ଜିଲ୍ଲା ଅବସ୍ଥିତ । ଏହି ରାଜ୍ୟରେ ରାମାୟଣ, ମହାଭାରତ ଯୁଗର କୁଶ ଓ ଭୀମଙ୍କଠାରୁ ଆରମ୍ଭ କରି ପରବର୍ତ୍ତୀ କାଳର ଚେଦି, ସୋମ, କାଲାଚୂରୀ, ଗଙ୍ଗ ଓ ଚୈତନ ବଂଶୀୟ ରାଜାମାନେ ରାଜତ୍ୱ କରୁଥିଲେ । ଖଡ଼ିଆଳ ରାଜ୍ୟ ବହୁ ଦିନଧରି ରାଜତନ୍ତ୍ରିକ ଶାସନାଧୀନ ଥିବାରୁ ଧର୍ମ, କଳା, ସ୍ଥାପତ୍ୟ କଥା ସାହିତ୍ୟରେ କିଞ୍ଚିତ ପରିମାଣରେ ସମୃଦ୍ଧି ଲାଭ କରିବା ସ୍ୱାଭାବିକ । ଖଡ଼ିଆଳ ରାଜ୍ୟର ବଡ଼ମୂକା ଗ୍ରାମରେ ବିଶିଷ୍ଟ କବି ଚୈତନ୍ୟ ଦାସ ଜନ୍ମଗ୍ରହଣ କରିଥିଲେ । ତାଙ୍କ ରଚିତ 'ନିର୍ଗୁଣ ମାହାତ୍ମ୍ୟ' ପରି ଉଚ୍ଚ ଦାର୍ଶନିକ ଚିନ୍ତାଧାରା ସମ୍ବନ୍ଧିତ କାବ୍ୟ ଭାରତୀୟ ଦର୍ଶନ ତତ୍ତ୍ୱର ସଙ୍କେତ ବହନ କରିଥାଏ । ଏହି ଅଞ୍ଚଳର କବି ଚୈତନ୍ୟ ଦାସଙ୍କ ଦାର୍ଶନିକ ଜିଜ୍ଞାସା ସୂଚାଇ ଦିଏ ଯେ ଏହି ରାଜ୍ୟ ଭାରତୀୟ ସଂସ୍କୃତିଠାରୁ ବିଚ୍ଛିନ୍ନ ନୁହେଁ । ଲୋକସଂଖ୍ୟା ଦୃଷ୍ଟିରୁ ଖଡ଼ିଆଳରେ ମୁଖ୍ୟତଃ ତିନି ଶ୍ରେଣୀର ଲୋକ ବସବାସ କରନ୍ତି । ପ୍ରଥମଟି ଶାସକ ଗୋଷ୍ଠୀର – ବ୍ରାହ୍ମଣ, କରଣ ଓ କ୍ଷତ୍ରିୟ । ଦ୍ୱିତୀୟ ଗୋଷ୍ଠୀ ହେଉଛନ୍ତି ଆଦିବାସୀ ସମ୍ପ୍ରଦାୟ ଏବଂ ତୃତୀୟ ଗୋଷ୍ଠୀ ହେଉଛନ୍ତି କୃଷିଜୀବୀ ଓ ଶ୍ରମିକ ସମାଜ । ଏହା ବ୍ୟତୀତ ଏଠାରେ ସଂଖ୍ୟାଲଘୁ ସମ୍ପ୍ରଦାୟ ଖଡ଼ିଆଳ ଲୋକ ସଂସ୍କୃତି ଅଧ୍ୟୟନ କଲାବେଳେ ଏହି ରାଜ୍ୟର ସାଂସ୍କୃତିକ ପୃଷ୍ଠଭୂମି, ଦେବଦେବୀ ମନ୍ଦିର, ଧର୍ମଧାରା, ସମାଜ ଜୀବନ ଓ ପର୍ବପର୍ବାଣି, ଭାଷା ଓ ଆଞ୍ଚଳିକ ସଂସ୍କୃତି ଏବଂ ଲୋକ ସାହିତ୍ୟର ପରମ୍ପରା ଆଦି ଉପରେ ବିଶେଷ ଆଲୋକପାତ କରାଯାଏ । ଖଡ଼ିଆଳ ରାଜ୍ୟର ମୂଳ ଅଧିବାସୀ ହେଉଛନ୍ତି ଆଦିବାସୀ, ରାଜନୈତିକ ବାତାବରଣ ଭିତରେ ପରବର୍ତ୍ତୀ କାଳରେ ଆର୍ଯ୍ୟମାନେ ଏଠାରେ ବସବାସ କରିଆସିଛନ୍ତି । କୌଣସି ଏକ ଗୋଷ୍ଠୀର ସଂସ୍କୃତି ସେଠାରେ ବସବାସ କରୁଥିବା ଲୋକଙ୍କ ସାମାଜିକ ସମ୍ପର୍କ ଉପରେ ଅଧିକ ନିର୍ଭରଶୀଳ । ସାପିରଙ୍କ ମତରେ, 'ସାମାଜିକ ଉତ୍ତରାଧିକାରୀ ସୂତ୍ରରେ

ଯେଉଁ ବିଶ୍ୱାସ, ଅଭ୍ୟାସ, ଚଳଣି ତଥା ରୀତିନୀତିଗୁଡ଼ିକୁ ଆମେ ପାଇଥାଉଁ, ତାହା ଆମ ଜୀବନର ଗତିଧାରାକୁ ବହୁଳ ଭାବରେ ପ୍ରଭାବିତ କରିଥାଏ, ଯାହା ଆମେ ଖଡ଼ିଆଳ ଲୋକ ସଂସ୍କୃତିରେ ପାଉଛୁ।' ଖଡ଼ିଆଳ ରାଜ୍ୟର ଲୋକ ଜୀବନରେ ମୁଖ୍ୟତଃ ତିନି ପ୍ରକାର ପରମ୍ପରା ଦେଖିବାକୁ ମିଳେ । ପ୍ରଥମଟି ଶାସ୍ତ୍ରୀୟ ରୀତିକୁ ଅନୁସରଣ କରି ଶାସକ ବର୍ଗଙ୍କ ଦ୍ୱାରା ପୃଷ୍ଠପୋଷକତା ଲାଭ କରିଥିବା ପରମ୍ପରା, ଦ୍ୱିତୀୟଟି ସାଧାରଣ ଜନଜୀବନକୁ ଆଶ୍ରୟ କରି ଗ୍ରାମ୍ୟ ଜୀବନର ଧର୍ମ ଓ ତୃତୀୟଟି ଆଦିବାସୀ ସଂସ୍କୃତିର ଧର୍ମଧାରଣା । ଏଗୁଡ଼ିକର ସମନ୍ୱୟ ଲୋକଜୀବନକୁ ପରିବର୍ତ୍ତନ ଓ ନିୟନ୍ତ୍ରିତ କରିଥାଏ । ଏହା ବ୍ୟତୀତ ଏହି ଅଞ୍ଚଳରେ ବୈଦେଶିକ ଶକ୍ତିର ଅନୁପ୍ରବେଶ ଫଳରେ ଖ୍ରୀଷ୍ଟିଆନ୍, ମିସ୍‌ନାରୀ ଓ ଇସ୍‌ଲାମ୍ ଧର୍ମର ପ୍ରଭାବ ମଧ୍ୟ ସାଧାରଣ ଜନଜୀବନରେ ଲକ୍ଷ୍ୟ କରାଯାଏ ।

ଦେବାଦେବୀଙ୍କ ମନ୍ଦିରଗୁଡ଼ିକର ନିର୍ମାଣକଳା ଓ ବିଷୟବସ୍ତୁ ତଥା ଶିଳ୍ପ ନୈପୁଣ୍ୟ ଓ ଶିଳ୍ପ ସାମଗ୍ରୀର ବ୍ୟବହାରରୁ ଜଣାଯାଏ ଯେ ଏହି ରାଜ୍ୟରେ ବୈଷ୍ଣବ, ଶୈବ ଓ ଶାକ୍ତଧର୍ମର ପ୍ରଚଳନ ଥିଲା । ଏଠାରେ ନିର୍ମିତ ଦେବଦେବୀ ମନ୍ଦିରଗୁଡ଼ିକରେ ଜଗନ୍ନାଥ, ଲକ୍ଷ୍ମୀ ଓ ଶିବ ପୂଜା ପାଇଥାନ୍ତି । ମନ୍ଦିରଗୁଡ଼ିକର କାର୍ଯ୍ୟକ୍ରମ ଶାସ୍ତ୍ରୀୟ ରୀତି ଓ ନୀତି ଅନୁସାରେ ସମ୍ପନ୍ନ କରାଯାଇଥାଏ । ଏହି ଅଞ୍ଚଳରେ ବ୍ରାହ୍ମଣ, କ୍ଷତ୍ରିୟ, କରଣ, ପାଇକ, ବାଙ୍ଗଟି, ମାଳୀ, ଗଉଡ଼, ସଚନାମୀ, ଘାସୀ, ଡମ, ଗଣ୍ଡା, ସୁନାରି, କମାର, ଗୁଡ଼ିଆ, ବଢ଼େଇ, କୁମ୍ଭାର, ଭଣ୍ଡାରି, ଧୋବା ଆଦି ବିଭିନ୍ନ ଜାତି ସମ୍ପ୍ରଦାୟର ଲୋକ ବସବାସ କରନ୍ତି । ଏହି ରାଜ୍ୟର ଏକ ତୃତୀୟାଂଶ ହେଉଛନ୍ତି ଆଦିବାସୀ । ଅନେକ ସାମାଜିକ ପ୍ରଥାକୁ ଏହି ଅଞ୍ଚଳରେ ବିଶେଷ ଗୁରୁତ୍ୱ ଦିଆଯାଇଥିବାର ମଧ୍ୟ ଦେଖିବାକୁ ମିଳେ । ଏଠାରେ ମୁଖ୍ୟ ଆକର୍ଷଣ ହେଉଛି କୁଶାବେରା ପ୍ରଥା, ସବୁ ଦୃଷ୍ଟିରୁ ଦେଖିବାକୁ ଗଲେ ଖଡ଼ିଆଳ ଅଞ୍ଚଳର ଲୋକ ସଂସ୍କୃତିର ସ୍ଥାନ ଓଡ଼ିଶାରେ ସ୍ୱତନ୍ତ୍ର ଅଟେ । ଏହିପରି ଭାବରେ ବହୁ ଅଞ୍ଚଳର ଲୋକ ସଂସ୍କୃତିକୁ ନେଇ ଆମ ସଂସ୍କୃତି ଗଢ଼ିଉଠିଛି, ଯାହା ଚିରନବୀନ, ସରସ ଓ ସୁନ୍ଦର ଅଟେ । ଯାହାର ବିଳୟ ନାହିଁ, ଯାହାର କ୍ଷୟ ନାହିଁ ।

ଓଡ଼ିଶାର ରାଜନୈତିକ ଇତିହାସ ଦୃଷ୍ଟିରୁ ପଞ୍ଚଦଶ ଓ ଷୋଡ଼ଶ ଶତାବ୍ଦୀ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ । ଏହି ସମୟରେ ଜନ୍ମଗ୍ରହଣ କରିଥିଲେ ମହାନ୍ ବ୍ୟକ୍ତିତ୍ୱ ସମ୍ପନ୍ନ କବି ମହାକବି ଓ ଆଦିକବି ସାରଳା ଦାସ । ତାଙ୍କ ଆବିର୍ଭାବର ପଚାଶ ବର୍ଷ ମଧ୍ୟରେ ଜନ୍ମଗ୍ରହଣ କରିଥିଲେ 'ଦାଣ୍ଡି ରାମାୟଣ'ର ରଚୟିତା ଭକ୍ତକବି ବଳରାମ ଦାସ । ତାଙ୍କ ରଚନାଟିରେ ଓଡ଼ିଆ ଲୋକ ସଂସ୍କୃତିର ଚରମ ନିଦର୍ଶନ ଦେଖିବାକୁ ମିଳେ । ଲୋକ ଜୀବନର ଧାରା ପରିବାରରେ ଅନୁଷ୍ଠିତ ପୂଜା, ପାର୍ବଣ, ବ୍ରତ, ଜାତକର୍ମ, ବିବାହ, ବନ୍ଦାଣ ଓ ମୃତାଦି କ୍ରିୟା ଆଦିରେ ଲୋକାଚାରର ସ୍ୱରୂପ ପ୍ରକାଶ ପାଏ । ଏଭଳି ପାରିବାରିକ କ୍ରିୟାକର୍ମ ଭିତରେ ବଳରାମ ଦାସ ଲୋକାଚାରର ରୀତିମାନ 'ଦାଣ୍ଡି ରାମାୟଣ'ରେ ବର୍ଣ୍ଣନା କରିଛନ୍ତି । ଷୋଡ଼ଶ ଶତାବ୍ଦୀରେ ପ୍ରଚଳିତ ଏହି ଲୋକାଚାରର ଓ ସଂସ୍କାରର ଯେଉଁଭଳି ରୂପ ନେଉଥିଲା ତାହା ବଳରାମ ଦାସଙ୍କ 'ଦାଣ୍ଡି ରାମାୟଣ'ର ଜୀବନ୍ତ ଅଭିବ୍ୟକ୍ତି ଲାଭ କରିଛନ୍ତି । ଆଚାର କେବଳ ଜନଜୀବନର ପ୍ରବହମାନ ଧାରା ନୁହେଁ । ଶାସ୍ତ୍ରରେ ଆଚାରକୁ ପରମ ଧର୍ମ ବୋଲି କୁହାଯାଇଛି । ଆଚାରରୂପୀ ବୃକ୍ଷର ମୂଳ ହେଉଛି ଧର୍ମ, ଧନ ଏହାର ଶାଖା, ମନୋରଥ ଏହାର ପୁଷ୍ପ ଓ ମୋକ୍ଷ ଏହାର ଫଳ । ଏହି ଚତୁଃଭଦ୍ର ରୂପ ଆଚାର ବୃକ୍ଷର ଯେ ସେବା କରେ, ସଂସାରରେ ସେ ହିଁ ପୁଣ୍ୟର ଭାଗି ହୋଇଥାଏ । ଆଚାର ଧର୍ମର ପରିପୁଷ୍ଟି ତଥା ପୁଷ୍ପଲତା ନିମିତ୍ତ ତ୍ୟାଗ, ନିଷ୍ଠା ଓ ଚରିତ୍ରାଦି ଉତ୍କୃଷ୍ଟ ମାନବୀୟ ଗୁଣର ଅଭିବୃଦ୍ଧି ଆବଶ୍ୟକ । ଆଚାରହୀନ ହେଲେ ମହାଲକ୍ଷ୍ମୀ ବିମୁଖ ହୁଅନ୍ତି । ଆଚାର ପାଳନ ଦ୍ୱାରା ସମସ୍ତ ଦୁଃଲକ୍ଷଣଃ ଦୂରୀଭୂତ ହୁଏ । ଓଡ଼ିଶାର ଜନଜୀବନରେ ଏ ବିଶ୍ୱାସ ଦୃଢ଼ ଅଟେ । ଆଚାରରେ ଲକ୍ଷ୍ମୀ, ବିଚାରରେ ପଣ୍ଡିତ ଏହା ଓଡ଼ିଶାର ଲୋକୋକ୍ତି ଅଟେ । କେତେକ

ଲୋକବାକ ଉତ୍କଳୀୟ ଜନଜୀବନକୁ ନିୟନ୍ତ୍ରିତ କରି ତାହାକୁ ଲୋକାଚାରରେ ପରିଣତ କରି ଦେଉଛି । 'ଦାଣ୍ଡି ରାମାୟଣ'ରେ ବଳରାମ ଦାସ ଏସବୁ କଥାକୁ ଅତ୍ୟନ୍ତ ସୁନ୍ଦର ସାବଲୀଳ ଭାବରେ ପରିପ୍ରକାଶ କରିଛନ୍ତି । ଦୈବବାରୀ, ସତ୍ୟରକ୍ଷା, ତୀର୍ଥତ୍ୱ ଇତ୍ୟାଦି ଓଡ଼ିଆ ଲୋକ ସଂସ୍କୃତି ସହିତ ଅଙ୍ଗାଅଙ୍ଗୀ ଭାବେ ଜଡ଼ିତ । ପର୍ବପର୍ବାଣି, ଆଚାର, ବ୍ୟବହାର, ରୀତି, ନୀତି, ଧାର୍ମିକ ବିଶ୍ୱାସ ଓ ପରମ୍ପରା, ଖାଦ୍ୟପେୟ, ବେଶଭୂଷା, ଚଳଣି ଇତ୍ୟାଦି ଦ୍ୱାରା ଲୋକ ସଂସ୍କୃତି ପର୍ଯ୍ୟବସିତ । ତେଣୁ 'ଦାଣ୍ଡି ରାମାୟଣ'ରେ ପରିବେଷିତ ସମସ୍ତ ଘଟଣାବଳୀ ଉତ୍କଳୀୟ ପରମ୍ପରାଶ୍ରୟରେ ପରିବେଷିତ ସମସ୍ତ ଘଟଣାବଳୀ ଉତ୍କଳୀୟ ପରମ୍ପରାନୁସାରେ ରଚିତ ହୋଇଥିବାରୁ ଓଡ଼ିଶାର ଲୋକ ସଂସ୍କୃତି ଇତିହାସରେ ଏହା ଏକ ମାଇଲଖୁଣ୍ଟ ସଦୃଶ ଅଟେ । ବଳରାମ ଦାସଙ୍କ ରଚିତ ସମସ୍ତ ରଚନାଗୁଡ଼ିକ ମୁଖ୍ୟତଃ ଉତ୍କଳୀୟ ସଂସ୍କୃତି ଉପରେ ପର୍ଯ୍ୟବସିତ ଅଟେ ।

### ଓଡ଼ିଆ ଲୋକ ସଂସ୍କୃତିରେ ଓଷାବ୍ରତ ଓ ଲୋକାଚାର

'ଓଷା' ଲୌକିକ ପୂଜାବିଧି ହୋଇଥିବାବେଳେ 'ବ୍ରତ' ଶାସ୍ତ୍ରୀୟ ଅନୁଷ୍ଠାନ ଭାବରେ ବିବେଚନା କରାଯାଏ । ସମାଜରେ ଲୋକମାନଙ୍କର ଆଚାରବିଚାରକୁ ଲୋକାଚାର କୁହାଯାଏ । ଲୋକ ସଂସ୍କୃତିର ଏହା ହେଉଛି ଅବିଚ୍ଛିନ୍ନ ଅଙ୍ଗ । ଓଷାବ୍ରତ କଥାଗୁଡ଼ିକ ଲୋକଙ୍କ ନିମନ୍ତେ ଓ ଲୋକମାନଙ୍କ ଦ୍ୱାରା ସୃଷ୍ଟି ହୋଇଛି । ଆମ ରାଜ୍ୟରେ ପାଳିତ ହୋଇଆସୁଥିବା ଓଷାବ୍ରତ ଏବଂ ତତ୍‌ସମ୍ବନ୍ଧୀୟ କଥାଗୁଡ଼ିକ ଓଡ଼ିଆ ଜନଜୀବନ ଓ ପରମ୍ପରା ତଥା ସଂସ୍କୃତିର ସ୍ପଷ୍ଟ ଚିତ୍ର ପ୍ରଦାନ କରିଥାଏ । ଜନସାଧାରଣ ଓଷାବ୍ରତକୁ ନିଷ୍ଠାର ସହିତ ପାଳନ କରିବା ସଂଗେ ସଂଗେ ଶ୍ରଦ୍ଧା ଓ ଭକ୍ତିର ସହିତ ଶୁଣି ତାହା ଉପରେ ଅଟଳ ବିଶ୍ୱାସ ଏବଂ ଆସ୍ଥା ସ୍ଥାପନ କରିଆସୁଥିବାର ପରିଦୃଷ୍ଟ ହୁଏ । ଓଡ଼ିଆ ଓଷାବ୍ରତ କଥାଗୁଡ଼ିକରେ ଲୋକାଚାର, ଲୋକ ବିଶ୍ୱାସ ଏବଂ ଲୋକଗୀତ ତଥା ଲୋକକଥା ଇତ୍ୟାଦିର ଏକ ମିଶ୍ରରୂପ ପରିଦୃଷ୍ଟ ହୁଏ । ସେହିପରି ଲୋକାଚାର ପାଳନ ଦ୍ୱାରା ମଣିଷ କେବଳ ପାରିବାରିକ ଜୀବନ ନୁହେଁ ସାମାଜିକ ଜୀବନକୁ ସହଜ, ସରଳ, ସୁନ୍ଦର ଓ ଶୃଙ୍ଖଳିତ କରିଥାଏ । ନୀତିନିୟମକୁ ଆଧାର କରି ସମାଜରେ ବ୍ୟକ୍ତି ଜୀବନକୁ ସୁସ୍ଥ, ସୁନ୍ଦର, ମଙ୍ଗଳମୟ କରିବା ପାଇଁ ଲୋକାଚାରର ଭୂମିକା ଅତ୍ୟନ୍ତ ମନୋରମ । ବିବାହ, ସନ୍ତାନ ଜନ୍ମ, ଅନ୍ତ୍ୟେଷ୍ଟିକ୍ରିୟା, ବ୍ରତୋପନୟନ, ଅପୁତ୍ରିକ ଦୋଷ, ନାରୀମାନଙ୍କର ଆଚାର ଆଦି ଲୋକାଚାରଗୁଡ଼ିକ ଆମ ସମାଜରେ ପ୍ରଚଳିତ । ଏ ସମସ୍ତ ଲୋକାଚାର ଆମ ସାମାଜିକ ଜୀବନର ନିୟନ୍ତ୍ରକ । ଏକ ଶୃଙ୍ଖଳାବଦ୍ଧ ସାମାଜିକତା ସୃଷ୍ଟି କରିବାର ଅଲିଖିତ ସମ୍ବିଧାନ ହେଉଛି ଲୋକାଚାର । ଓଷାବ୍ରତ କଥାଗୁଡ଼ିକ ମୁଖ୍ୟତଃ ଲୋକ ସଂସ୍କୃତି, ନୈତିକ ସଂସ୍କୃତି ଓ ବୌଦ୍ଧ ସଂସ୍କୃତି ଦ୍ୱାରା ପ୍ରଭାବିତ । ଓଷାବ୍ରତ କଥାଗୁଡ଼ିକ ଲୋକ ବିଶ୍ୱାସର ଜୀବନ୍ତ ରୂପ ଭାବରେ ପରିବାର ସମାଜ ତଥା ରାଷ୍ଟ୍ରରେ ମଧ୍ୟ ମଙ୍ଗଳ କାମନା କରିଥାଏ । ଆମ ଉତ୍କଳୀୟ ସଂସ୍କୃତିରେ ପାଳିତ ହେଉଥିବା ଓଷାବ୍ରତଗୁଡ଼ିକ ମଧ୍ୟରୁ ବଡ଼ ଓଷା, ଜହ୍ନିଓଷା, ନେତଓଷା, କାଞ୍ଜିଅଁଳା ଓଷା, ଷଠୀ ଓଷା, ତୁଧେଇ ଓଷା ଇତ୍ୟାଦି ଏବଂ ସୋମନାଥ ବ୍ରତ, କୁକ୍କୁଟୀ ବ୍ରତ, ଅନନ୍ତ ବ୍ରତ, ଜନ୍ମାଷ୍ଟମୀ ଓ ରାଧାଷ୍ଟମୀ ବ୍ରତ, ରବିନାରାୟଣ ବ୍ରତ ଇତ୍ୟାଦି ଅତି ଲୋକ ପ୍ରଚଳିତ ଅଟେ । ଓଷାବ୍ରତ ଓ ଲୋକାଚାର ଆମ ସଂସ୍କୃତିର ଏକ ବିଶିଷ୍ଟ ଦିଗ କହିଲେ ଅତ୍ୟୁକ୍ତି ହେବ ନାହିଁ ।

### ଓଡ଼ିଆ ଲୋକ ସଂସ୍କୃତିରେ ପ୍ରବାଦ-ପ୍ରବଚନ

ସାଂସ୍କୃତିକ ଅବଧାରଣାର ଶ୍ରେଷ୍ଠତମ ଆବେଦନରୁ ଆତ୍ମପ୍ରକାଶ ପ୍ରବାଦ-ପ୍ରବଚନର । ଲୋକ ଜୀବନର ସୁବିସ୍ତୃତ ଅନୁଭବ ତଥା ସାମୂହିକ ଅବବୋଧର ଏକ ପ୍ରତିକିତ ଭାବ ବିନ୍ୟାସ ହେଉଛି ପ୍ରବାଦ । ଗୋଟିଏ ଦିଗରେ ଏହା ଆକ୍ଷରିକ ଅର୍ଥ ବହନ କରୁଥିବା ସ୍ଥଳେ, ଅନ୍ୟ ଦିଗରେ ଏହା ଇଙ୍ଗିତାତ୍ମକ ଭାବରେ ଅଖଣ୍ଡ ସତ୍ୟକୁ ପ୍ରତିପାଦିତ କରିଥାଏ ।

ପଦ ସଂହତିକୁ ପ୍ରବାଦ କୁହାଯାଉଥିବାବେଳେ ନୈତିକ ଶିକ୍ଷାର ଭାସ୍ୟ ରୂପ ହେଉଛି ପ୍ରବଚନ । ଆମ ସଂସ୍କୃତିରେ ପ୍ରବାଦ-ପ୍ରବଚନ ଏ ଦୁଇଟି ପରମ୍ପରାଗତ । ଅଭିଜ୍ଞତାଭିତ୍ତିକ ରୂଢ଼ ଚେତାବନୀ ବା ଉପଦେଶ କେତେବେଳେ ଅଳ୍ପ କେତୋଟି ପଙ୍‌କ୍ତିର ସରଳ ପଦ୍ୟାକାରରେ ତ କେତେବେଳେ ଅବା ରୂପକ ଭାବରେ ଏବଂ କେତେବେଳେ ସଂକ୍ଷିପ୍ତ ଅଥଚ ସିଧାସଳଖ ସାଧା କଥାରେ ପ୍ରକାଶ ପାଇଥାଏ । ଲୋକ ସମାଜରେ କାହାଣୀଭିତ୍ତିକ ପ୍ରବାଦର ପ୍ରଚଳନ ପରିଲକ୍ଷିତ ହୋଇଥାଏ । ଲୋକସାହିତ୍ୟର ଅନ୍ୟାନ୍ୟ ଶାଖା ପରି ପ୍ରବାଦ-ପ୍ରବଚନ ବ୍ୟକ୍ତିବିଶେଷଙ୍କ ଅଭିଜ୍ଞତାରୁ ସୃଷ୍ଟ । ସମାଜରେ ଶୃଙ୍ଖଳା, ଅନୁଶାସନ ଏବଂ ସଂସ୍କାରକାମୀ ଉଦ୍ଦେଶ୍ୟଟି ହେଉଛି ପ୍ରବାଦ-ପ୍ରବଚନର ମୂଳମନ୍ତ୍ର । ଚାରିତ୍ରିକ ଅବକ୍ଷୟ, ଲୋକ ଜୀବନର ଅଧୋଗତି ଏବଂ ସାମାଜିକ ମୂଲ୍ୟବୋଧର ବିଡ଼ମ୍ବନାକୁ ସମାଧାନର ଉଦ୍ଦେଶ୍ୟ ରଖି ସୁସ୍ଥ ସମାଜବୋଧର ପରିକଳ୍ପନା ଏହାର ଲକ୍ଷ୍ୟ । ପ୍ରବାଦ-ପ୍ରବଚନରେ ନୈତିକ ଆଦର୍ଶର ପ୍ରଚାର ହୁଏ ନାହିଁ । ଏହା ଦୈନନ୍ଦିନ ଜୀବନର ସମସ୍ୟା ଓ ଅଭିଜ୍ଞତା ସମ୍ପର୍କିତ । ପ୍ରବାଦ-ପ୍ରବଚନ ଈଶ୍ୱର ବିଶ୍ୱାସ, ଜୀବନ ଦର୍ଶନ, ସାମାଜିକ ରୀତିନୀତି, ପାରିବାରିକ ସମ୍ପର୍କ, କୃଷି, ବାଣିଜ୍ୟ, ସ୍ୱାସ୍ଥ୍ୟ, ଶିକ୍ଷା ବିଷୟକମାନ ଏଥିରେ ପ୍ରଚଳିତ । ପ୍ରବଚନରେ ଛନ୍ଦର ବୈଚିତ୍ର୍ୟ, ରସର ପ୍ରୟୋଗ, ଅଳଙ୍କାରର ସମାବେଶ, ଭାଷାତାତ୍ତ୍ୱିକ ମୂଲ୍ୟବୋଧ ଆଦି ବିଶେଷ ଭାବରେ ପରିଦୃଷ୍ଟ ହୋଇଥାଏ ।

୧. ଅଧର୍ମ ବିତ୍ତ ବଢ଼େ ବହୁତ
ଗଲାବେଳେ ଯାଏ ମୂଳ ସହିତ
କର୍ମ କଷଣ ଦେହ ସହେ
ଅରଣ୍ୟେ ଅଜଗର ପ୍ରାୟେ ।
୨. ଛି ଛି ଲୋ ପୋଚା ପଇଡ଼
ଭାସି ଯାଉଥିଲୁ ମଝି ନଈର
ଧରି ଆଣିଥିଲି ତତେ
ଟାପୁଆ ଗାଲରେ ମାଉଁସ ଲାଗିଲା
ଜବାବ ଦେଉଛୁ ମୋତେ ।

ଏହିପରି ଅନେକ ପ୍ରବାଦ-ପ୍ରବଚନ ରହିଛି, ଯାହା ଆମର ଜାତୀୟ ସମ୍ପତ୍ତି । ସାହିତ୍ୟର ବିଭିନ୍ନ ବିଭାଗ ଅପେକ୍ଷା ଏହା ବୈଚିତ୍ର୍ୟମୟ ଓ ବର୍ଣ୍ଣିଳ ।

### ଓଡ଼ିଆ ଲୋକ ସଂସ୍କୃତିରେ ଲୋକଗୀତ

ଅନାହତ ଆବେଗର ଛନ୍ଦୋୟିତ ମୂର୍ଚ୍ଛନାରେ ଶହଶହ ବର୍ଷର ପ୍ରାଚୀନ ପରମ୍ପରା ଭିତରୁ ସ୍ୱତଃସ୍ଫୁର୍ତ ଭାବରେ ପ୍ରକାଶିତ ହୋଇ ପିଢ଼ି ପରେ ପିଢ଼ି ଅତିକ୍ରମ କରି ଲୋକ ଜୀବନର ସ୍ମୃତିରେ ଲୋକଗୀତ ନିରବଚ୍ଛିନ୍ନ ଭାବରେ ଅନୁରଣିତ ହୋଇ ସତ୍ୟର ବିଭବରେ ମହିମାନ୍ୱିତ ହୋଇଥାଏ । ଲୋକଗୀତ ବାସ୍ତବତାର ପୂଜାରୀ । ଯେଉଁଠି ଛଳନା, କପଟତା, ଅଭିଯୋଗ, ଆଶା କି ସାଧନାର ଉତ୍ତରଣରେ ଅହଂକାର ନ ଥାଏ । କେବଳ ଥାଏ ତ ଛଳ ଛଳ ଆବେଗିକ ଭାବପ୍ରବଣତା, ଅବଚେତନ ମନର ଅମଳିନ ପ୍ରତିଫଳିତ । ଗ୍ରାମାଞ୍ଚଳରେ ଥିବା ଅପାଠୁଆ ଅଥଚ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ବ୍ୟକ୍ତିଙ୍କ ଦ୍ୱାରା ଏହି ଲୋକଗୀତର ସୃଷ୍ଟି । ଲୋକଗୀତ ଜୀବନରସର ପ୍ରାଚୁର୍ଯ୍ୟରେ ଭରପୂର । ଅଧିକାଂଶ ଲୋକଗୀତରେ ଲୋକମାନଙ୍କର ବିଶ୍ୱାସ ଅନୁଭୂତି ଏବଂ ଚିନ୍ତନ ପ୍ରତିଫଳିତ ହୋଇଥାଏ । ଭିନ୍ନଭିନ୍ନ ପରିବେଶରେ ଏହା ଭିନ୍ନଭିନ୍ନ ହୋଇଥାଏ । ଲୋକଗୀତ ଅଧିକାଂଶ ଧର୍ମନିରପେକ୍ଷ । ପୌରାଣିକ ଗାଥା, ଶ୍ରୀକୃଷ୍ଣଙ୍କ ଗୀତ ଲୋକଗୀତର ଉପଜୀବ୍ୟ । ଏହି ଗୀତର ରଚୟିତା ଉଭୟ ସ୍ତ୍ରୀ ଓ ପୁରୁଷ । ମାତ୍ର ଉଭୟଙ୍କ ଗୀତର ସ୍ଥାନ ଭିନ୍ନ ଭିନ୍ନ । ସ୍ତ୍ରୀ ଗୀତର ଭାଷା ଲଳିତ ଏବଂ ଶ୍ରୁତି ମଧୁର । ଏଥିରେ ଛୋଟ ଛୋଟ ଘରକରଣା କଥା, ଢଗଢ଼ମାଳି, ଅନୁଭୂତିମୂଳକ କଥା, ବାରମାସୀ ଗୀତ, ପୁଚିଖେଳ ଗୀତ, କାନ୍ଦଣା ଗୀତ, ପିଲାବୁଲାଣିଆ ଗୀତ ଓ ବିବାହ ଗୀତ ନାରୀମାନଙ୍କ ଦ୍ୱାରା ସୃଷ୍ଟି ହୋଇଥାଏ । ଲୋକଗୀତକୁ ନାରୀଙ୍କ ଅବଦାନ ଅତୁଳନୀୟ । ପୁରୁଷମାନଙ୍କର ଗୀତର

ବୃତ୍ତି ଦୀର୍ଘ । ଭାଷା ଅପେକ୍ଷାକୃତ କର୍କଷ, ଆବେଗ ଓ ଅଧିକାଂଶ ଗୀତ କବିର ସହଚର ହୋଇଥାଏ । ସ୍ୱର ସଂଯୋଜନା ହେଉଛି ଲୋକଗୀତର ପ୍ରାଣ । ଏହାକୁ ଶୁଣିଶୁଣି ଶିକ୍ଷା କରାଯାଏ । ଲୋକଗୀତ ଯୁଗ ଯୁଗ ବ୍ୟାପି ସଭ୍ୟତାର ବାହାକ ଏବଂ ସ୍ମାରକୀ ଓ ଆମ ଜାତୀୟ ଜୀବନର ପ୍ରତୀକ । ମାତୃଭାଷାର ପ୍ରକୃତ ସ୍ୱରୂପ ଏଥିରେ ପ୍ରକାଶିତ ।

୧. ଦୁବ ବଢୁଥିଲା କାକର ଖାଇ
ମୁଁ ତ ବଢୁଥିଲି ତୋ ସ୍ନେହ ପାଇ
ଦୁବକୁ କାକର ସହିଲା ନାହିଁ
ମୋ ଅଳି ଅଳତ ରହିଲା ନାହିଁ ।

୨. ହୁମୁରା ଭାଇରେ ହୁଁ
ଖବଡ଼ ଖାଡ଼ରେ ହୁଁ
ଧବଡ଼ ଧାଡ଼ିରେ ହୁଁ
ପାଣି କାଦୁଅରେ ହୁଁ ।

ଏହିପରି ଅନେକ ଲୋକଗୀତ ରହିଛି ଯାହାର ପ୍ରତିଟି ଧାଡ଼ି ହୃଦୟସ୍ପର୍ଶୀ ଓ ସୁମଧୁର ଅଟେ । ଧାନକଟା, ଗାଡ଼ିଚଲା, ଛାତପିଟା, ସବାରିବୁହା, ନାଆଚଲା ପ୍ରଭୃତି କାର୍ଯ୍ୟ ସମୟରେ ଅନେକ ଗୀତ ବୋଲାଯାଏ । ଓଡ଼ିଆ ଲୋକଗୀତରେ ଜାତୀୟ ଚିତ୍ର ଫୁଟିଉଠିଛି । ଓଡ଼ିଆ ସ୍ୱଭାବତଃ ଶାନ୍ତିପ୍ରିୟ ଧର୍ମପ୍ରବଣ ଓ ରକ୍ଷଣଶୀଳ । ଲୋକଗୀତରେ ପ୍ରେମପ୍ରଣୟର ଚିତ୍ର, କର୍ମବାଦ, ପିତୃପୁରୁଷଙ୍କ ପ୍ରତି ଭକ୍ତି, ବେଶଭୂଷା, ଧାର୍ମିକ ଅନୁଚିନ୍ତା, ବୁଦ୍ଧି ପରୀକ୍ଷା ପରି ଅନେକ ଦିଗ ପ୍ରତି ଲୋକଗୀତ ସଚେତନ ରହି ଅସଂଖ୍ୟ ଗୀତ ଜନମାନସର ମାନସପଟ୍ଟକୁ ଆନ୍ଦୋଳିତ ଓ ବିହ୍ୱଳିତ କରିପାରିଛି ।

### ଓଡ଼ିଆ ଲୋକ ସଂସ୍କୃତିରେ ଲୋକଗଳ୍ପ

ଲୋକଗଳ୍ପ ଏକ ଜୀବନ୍ତ ଶିଳ୍ପକର୍ମ । ଗଳ୍ପ ଶୁଣିବା ଓ କହିବା ମଣିଷର ସହଜାତ ପ୍ରବୃତ୍ତି । ଲୋକଗଳ୍ପର ମୁଖ୍ୟ ଉଦ୍ଦେଶ୍ୟ ହେଉଛି ଆତ୍ମପ୍ରକାଶ ଓ ଆନନ୍ଦପ୍ରାପ୍ତି । କ୍ଲାନ୍ତ, ଶାନ୍ତ ମଣିଷ ପାଇଁ ଲୋଡ଼ା ହୁଏ ଟିକେ ଆଶ୍ୱାସନା, ଯାହା ପ୍ରାଣରେ ଭରିଦିଏ ପ୍ରତ୍ୟୟ ଓ ପ୍ରତିଶ୍ରୁତି । ମାନବ ଜୀବନ ସହିତ ଏହା ଖୁବ୍ ନିବିଡ଼ । ଲୋକଗଳ୍ପ ଅଝଟ ପିଲାଟି ପାଇଁ ଏକ ମହୋଷଧି । ଲୋକଗଳ୍ପ ଆଧୁନିକ ଗଳ୍ପଠାରୁ ସମ୍ପୂର୍ଣ୍ଣ ଭିନ୍ନ ଅଟେ । ଲୋକଗଳ୍ପରେ ସାମ୍ପ୍ରଦାୟିକତାର ସ୍ପର୍ଶ ନ ଥାଏ । ସଂକୀର୍ଣ୍ଣ ଆଞ୍ଚଳିକ ସଂସ୍କୃତିର ପରିଚୟ ନଥାଏ । ନିର୍ଦ୍ଦିଷ୍ଟ ବହିଃପ୍ରକୃତିର ଚିତ୍ରଣ ନ ଥାଏ । ସମାଜ ବା ଜାତୀୟ ବୈଶିଷ୍ଟ୍ୟର ସୂଚନା ନ ଥାଏ । 'ଏହା ବିଶ୍ୱ ପର୍ଯ୍ୟଟକ, ବିଶ୍ୱଶ୍ରୁତି, ଏହାର ଗତିପଥ, ବିଶ୍ୱମନ ଏହାର ବିହାର ଭୂମି, ବିଶ୍ୱ ମାନବିକତା ଏହାର ଆଦର୍ଶ ।' ଲୋକ ଜୀବନ, ଲୋକ ସଂସ୍କୃତି, ଲୋକ ଧର୍ମ, ଲୋକର ଆଚାରବିଚାର, ଲୋକ ହୃଦୟର ସରଳ ଶ୍ରୁତିପୂତ ବିଶ୍ୱାସ, ଏହାଛଡ଼ା ଦେବତା, ଭୂତ, ପ୍ରେତ, ବେତାଳ, ଯକ୍ଷ, ଅପ୍‌ସରା, ଅସୁର, ଐନ୍ଦ୍ରଜାଲିକ, କିମ୍ବଦନ୍ତୀମୂଳକ, ଓଷାବ୍ରତ କଥା, ସନ୍ଥ ଓ ଭକ୍ତ କଥା, ସତ୍ୟନାରାୟଣ ପୂଜା କଥା, ମାହାତ୍ମ୍ୟ ଆଦି କଥା ଲୋକ ସଂସ୍କୃତି ସହିତ ଖୁବ୍ ନିବିଡ଼ ସ୍ପନ୍ଦନ ରହିଛି । ଲୋକଗଳ୍ପ ଗୋଟିଏ ପୂର୍ଣ୍ଣାଙ୍ଗ ଘଟଣାର ଉପସ୍ଥାପନା କରିଥାଏ । ଲୋକଗଳ୍ପରେ ପଶୁପକ୍ଷୀ, ବୃକ୍ଷଲତା ଓ ନିର୍ଜୀବ ବସ୍ତୁ ମଧ୍ୟ ବେଳେବେଳେ ମୁଖ୍ୟ ଚରିତ୍ର ଭାବରେ ଗଳ୍ପରେ ଆସିଥାନ୍ତି । ବାସ୍ତବତା ଅପେକ୍ଷା ଅଲୌକିକତାର ସ୍ପର୍ଶ ଲୋକଗଳ୍ପରେ ଅଧିକ ଗୁରୁତ୍ୱ । ଏଥିରେ କେବେ କେବେ ଚମତ୍କାରିତା ଦୃଷ୍ଟିରୁ ଅତିରଞ୍ଜିତ କରି କଥା କୁହାଯାଏ । ଯେମିତି– ରାକ୍ଷସମାନେ ତାଳ ଗଛ ପରି ଭୟ, ଆଉ ନିଆଁ ମୁଣ୍ଡା ପରି, ଦାନ୍ତ କାନ ଖୁବ୍ ଦୀର୍ଘ । ସେମିତି ରାଜକନ୍ୟାମାନେ ଅନିନ୍ଦ୍ୟ ସୁନ୍ଦରୀ ହସିଲେ ମୁକ୍ତା ଝରିପଡ଼େ । ଚାଲିରେ ପଦ୍ମଫୁଟେ, କାଶି ଦେଲେ ହୀରା ଝରିପଡ଼େ । ପ୍ରକୃତିର ଚିତ୍ତାକର୍ଷକ ବର୍ଣ୍ଣନା ମଧ୍ୟ ଗଳ୍ପରେ ଦେଖିବାକୁ ମିଳେ । ଯେମିତି ଅଗନାଅଗନି ବନସ୍ତର କଥା, ପତର ପଡ଼ିଲେ ପଥର ପଡ଼ିଲା ପରି ଶୁଭେ ଇତ୍ୟାଦି । ବାଘର ଗର୍ଜନ, ପକ୍ଷୀର କୂଜନ, ଛୋଟ ପିଲାର କାନ୍ଦ ସ୍ୱର, ଏପରି ଅନେକ ଅନୁକରଣର ସ୍ୱର ମଧ୍ୟ ଲୋକଗଳ୍ପକୁ ଆହୁରି ଋଦ୍ଧିମନ୍ତ କରିଦିଏ ଶୁଣିବା ସମୟରେ । ବାସ୍ତବତାର

କୌଣସି ମହତ୍ତ୍ୱ ଲୋକଗଳ୍ପ ରଖେ ନାହିଁ । ଚରିତ୍ରମାନଙ୍କଠାରେ ନିଜର ସ୍ୱପ୍ନକୁ ଆରୋପଣ କରିବା ଲୋକଗଳ୍ପର ବୈଶିଷ୍ଟ୍ୟ । ଏହା ଚିର ପରିବର୍ତ୍ତନଶୀଳ ମୁଖରୁ ମୁଖକୁ ପ୍ରବାହିତ ହେଲାବେଳେ ଜନଶ୍ରୁତିର ଗନ୍ତାଘର ହେଉଛି ଲୋକଗଳ୍ପ । କଳ୍ପନାର କୁଶଳ କାରିଗର ହେଉଛି ଲୋକଗଳ୍ପ । ଶବ୍ଦବିନ୍ୟାସରେ ସ୍ୱଚ୍ଛନ୍ଦତା, ଉପସ୍ଥାପନାରେ ନାଟକୀୟତା, ଭାଷାର ଚାତୁର୍ଯ୍ୟ ଆଦି ଲୋକଗଳ୍ପର ମୌଳିକତା । ଲୋକଗଳ୍ପ, ଲୋକ ସଂସ୍କୃତିରୁ ଏକ ସୁନ୍ଦର ଅତୀତ ହେଲେ ମଧ୍ୟ ଏହା ଚିରନବୀନ, ସାର୍ବଜନୀନ ଓ ସର୍ବକାଳୀନ ଅଟେ ।

### ଓଡ଼ିଆ ଲୋକ ସଂସ୍କୃତିରେ ଲୋକ ନାଟକ

ଲୋକମାନଙ୍କର ରୁଚି ଓ ଲୋକମାନଙ୍କର ଦୃଷ୍ଟିକୁ ଲକ୍ଷ୍ୟ କରି ଲୋକ ନାଟକର ପରିକଳ୍ପନା କରାଯାଇଛି । ଲୋକ ନାଟକ ଚିରକାଳ ବାସ୍ତବମୁଖୀ । ଏହା ଲୋକଜୀବନକୁ ଅତ୍ୟନ୍ତ ବିଶ୍ୱସ୍ତ ଭାବରେ ଅନୁସରଣ କରି ବିକାଶର ସମ୍ଭାବନା ଦିଗଟିକୁ ପରିପ୍ରକାଶ କରିବାରେ ଲୋକ ନାଟକର ଗୁରୁତ୍ୱ ଢେର ବେଶି । ଲୋକ ନାଟକର ହାସ୍ୟରସ ଉପରେ ବିଶେଷ ଦୃଷ୍ଟି ରହିଥାଏ । ମାନବ ସଭ୍ୟତାର ପ୍ରାଚୀନତା ଭଳି ନାଟକର ଉତ୍ପତ୍ତି ଖୁବ୍ ପ୍ରାଚୀନ । ସମସ୍ୟାବହୁଳ ଜୀବନରେ ରସର ଅନ୍ୱେଷଣ ପଲ୍ଲୀପ୍ରାଣ ଜନତା କରୁ କରୁ ତା'ର ମାନସମନ୍ଥନରୁ ଲୋକ ନାଟକରୂପୀ ଅମୃତର ସୃଷ୍ଟି । ଦିନେ ଲୋକଙ୍କ ସଭ୍ୟତା, ସଂସ୍କାର, ପରମ୍ପରା ମଧ୍ୟରେ ଉଙ୍କି ମାରିଥିଲା ଲୋକ ନାଟକ ଏବଂ ପରବର୍ତ୍ତୀ ସମୟରେ ଲୋକଜୀବନର ପ୍ରତିଚ୍ଛବି ହୋଇ ଚରିନ୍ତନତାକୁ ଦର୍ଶାଇ ହାସ୍ୟ, ମନୋରଞ୍ଜନଧର୍ମୀତାରେ ଗୋଷ୍ଠୀ ଜୀବନ ସହିତ ଅନୁବନ୍ଧିତ ହୋଇରହିଛି । ଏକ ଉତ୍ସାହର ଓ କମନୀୟ ଲୋକ ଚେତନାର କାଳାତ୍ମକ ରୂପ ହେଉଛି ଲୋକ ନାଟକ । ଧର୍ମ, ଯଶବ୍ୟାପ୍ତି ଓ ନିରାମୟ ଜୀବନର କାମନା ସହିତ ଲୋକ ନାଟକ ବହନ କରିଛି ନୀତିଶିକ୍ଷା, ଉପଦେଶମୂଳକ ବାର୍ତ୍ତାଟିଏ, ଯାହା ଜନମଙ୍ଗଳର କାମନା ବାରି ହୋଇପଡ଼େ । ଲୋକଜୀବନର ପ୍ରାଣକୁ ତା'ର ବର୍ଣ୍ଣାଢ଼୍ୟ ପରିପାଟୀ, ସାଙ୍ଗୀତିକତା ଓ ସହଜ ଉତ୍ତେଜନା ସୃଷ୍ଟିକ୍ଷମ ସ୍ୱଚ୍ଛନ୍ଦ ରୂପ ମାଧ୍ୟମରେ ପୁଣି ସୃଜନଶୀଳ ବୃତ୍ତିକୁ ଶାଣିତ ଓ ମାର୍ଜିତ କରି ଗୋଷ୍ଠୀ ଜୀବନର ପ୍ରତିନିଧି ରୂପେ ଲୋକନାଟକ ପ୍ରିୟଭାଜନ ହୋଇ ଆହ୍ଲାଦ ପ୍ରଦାନ କରିଆସିଛି । ଲୋକ ନାଟକରେ ଚରିତ୍ରମାନେ ନିଜର ପରିଚୟ ନିଜେ ଦେଇଥାନ୍ତି ରସ ଆସ୍ୱାଦନକୁ ଦର୍ଶକ ସହଜ ଓ ସ୍ୱାଭାବିକ ଭାବରେ ବୁଝିବା ଉଦ୍ଦେଶ୍ୟ ରଖି । ଲୋକ ନାଟକ ଅଭିନୟରେ ପୁରୁଷମାନେ ଉଭୟ ନାରୀ ଓ ପୁରୁଷ ଚରିତ୍ରରେ ଅଭିନୟ କଲାବେଳେ ବିଶେଷ ମନୋରଞ୍ଜନ ଦର୍ଶକଙ୍କ ଦୃଷ୍ଟି ଆକର୍ଷଣ କରିଥାଏ । ଲୀଳା, ଯାତ୍ରା, ସୁଆଙ୍ଗ, ପାଲା, ଦାସକାଠିଆ, ଦଣ୍ଡନାଟ, ଛଉନୃତ୍ୟ, ଡାଲଖାଇ, କରମା ନାଚ, ଘୁମୁରା ନାଚ, ଝୁମର ନାଚ, କୈସାବାଡ଼ି ନୃତ୍ୟ, ଶୃଙ୍ଗ ନୃତ୍ୟ ପ୍ରଭୃତି ଲୋକନାଟକ ପରିବେଷଣ ସମୟରେ ମଧ୍ୟ ଦେଖିବାକୁ ମିଳେ । ଏହି ଲୋକ ନାଟକଗୁଡ଼ିକ ସାମାଜିକ ସଂସ୍କାରକୁ, ଧର୍ମାଚାରକୁ ଗୁରୁତ୍ୱ ଦେଇ ନୃତ୍ୟ, ଗୀତ, ବାଦ୍ୟଯନ୍ତ୍ରର କ୍ଷମତା ରକ୍ଷା କରି ଅଭିନୟାତ୍ମକ, ନୃତ୍ୟଭିତ୍ତିକ, ସଙ୍ଗୀତଭିତ୍ତିକ ଭାବରେ ନିଜର ପ୍ରତିଷ୍ଠା ଅର୍ଜନ କରିଥାଏ । ଜୟଦେବଙ୍କ 'ଗୀତଗୋବିନ୍ଦ' ନାଟ୍ୟଲୀଳା, ଅଭିନୟର ପ୍ରାରମ୍ଭିକ ଲିଖିତ ରୂପ, ରାମଲୀଳା, କୃଷ୍ଣଲୀଳା, ଭାରତ ଲୀଳା, କଣ୍ଢେଇ ନାଟ, ମୋଗଲ ତାମ୍‌ସା, ଚଇତିଘୋଡ଼ା ନାଟ, ଚଢ଼େୟା-ଚଢ଼େୟାଣୀ ନାଟ, କେଳାକେଳୁଣୀ ନାଟ ପ୍ରଭୃତି ମଧ୍ୟ ଖୁବ୍ ଲୋକପ୍ରିୟ । ବାଦ୍ୟଭିତ୍ତିକ ଲୋକ ନାଟକରେ ଢଣ କୁଇଲା (ଉତ୍ତର ଓଡ଼ିଶା ଗ୍ରାମାଞ୍ଚଳରେ), ଧୁଡୁକୀ ନାଟ ପ୍ରଭୃତି ଖୁବ୍ ମନୋରମ ଲୋକନାଟ୍ୟ । ସମାଜର ସବୁ ଶ୍ରେଣୀର ଚରିତ୍ର ଲୋକ ନାଟକରେ ଆତ୍ମପ୍ରକାଶ କରିଛି । ଧୋବା, ଚମାର, ବ୍ରାହ୍ମଣ, କେଉଟ, କ୍ଷତ୍ରିୟ, ଆଦିବାସୀ, ହରିଜନ ଏପରି ସବୁ ଶ୍ରେଣୀର ଚରିତ୍ର ଲୋକ ନାଟକର କଳେବରକୁ ଋଦ୍ଧିମନ୍ତ କରିଥାଏ । କୃଷିକୁ ପ୍ରାଧାନ୍ୟ ଦେଇ ଶିବଙ୍କୁ କୃଷିର ଦେବତା ଭାବରେ ଦଣ୍ଡନାଟରେ ଉଲ୍ଲେଖ ରହିଛି । ଧାନପାଛୁଡ଼ୀ, ଧାନକୁଟା, ଗୋବର ବଳା ଆଦି ଅନେକ କଥା (କୃଷି

ସମ୍ବନ୍ଧୀୟ) ଛଉ ନୃତ୍ୟରେ ରହିଛି । ଓଡ଼ିଶାର ଲୋକ ସଂସ୍କୃତିରେ ଲୋକ ନାଟକ ଜନଜୀବନର ଏକ ଅବିଚ୍ଛେଦ୍ୟ ଅଙ୍ଗ । ଐକ୍ୟ ସୂତ୍ରରେ ଆବଦ୍ଧ କରି ଏକ ସମୃଦ୍ଧ ଓଡ଼ିଶାର କଥା କହିଛି ଲୋକ ନାଟକ । ତା'ର ଆକର୍ଷଣ ଓ ଆବେଦନ ଏବେ ବି ଗୋଷ୍ଠୀ ଜୀବନକୁ ଆଚ୍ଛନ୍ନ କରିରଖିଛି ।

### ଓଡ଼ିଆ ଲୋକ ସଂସ୍କୃତିରେ ଲୋକବିଦ୍ୟା

ଉପେକ୍ଷା ଓ ଅବହେଳାର ଭାଗ୍ୟକୁ ଗ୍ରହଣ କରି ଅନେକ ବର୍ଷ ପରେ ବର୍ଷ ଧରି ଅଲୋଡ଼ା ହୋଇ ଲୁଚି ରହିଥିଲା ଲୋକସାହିତ୍ୟ । ବହୁ ବିଳମ୍ବରେ ହେଲେ ମଧ୍ୟ ଗବେଷକମାନେ ଉପଲବ୍ଧ କରିଛନ୍ତି ଏହାର ମହତ୍ତ୍ୱ । ଅଷ୍ଟାଦଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧରେ ଲୌକିକ ସାହିତ୍ୟର ସ୍ୱରୂପ ବିଧିବଦ୍ଧ ଭାବରେ ଅନୁଶୀଳନ କରାଗଲା । ଲୋକସାହିତ୍ୟର ଅଧ୍ୟୟନ ଦିଗରେ ସର୍ବପ୍ରଥମେ ଜନ୍ ଓବ୍ରେନ୍‌ଙ୍କ ନାମ ସ୍ମରଣୀୟ । ତାଙ୍କ ରଚିତ ପୁସ୍ତକ 'Remains of Gentlism and Judaism'ରେ ଲୋକସାହିତ୍ୟ ସମ୍ପର୍କରେ ଆଲୋକପାତ କରିଥିଲେ । ଏହା ପ୍ରକାଶ ପାଇବା ପରେ ସମଗ୍ର ବିଶ୍ୱ ଲୋକ ସଂସ୍କୃତିର ପ୍ରାଚୀନତା ଓ ମଧୁରତାକୁ ଅନ୍ୱେଷଣ କରିବାର ପ୍ରୟାସୀ ହୋଇଥିଲେ । 'Wisdom of the folk' ଅର୍ଥାତ୍ ଲୋକବିଦ୍ୟାର ଏହି ପରିଭାଷାକୁ ପ୍ରାଚୀନ ଗ୍ରନ୍ଥ ସମର୍ଥନ କରିଥିଲା, ଯାହା ଲୋକଶାସ୍ତ୍ର ଓ ଲୋକ ନିୟମ ଅର୍ଥକୁ ସୂଚିତ କରୁଛି । ବିଭିନ୍ନ ସମୟରେ ଏହାର ଭିନ୍ନ ଭିନ୍ନ ନାମରେ ଏହି ଲୋକବିଦ୍ୟାକୁ ଗ୍ରହଣ କରାଯାଇଛି । ଲୋକବାର୍ତ୍ତା, ଲୋକଯାନ, ଲୋକଶ୍ରୁତି, ଲୋକ ବିଜ୍ଞାନ, ଲୋକଚର୍ଯ୍ୟା, ଲୋକବୃତ୍ତି ଅଥବା ଲୋକ ସଂସ୍କୃତି ନାମରେ ବହୁ ଗବେଷକମାନଙ୍କ ମତ ଅନୁସାରେ ପରିଭାଷିତ ହୋଇଛି । ମାନବର ଜ୍ଞାନାଲୋକକୁ ଉଜ୍ଜୀବିତ କରେ ଲୋକବିଦ୍ୟା । ୧୮୦୩ ମସିହାରେ ଓଡ଼ିଶାକୁ ଅଧିକାର କରିବା ଉଦ୍ଦେଶ୍ୟରେ ଇଂରେଜ ଶାସନ କାଳରେ ଜନଜୀବନରେ ଆଧୁନିକତାର ଉନ୍ମେଷ ଘଟିବାକୁ ଲାଗିଲା । ଇଂରେଜମାନଙ୍କର ଓଡ଼ିଆ ଭାଷା ଓ ସଂସ୍କୃତି ପ୍ରତି ଆଗ୍ରହ ସୃଷ୍ଟି ହୋଇଥିଲା, ଯାହା ଲୋକସାହିତ୍ୟରୁ ଆରମ୍ଭ ହୋଇଥିଲା ଅନୁସନ୍ଧିତ୍ସାର ଦିଗଦିଗନ୍ତ । ସଂସ୍କୃତି ଅନୁରାଗୀ ଜନ୍ ବୀମ୍‌ସ ପ୍ରଥମେ ଓଡ଼ିଆ ଲୋକ ସଂସ୍କୃତି ସମ୍ପର୍କିତ ଅନେକ ତଥ୍ୟ ସଂଗ୍ରହ କରିବାରେ ଆଗ୍ରହୀ ହୋଇଥିଲେ । ବିଭିନ୍ନ ଅଞ୍ଚଳ ପରିଭ୍ରମଣ କରି ଛଅ ବର୍ଷ ପରେ ଲୋକ ସଂସ୍କୃତି, ପରମ୍ପରା, ଓଡ଼ିଆ ଭାଷାର ଶୁଦ୍ଧ ସମ୍ପାଦନା କରିଥିଲେ । ଏହା ପରେ କପିଳେଶ୍ୱର ବିଦ୍ୟାଭୂଷଣ ଓଡ଼ିଆ ଢଗଢ଼ମାଳି ଓ ପ୍ରବାଦ-ପ୍ରବଚନ ସଂଗ୍ରହର ପୃଷ୍ଠପୋଷକ ଭାବରେ କାର୍ଯ୍ୟ କରିଥିଲେ । ତାଙ୍କ ପରେ ଗୋବିନ୍ଦ ରଥ 'ଓଡ଼ିଆ ଢ଼ଗଢ଼ମାଳି', ଗୋପାଳଚନ୍ଦ୍ର ପ୍ରହରାଜଙ୍କ 'ଉତ୍କଳ କାହାଣୀ'ରେ ଲୋକ ସାହିତ୍ୟ ସମ୍ପର୍କିତ ଅନେକ ତଥ୍ୟ ଲୋକବିଦ୍ୟାର ଗବେଷଣା କ୍ଷେତ୍ରଟିର ପ୍ରାରମ୍ଭିକ ଭିତ୍ତିଭୂମି ତିଆରି କରିଥିଲା । ପରବର୍ତ୍ତୀ ସମୟରେ 'କଥା ଲହରୀ'ର ଏକ ମନୋରମ ସଂକଳନ, ଯାହାର ମୁଖବନ୍ଧ ଭକ୍ତକବି ମଧୁସୂଦନ ରାଓ ଲେଖିଥିଲେ । ଏହା ପରେ ପଣ୍ଡିତ ନୀଳମଣି ବିଦ୍ୟାରତ୍ନଙ୍କ ଦ୍ୱାରା ସଂଗୃହୀତ 'ପ୍ରବାଦ ପୁଷ୍ପାଞ୍ଜଳି' ଲୋକବିଦ୍ୟା ଅଧ୍ୟୟନ ମାର୍ଗକୁ ବଳିଷ୍ଠ କରିଥିଲା । ବିଂଶ ଶତକରେ ଲୋକବିଦ୍ୟା ଅଧ୍ୟୟନ ଦିଗଟି ସମ୍ଭାବନାମୟ ଅଧ୍ୟାୟ ହୋଇପାରିଥିଲା । ମୋହିନୀ ମୋହନ ସେନାପତିଙ୍କର 'ଓଡ଼ିଆ କାହାଣୀ', ରାଘବାନନ୍ଦ ଦାସଙ୍କ ସଂକଳିତ ପୁସ୍ତକ 'କୃଷି ପ୍ରବଚନ ସଂଗ୍ରହ', ଅପର୍ଣ୍ଣା ପଣ୍ଡାଙ୍କର 'ଢ଼ଗ ସଂଚୟନ', ମୋହନ ଚରଣ ଦାସଙ୍କର 'ନୂଆ ବୋହୂ କାନ୍ଦଣା', ନିତ୍ୟାନନ୍ଦ ସାହୁଙ୍କର 'ଢ଼ଗଢ଼ମାଳି' ସଂଗ୍ରହଗୁଡ଼ିକ ଲୋକବିଦ୍ୟା ଅଧ୍ୟୟନ କ୍ଷେତ୍ରଟିକୁ ଋଦ୍ଧିମନ୍ତ କରିଥିଲା । ଓଡ଼ିଆ ଲୋକ ସଂସ୍କୃତିର ଆକଳନ କରି ଲୋକ ସାହିତ୍ୟର ଯଥାର୍ଥ ଓ ସୁଯୋଗ୍ୟ ଉତ୍ତରାଧିକାରୀ ଭାବରେ ଗୋପାଳଚନ୍ଦ୍ର ପ୍ରହରାଜଙ୍କ ପରେ ଚକ୍ରଧର ମହାପାତ୍ର ସ୍ମରଣୀୟ । ତାଙ୍କ ଉଦ୍ୟମରେ ସଫଳ ପ୍ରତିଶ୍ରୁତି 'ଗାଉଁଲୀ ଗୀତ ଚୁମ୍ବକ' ଏକ ମନୋରମ ସଂକଳନ । ଡ. କୁଞ୍ଜବିହାରୀ ଦାଶଙ୍କ ସଂକଳନ 'ପଲ୍ଲୀପୁଷ୍ପ' ଓ

'ପଲ୍ଲୀ ଝରଣା' ଉଚ୍ଚ ସଫଳତା ଦେଇଛି ଲୋକ ସାହିତ୍ୟ ଭଣ୍ଡାରକୁ । ଏହାଛଡ଼ା ତାଙ୍କ ସଂକଳନ ଭିତରେ ରହିଛି 'ପଲ୍ଲୀଗୀତ ସଂଚୟନ', 'ଲୋକବାଣୀ ସଂଚୟନ', 'ଓଡ଼ିଶାର ଲୋକକଥା' ଲୋକବିଦ୍ୟା ଅଧ୍ୟୟନ କ୍ଷେତ୍ରଟିକୁ ବ୍ୟାପକ କରିପାରିଥିଲା । ଔପନ୍ୟାସିକ ଗୋପୀନାଥ ମହାନ୍ତିଙ୍କ 'କନ୍ଧ ପରଜାର ସ୍ତୋତ୍ର ଓ ସଂଗୀତ', ସୀତାକାନ୍ତ ମହାପାତ୍ରଙ୍କ 'ସାରହୁଲର ଜହ୍ନ', ଜନଜାତିଙ୍କ ସମ୍ପର୍କିତ ଲୋକକଥାର ସମ୍ଭାର ଲୋକ ସାହିତ୍ୟକୁ ଋଦ୍ଧିମନ୍ତ କରିଛି ।

ବହୁ ବିଶିଷ୍ଟ ଗବେଷକଙ୍କ ଉଦ୍ୟମରେ ଲୋକବିଦ୍ୟାର ଯେଉଁ ଦିଗ ସଂପ୍ରସାରିତ ହୋଇଛି, ସେମାନଙ୍କ ମଧ୍ୟରୁ ସର୍ବେଶ୍ୱର ଦାସଙ୍କ 'ପ୍ରବଚନ ଓ ପ୍ରବାଦ ସଂଗ୍ରହ', ଡ. କୃଷ୍ଣଚରଣ ବେହେରାଙ୍କ 'ମୋଗଲ ତାମସା', ଡ. ମହେନ୍ଦ୍ର କୁମାର ମିଶ୍ରଙ୍କ 'ପଶ୍ଚିମ ଓଡ଼ିଶାର ଲୋକ ସଂସ୍କୃତି', 'କଳାହାଣ୍ଡିର ଲୋକ ସଂସ୍କୃତି', 'ଲୋକ ସଂସ୍କୃତି ପରିକ୍ରମା', ଡ. ଶ୍ୟାମସୁନ୍ଦର ମହାପାତ୍ରଙ୍କ 'A study of Oriya folk Ballads', ଡ. ନଟବର ସାମନ୍ତରାୟଙ୍କ 'ଓଡ଼ିଆ ପଲ୍ଲୀ ସାହିତ୍ୟ' ଓଡ଼ିଶା କଲଚରାଲ୍ ଫୋରମ ଦ୍ୱାରା ସଂପାଦିତ 'ଓଡ଼ିଶାର ଲୋକ ସଂସ୍କୃତି', ଡ. ହେମନ୍ତ କୁମାର ଦାସଙ୍କ 'ଓଡ଼ିଆ ଲୋକ ନାଟକ', ଡ. ବୈଷ୍ଣବ ଚରଣ ସାମଲଙ୍କ 'ଓଡ଼ିଶା ଯାତ୍ରା ଓ ଲୋକ ନାଟକ', ଗୌରାଙ୍ଗ ଚରଣ ଦାଶଙ୍କ 'ଲୋକନାଟ୍ୟ ପରମ୍ପରା ଓ କଣ୍ଢେଇ ନାଚ' ଓ ଡ. କୃଷ୍ଣଚନ୍ଦ୍ର ପ୍ରଧାନଙ୍କ 'ଲୋକ ସାହିତ୍ୟ ଓ ଲୋକ ସଂସ୍କୃତି' ପ୍ରଭୃତି ଲୋକ ସାହିତ୍ୟ ଅଧ୍ୟୟନ ଦିଗକୁ ବିକାଶର ପଥ ପରିଷ୍କୃତ କରିଛି । ଲୋକବିଦ୍ୟାର ପ୍ରଚାର ପ୍ରସାର କ୍ଷେତ୍ରରେ ସଂକଳିତ ପୁସ୍ତକଗୁଡ଼ିକ ସୁଦୃଢ଼ ଭିତ୍ତିଭୂମିଟିଏ ନିର୍ମାଣ କରିଛନ୍ତି ।

ସଂକ୍ଷେପରେ କହିଲେ, ଲୋକ ସଂସ୍କୃତି ଜୀବନ୍ତ ଇତିହାସ ଗୋଟିଏ ଜାତିର, ଆକୁଳ ଇସ୍ତାହାର ଗୋଟିଏ ସଭ୍ୟତାର ଓ ବିଶ୍ୱସ୍ତ ଭାବରୂପ ହେଉଛି ପରମ୍ପରାର, ଯାହାର ମହ ମହ ବାସ୍ନାରେ ଜୀବନର ତମାମ ଯନ୍ତ୍ରଣାକୁ ଭୁଲାଇ ଭରିଦିଏ ସ୍ୱଚ୍ଛନ୍ଦ ଓ ନିଷ୍କପଟ ହୃଦୟର ରସସିକ୍ତ ମର୍ମକଥା ।

**ସହାୟକ ଗ୍ରନ୍ଥସୂଚୀ**

(୧) ଡ. ବେଣୀମାଧବ ପାଢ଼ୀ : ଲୋକସାହିତ୍ୟ ଓ ଲୋକସାହିତ୍ୟ ତତ୍ତ୍ୱ
(୨) ଡ. ଅନାଦି ଚରଣ ଗାଁଣ: ଲୋକ ସାହିତ୍ୟର ରୂପରେଖ
(୩) ଡ. ମହେନ୍ଦ୍ର କୁମାର ମିଶ୍ର : କଳାହାଣ୍ଡିର ଲୋକ ସଂସ୍କୃତି
(୪) ଚିତ୍ତରଂଜନ ଦାସ : ଓଡ଼ିଆ ସାହିତ୍ୟର ସାଂସ୍କୃତିକ ବିକାଶଧାରା
(୫) ଡ. କୁଞ୍ଜବିହାରୀ ଦାସ : ପଲ୍ଲୀଗୀତି ସଂଚୟନ
(୬) ଡ. ନଟବର ସାମନ୍ତରାୟ : ଓଡ଼ିଆ ପଲ୍ଲୀ ସାହିତ୍ୟ
(୭) ଡ. ଭଗବାନ ପଣ୍ଡା : ଓଡ଼ିଶାର ଲୋକ ସଂସ୍କୃତି

ଓଡ଼ିଆ ବିଭାଗ
ରମାଦେବୀ ମହିଳା ବିଶ୍ୱବିଦ୍ୟାଳୟ
ଭୁବନେଶ୍ୱର

